# ସ୍ମୃତିରେ ଶିକ୍ଷକ


ସମ୍ପାଦନା : **ପ୍ରୀତୀଶ ଆଚାର୍ଯ୍ୟ**

ପ୍ରକାଶକ : **ଶିକ୍ଷାସନ୍ଧାନ,** ଏନ୍.ଡ଼ି - ୭,ଭି.ଆଇ.ପି. ଏରିଆ,
ଆଇ.ଆର୍.ସି. ଭିଲେଜ, ଭୁବନେଶ୍ୱର, ପିନ୍ - ୭୫୧୦୧୫
ଦୂରଭାଷ : ୦୬୭୪-୨୫୫୬୧୦୯, ଫାକ୍ସ : ୦୬୭୪-୨୫୫୦୬୫୬
sikshasandhan@gmail.com
www.sikshasandhan.org.in

ପ୍ରଥମ ପ୍ରକାଶ : ୨୦୦୬
ଦ୍ୱିତୀୟ ପ୍ରକାଶ : ୨୦୧୫

ମୁଦ୍ରଣ : **ଶିକ୍ଷା ପ୍ରକାଶନୀ,** ଏନ୍.ଡ଼ି - ୭,ଭି.ଆଇ.ପି. ଏରିଆ,
ଆଇ.ଆର୍.ସି. ଭିଲେଜ, ଭୁବନେଶ୍ୱର, ପିନ୍ - ୭୫୧୦୧୫

ଆଇ.ଏସ୍.ବିନ : ୮୧-୮୭୯୮୨-୨୯-୨

ମୂଲ୍ୟ : ୧୮୦/-


---

# *Smrutire Shikshaka*


Edited by : **Pritish Acharya**

Publishd by : **Sikhyasandhan, ND-7, VIP, Area,**
**IRC Village, Bhubaneswar, Pin-751015**
**Tel. : 0674-2556109, Fax : 0674-751015**
sikshasandhan@gmail.com
www.sikshasandhan.org.in

1st Publication : 2006
2nd Publication : 2015

Printed at : **Siksha Prakashani, ND-7, VIP, Area,**
**IRC Village, Bhubaneswar, Pin-751015**

I.S.B.N. : 81-87982-29-2

Price : 180 /-

# "ସ୍ମୃତିରେ ଶିକ୍ଷକ"ର ଦ୍ୱିତୀୟ ସଂସ୍କରଣ ଅବସରରେ

"ସ୍ମୃତିରେ ଶିକ୍ଷକ"ର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେବାକୁ ଯାଉଛି । ଏହା ଖୁବ୍ ଆନଂଦର କଥା । ଲେଖା ସଂଗୃହିତ ହେବା ଏବଂ ପ୍ରଥମ ସଂସ୍କରଣର ମୁଦ୍ରଣ ହେବା ମଝିରେ ପୁସ୍ତକରେ ସ୍ଥାନିତ ଦୁଇଟି ଲେଖାର ଲେଖକ ଗୋଷ୍ଠ ବିହାରୀ କାନୁନ୍‌ଗୋ ଓ ଗଦାଧର ମାଝୀ ଦିବଂଗତ ହେଲେ । ଏବେ ପ୍ରଥମ ସଂସ୍କରଣ ଓ ଦ୍ୱିତୀୟ ସଂସ୍କରଣ ମଧ୍ୟରେ ଅନ୍ନପୂର୍ଣ୍ଣା ମହାରଣା, ସର୍ବେଶ୍ୱର ଦାଶ, ଚିତ୍ତରଂଜନ ଦାସ, ହେମଚଂଦ୍ର ଆଚାର୍ଯ୍ୟ, ବ୍ରଜନାଥ ରଥ ଓ ଶରତ ଚଂଦ୍ର ପୂଜାରୀ ଦେହତ୍ୟାଗ କଲେ । ଏହା ଖୁବ୍ ଅବସୋସର କଥା । ସାହିତ୍ୟ ଜଗତରେ ଏମାନେ ସଭିଏଁ ଜଣେ ଜଣେ ପରିଚିତ ଲେଖକ; ମାଳ ମାଳ ପ୍ରତ୍ୟେକଂକର ପ୍ରକାଶିତ ଲେଖା । ତା' ସତ୍ତ୍ୱେ, ଏହି ପୁସ୍ତକରେ ସେମାନେ ନିଜ ନିଜ ସ୍କୁଲ ସମୟ କଥା ଲେଖିଛନ୍ତି, ଶିକ୍ଷକଂକୁ ମନେ ପକେଇଛନ୍ତି; ଉକ୍ତ ଶିକ୍ଷକ କାହିଁକି ସ୍ମୃତିଯୋଗ୍ୟ, ତା'ର ବିଶଦ ବ୍ୟାଖ୍ୟା କରିଛନ୍ତି । ସେହି ପ୍ରକ୍ରିୟାରେ ଉକ୍ତ ଅତୀତ ଓ ତତ୍କାଳୀନ ଶିକ୍ଷକ ଜଣଙ୍କୁ ଅବିସ୍ମୃତ କରି ଦେଇଛନ୍ତି । ଏହି କାରଣରୁ ବର୍ତ୍ତମାନ ଓ ଭବିଷ୍ୟତ ସେମାନଂକଠାରେ ଋଣୀ । ପ୍ରତ୍ୟେକ ମନସ୍କ ବ୍ୟକ୍ତି ସେମାନଂକ ଲେଖାର ଐତିହାସିକ ମୂଲ୍ୟକୁ ଅନୁଭବ କରିବେ ବୋଲି ଆଶା ।

ଯଦିଓ "ସ୍ମୃତିରେ ଶିକ୍ଷକ" ମୋ ସଂପାଦନାରେ ପ୍ରକାଶିତ, ଏହାର ଶ୍ରେୟ ଯିବ ପ୍ରତ୍ୟେକ ଲେଖାର ଲେଖକଙ୍କୁ । ବିଶେଷ କୌଣସି ତତ୍ତ୍ୱ କଥା ନ କହି, ଅନୁଭବ ମାଧ୍ୟମରେ ଲେଖାଗୁଡ଼ିକ ସ୍ମୃତିର ଶିକ୍ଷକଂକୁ ଆବିଷ୍କାର ଓ ଉପସ୍ଥାପିତ କରେ । ଫଳରେ, ଅବିସ୍ମୃତ ଶିକ୍ଷକ ଓ ତାଂକ ଶିକ୍ଷକତା କାହାରି ଲାଗି ଅପହଂଚ୍ ମନେ ହୁଏ ନାହିଁ । ନିଜ ଗତାନୁଗତିକ ଜୀବନ ଓ କଂକାଳ ମଧ୍ୟରେ ଆଦର୍ଶ ଶିକ୍ଷକ ଜଣକ କାର୍ଯ୍ୟ କରନ୍ତି; କେବେ ବି "ଆଦର୍ଶ ଶିକ୍ଷକ" ବୋଲାଇବାର ମହତ୍ତ୍ୱାକାଂକ୍ଷା ମନରେ ପାଳନ୍ତି ନାହିଁ । ତାଂକର ସ୍ୱାଭାବିକ ସମାଜନିଷ୍ଠା, ସଂସ୍କାର ଧର୍ମ ଓ କର୍ତ୍ତବ୍ୟ ସଚେତନତା ତାଂକୁ ପିଲାଂକ ହୃଦୟରେ ସ୍ଥାପିତ କରିଦିଏ । ଏହା ଯେ କୌଣସି ଭୌତିକ ଉପଲବ୍ଧି ତୁଳନାରେ ମହତ୍ତର, ଏକଥା ଆମେ ବୁଝିପାରନ୍ତି ।

ଦ୍ୱିତୀୟ ସଂସ୍କରଣର ମୁଁ ବାଧ୍ୟ ହୋଇ ଅନ୍ନପୂର୍ଣ୍ଣା ମହାରଣାଂକ "ଆଦର୍ଶ ଶିକ୍ଷକଂକ ଆଚ଼ାର ଓ ବିଚ଼ାର" ଶୀର୍ଷକ ଲେଖାଟିକୁ ବାଦ ଦେଇଛି, କାରଣ ଏହା କୌଣସି ନିର୍ଦ୍ଦିଷ୍ଟ ଶିକ୍ଷକ ବା ଶୈକ୍ଷିକ ପରିବେଶର ଚର୍ଚ୍ଚା କରୁ ନ ଥିଲା। ପ୍ରଥମ ସଂସ୍କରଣ ପାଇଁ ଶ୍ରୀମତୀ ମହାରଣା ମୋ ଅନୁରୋଧ ରକ୍ଷା କରି ଲେଖିଥିଲେ, ମାତ୍ର ଲେଖାଟି ଧାରା ବର୍ହିଭୁତ ଥିଲା। ପୁସ୍ତକଟିକୁ ଦେଖିଲା ପରେ ସେ ନିଜେ ଏହା ଅନୁଭବ କରି ଦ୍ୱିତୀୟ ସଂସ୍କରଣ ପାଇଁ ଏକ ଭିନ୍ନ ଲେଖା ଦେବାକୁ କହିଥିଲେ। ତାହା ହୋଇ ପାରିଲା ନାହିଁ। ତା' ଆଗରୁ ସେ ଚାଲିଗଲେ। ଏଥିପାଇଁ ମୁଁ ଦୁଃଖିତ।

ଦ୍ୱିତୀୟ ସଂସ୍କରଣରେ ତିନୋଟି ନୂଆଁ ଲେଖା ସ୍ଥାନିତ ହୋଇଛି : ପ୍ରସିଦ୍ଧ କବି ପ୍ରତିଭା ଶତପଥୀଙ୍କର "ନିର୍ବାକ ପୂଜା", ଅଧ୍ୟାପକ ବିକ୍ରମକେଶରୀ ଦାସଂକର 'ଅବିସ୍ମୃତି ମୋର ସେହି ଶିକ୍ଷକ" ଏବଂ ମୋର ଏକ ଲେଖା "ମୋ ଶିକ୍ଷକ"। ଆଶା, ପାଠକେ ଏହାକୁ ପସଂଦ କରିବେ।

"ସ୍ମୃତିରେ ଶିକ୍ଷକ"ର ଦ୍ୱିତୀୟ ସଂସ୍କରଣର ଡିଟିପି କରିଛନ୍ତି ବଂଧୁ ବିଜୟ ମହାନ୍ତି। "ଶିକ୍ଷା ସଂଧାନ"ର ସଂପାଦକ ଅନୀଲ ପ୍ରଧାନ ଓ ଆଶୀଷଙ୍କର ଦ୍ୱିତୀୟ ସଂସ୍କରଣ ମୂଳରେ ଅନେକ ପରିଶ୍ରମ ରହିଛି। ସେସବୁକୁ ଏହି ଅବସରରେ ମୁଣ ସ୍ମରଣ କରୁଛି ଏବଂ ସେମାନଂକ ପ୍ରତି ନିଜ କୃତଜ୍ଞତା ଜଣାଉଛି।

ଭୁବନେଶ୍ୱର | **ପ୍ରୀତୀଶ ଆଚ଼ାର୍ଯ୍ୟ**

ମେ' ୨୦୧୫

# ସୂଚୀପତ୍ର

# ଉତ୍ସର୍ଗ

ସଂକଳନଟିର କଥା ଚିନ୍ତା କଲାବେଳେ ମୋର ପରମ ପୂଜ୍ୟ ଶ୍ରୀଯୁକ୍ତ କିଶନ ପଟ୍ଟନାୟକଙ୍କ ସହ ପରାମର୍ଶ କରିଥିଲି । ଏଭଳି ଏକ ପୁସ୍ତକର ସାମାଜିକ ଆବଶ୍ୟକତା ଥିବା କଥା ସେ ଅନୁଭବ କରିଥିଲେ; ନିଜ ପ୍ରିୟ ଶିକ୍ଷକଙ୍କ ସମ୍ପର୍କରେ ଲେଖିବାକୁ ମଧ୍ୟ ସମ୍ମତି ପ୍ରଦାନ କରିଥିଲେ । ତା' ପୂର୍ବରୁ ତାଙ୍କର ଦେହାବସାନ ହେଲା । ସେହି ଲୋକ-ଗୁରୁ କିଶନ ପଟ୍ଟନାୟକଙ୍କ ସ୍ମୃତିରେ ସଂକଳନଟି ସମର୍ପିତ ।

**ପ୍ରୀତୀଶ ଆଚାର୍ଯ୍ୟ**

# ପାଣ୍ଡୁଲିପିର ସଂଯୋଜନା ପରିପ୍ରେକ୍ଷୀରେ

*ପ୍ରୀତୀଶ ଆଚାର୍ଯ୍ୟ*

**ପ**ଢ଼ାଶୁଣା ନାଗରିକଟିଏ। ତା' ଛାତ୍ର ଜୀବନରେ ଅନେକ ଶିକ୍ଷକଙ୍କ ସଂସର୍ଗରେ ଆସେ। ସ୍କୁଲ୍‌ରେ, କେବେ କେବେ ସ୍କୁଲ୍ ବାହାରେ ବି। ସବୁ ଶିକ୍ଷକ ତା' ମନରେ ଛାପ ଛାଡ଼ି ପାରନ୍ତିନି। କାହାକୁ ମନେ ପକାଇବାକୁ ତାକୁ ଚିନ୍ତା କରିବାକୁ ପଡ଼େ। ପୁଣି ଆଉ କିଏ ସ୍ୱତଃ ଆସନ୍ତି ମନକୁ। ତା' ବ୍ୟକ୍ତିତ୍ୱକୁ ସେ ଦୋହଲାଇ ଦେଇଛନ୍ତି। ତାଙ୍କ ନାଁ ପଡ଼ିଲେ ଭକ୍ତିରେ ମୁଣ୍ଡ ତଳକୁ ହୋଇଯାଏ। ଲାଗେ, ତାଙ୍କୁ ପାଇ ନ ଥିଲେ ତା' ଜୀବନ ଭିନ୍ନ ମୋଡ଼ ନେଇ ଯାଇଥାନ୍ତା। ଏମିତି ଜଣେ ବା ଦୁଇ ଚାରିଜଣ ଶିକ୍ଷକଙ୍କୁ ଛାତ୍ର ତା'ର ପ୍ରିୟ ଶିକ୍ଷକ ତାଲିକାରେ ରଖେ। ଉକ୍ତ ଶିକ୍ଷକଙ୍କର ବ୍ୟକ୍ତିତ୍ୱ, ପାଠପଢ଼ା ଶୈଳୀ, ଛାତ୍ରପ୍ରୀତି, ତ୍ୟାଗ, କର୍ମନିଷ୍ଠାକୁ ବଡ଼ ହେଲା ପରେ ବି ସେ ଝୁରି ହେଉଥାଏ। ନିଜ ଛାତ୍ରର ମନରେ ଗଭୀର ଛାପ ଛାଡ଼ିଯାଇଥିବା ଏଇଭଳି ଜଣେ ଶିକ୍ଷକକୁ ଆଦର୍ଶ ଶିକ୍ଷକ ବୋଲି ଆମେ କହିପାରିବା। ଅନ୍ୟ ଶବ୍ଦରେ, କେଉଁ ଶିକ୍ଷକଙ୍କୁ ଆଦର୍ଶ ଶ୍ରେଣୀଭୁକ୍ତ କରାଯିବ, କ'ଣ ସବୁ ତା' ପାଇଁ ମାନଦଣ୍ଡ ହେବ, ତାହା ସଂପୂର୍ଣ୍ଣ ରୂପେ ଛାତ୍ରର ଅନୁଭୂତି, ବିଚାର ଏବଂ ଅବରୋଧ ଉପରେ ନିର୍ଭର କରିବ। କୌଣସି ଶବ୍ଦକୋଷ ଦିଆ ପରିଭାଷା ଏଥିପାଇଁ ବ୍ୟବହାରିକ ସିଦ୍ଧ ହେବ ନାହିଁ। ଅର୍ଥାତ୍ ରାଷ୍ଟ୍ର, ସମାଜ, ସ୍କୁଲ୍ ତଥା ଅଭିଭାବକ ଆଦି ପିଲା ପାଇଁ ଜଣେ ବା ଏକାଧିକ ଶିକ୍ଷକଙ୍କୁ ନିଯୁକ୍ତ କରିପାରନ୍ତି, ମାତ୍ର କିଏ ତହିଁରୁ ଆଦର୍ଶ ଶିକ୍ଷକର ମାନ୍ୟତା ପାଇବ- ତାହା ଛାତ୍ର କହିବ, ଛାତ୍ରର ଆତ୍ମିକ ଅନୁଭୂତି ତାକୁ ସ୍ୱୀକୃତି ଦେବ। ଯେମିତି ପିଲା ପରୀକ୍ଷାରେ ପାସ୍ ନା ଫେଲ୍, ତାହା ଶିକ୍ଷକ ସ୍ଥିର କରନ୍ତି, ଠିକ୍ ସେମିତି ପିଲା ନିର୍ଦ୍ଧାରଣ କରେ କିଏ ଆଦର୍ଶ ଶିକ୍ଷକ, କ'ଣ ସବୁ ଗୁଣ ପାଇଁ ସେ ଆଦର୍ଶ, ଇତ୍ୟାଦି ଇତ୍ୟାଦି।

ସମାଜରେ ଯେତେ ସଂଖ୍ୟାରେ ପିଲା, ସେତେ ଅଧିକ ସଂଖ୍ୟକ ହୋଇ ପାରନ୍ତି ଆଦର୍ଶ ଶିକ୍ଷକ; ଯେତେ ଅଧିକ ସଂଖ୍ୟକ ଶିକ୍ଷକ ସେତେ ବିବିଧ ହୋଇପାରେ ସେମାନଙ୍କର ଗୁଣ ଚରିତ୍ର। ଆଦର୍ଶ ଶିକ୍ଷକ ହୋଇ କେହି ବୋଧେ ଜନ୍ମ ହୋଇନଥାଏ। ନିଜ ନିଜ ପାରିପାର୍ଶ୍ୱିକ ପରିବେଶ, ପରିସ୍ଥିତି, ସାଂପ୍ରତିକ

ସମୟ, ସର୍ବୋପରି ସମ୍ମୁଖରେ ବିଦ୍ୟମାନ ଛାତ୍ର ସମାଜକୁ ଭିତ୍ତିକରି ବ୍ୟକ୍ତିଟିଏ ଆଦର୍ଶ ଶିକ୍ଷକ ହୁଏ । ଯୁଗ ପରିବେଶରୁ ତାକୁ ଅଲଗା କରି ତା'ର କଳନା ଅସମ୍ଭବ, ତା'ର ଚିତ୍ରଣ ବି କଷ୍ଟକର ।

ପ୍ରଶ୍ନ ଉଠେ, ଶିକ୍ଷକତା ଯଦି ଶିକ୍ଷକର ଆଦର୍ଶ ଏବଂ ଶିକ୍ଷକତାର ବିଷଦ ଅର୍ଥ ଆମେ ସମସ୍ତେ ବୁଝୁ, "ଆଦର୍ଶ ଶିକ୍ଷକ" ଭଳି ଏକ ଅଭିବ୍ୟକ୍ତିର କିଛି କ'ଣ ଆବଶ୍ୟକତା ରହିଛି ? ଶିକ୍ଷାଦାନ ନିମନ୍ତେ ଶିକ୍ଷକ ଅଂଗୀକାରବଦ୍ଧ । ତେଣୁ ବସ୍ତୁତଃ ପ୍ରତ୍ୟେକ ଶିକ୍ଷକ କ'ଣ ଜଣେ ଜଣେ ଆଦର୍ଶ ଶିକ୍ଷକ ନୁହନ୍ତି ? ଯିଏ ଆଦର୍ଶ-ରହିତ, ସିଏ ତ ଶିକ୍ଷକ ପଦବାଚ୍ୟ ହେବା କଥା ନୁହେଁ ? ବୈଚ଼ାରିକ ଦୃଷ୍ଟିରୁ ଦେଖିଲେ ବୋଧହୁଏ ପ୍ରଶ୍ନଟିର ଉତ୍ତର ହେବ 'ହିଁ' କାରଣ ସେହି ପ୍ରତିବଦ୍ଧତା ହେଲା ଶିକ୍ଷକର ସର୍ବପ୍ରଥମ ମୌଳିକ ଧର୍ମ । ଅର୍ଥାତ୍ ଶିକ୍ଷକ ଶବ୍ଦ ଆଗରେ 'ଆଦର୍ଶ' ବିଶେଷଣର ଆବଶ୍ୟକତା ନାହିଁ । ମାତ୍ର ବ୍ୟବହାରିକ ଏବଂ ଲୌକିକ ଦୃଷ୍ଟିରୁ ଚିନ୍ତାକଲେ ପ୍ରଶ୍ନଟିର ବୋଧହୁଏ ଉତ୍ତର ହେବ 'ନା' । କାରଣ ଶିକ୍ଷକତା ହେଲା ଏକ ବୃତ୍ତି । ପ୍ରତିବଦ୍ଧତା ନଥିବା ସତ୍ତ୍ୱେ ବେଳେବେଳେ ଅନେକ ବ୍ୟକ୍ତି ବୃତ୍ତି ଧାରଣ କରନ୍ତି, ନିଜକୁ ଶିକ୍ଷକ ବୋଲାନ୍ତି । ଫଳରେ ଶିକ୍ଷକ ବୋଲାଉଥିବା ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ଶିକ୍ଷକତା ଆଦର୍ଶ ହୋଇ ବି ନପାରେ । ପୁଣି କେତେକ ଶିକ୍ଷକ ଆବଶ୍ୟକ ପ୍ରେରଣା ଓ ପରିବେଶ ମିଳିଲେ ଶିକ୍ଷକତାକୁ ନୂଆଁ କରି ଆଦର୍ଶ ରୂପେ ଗ୍ରହଣ ବି କରିପାରନ୍ତି । ଅନ୍ୟ ପକ୍ଷରେ, କୁ-ଶିକ୍ଷକ ବୋଲି କୌଣସି ଶବ୍ଦର ବ୍ୟବହାର ସାଧାରଣତଃ ଆମ ସଂସ୍କୃତିରେ ହୁଏ ନାହିଁ । ଜଣେ ଶିକ୍ଷକ ଛାତ୍ରପାଇଁ ପ୍ରିୟ ବା ଆଦର୍ଶ ଶିକ୍ଷକ ହୋଇନପାରେ, ତା'ର ଅର୍ଥ ନୁହେଁ ଯେ ସେ କୁ-ଶିକ୍ଷକ । ସେ କେବଳ ଶିକ୍ଷକ, ଏବଂ ଶିକ୍ଷକ ଶବ୍ଦରେ କେଉଁଠି ବି ନକାରାତ୍ମକତା ନାହିଁ । ମୋଟ କଥା ହେଲା ଯେ ଆଦର୍ଶ ଶିକ୍ଷକର ମାନ୍ୟତା ମିଳିବା ହେଲା ପ୍ରତ୍ୟେକ ଶିକ୍ଷକ ନିମନ୍ତେ ଏକ ବଡ଼ ଉପଲବ୍ଧି ଏବଂ ସେହି ମାନ୍ୟତା କେବଳ ଛାତ୍ର ହିଁ ଦେଇଥାଏ ।

"ମୋର ଆଦର୍ଶ ଶିକ୍ଷକ" ଶୀର୍ଷକରେ ନିଜ ଅନୁଭୂତିରୁ କିଛି କିଛି ଲେଖିବାକୁ ଆମେ ଲବ୍ଧପ୍ରତିଷ୍ଠ କେତେ ଜଣ ସୃଜନଶୀଳ ଲେଖକ ଓ ଶିକ୍ଷାବିତ୍‌ଙ୍କୁ ଅନୁରୋଧ କରିଥିଲୁ । ସେମାନଙ୍କ ମଧ୍ୟରେ ବର୍ଷିୟାନ ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ, କଳାକାର, ବୈଜ୍ଞାନିକ, ପ୍ରଶାସନିକ ଅଧିକାରୀ, କବି ତଥା ରାଜନେତା ଆଦି ରହିଛନ୍ତି । ଓଡ଼ିଶାର ସାହିତ୍ୟ, ସଂସ୍କୃତି ଏବଂ ସମାଜରେ

ସମସ୍ତେ ଅତି ପରିଚିତ। ପ୍ରାୟ ସଭିଏଁ ଜଣେ ଜଣେ ଶିକ୍ଷକ ମଧ୍ୟ। ଆଦର୍ଶ ଶିକ୍ଷକର ପରିଭାଷାକୁ ନେଇ ସେମାନଙ୍କ ମଧ୍ୟରୁ କେହି ନିଜ ଲେଖାରେ ବିଶେଷ ଘାଣ୍ଟିହେବାର ଦେଖାଯାଇନାହିଁ। ଅନ୍ତତଃ ଶବ୍ଦଟିର ଅର୍ଥକୁ ବିଶ୍ଳେଷଣ କରିବାରେ ଆମେ ଯେତେ ସମୟ ବ୍ୟୟ କରିଛୁ ତା'ଠାରୁ ଖୁବ୍ କମ୍ ସମୟରେ ହୁଏତ ସେମାନେ ବୁଝିଯାଇଛନ୍ତି- ଆଦର୍ଶ ଶିକ୍ଷକ ମାନେ କାହାକୁ ବୁଝାଏ, କେଉଁ ଗୁଣ ପାଇଁ ସେ ପ୍ରିୟ ଶିକ୍ଷକ ଏବଂ କଣ ହେବ ଲେଖାଟିର ବିଷୟବସ୍ତୁ। ଏହି ଗ୍ରହଣଶୀଳତା ପଛରେ ଅବଶ୍ୟ ସେମାନଙ୍କର ସୃଜନଶୀଳ ମନୋଭାବ ରହିଛି- ତା'ତ ଗୋଟିଏ କଥା। ମାତ୍ର ତା'ଠାରୁ ବଡ଼କଥା ହେଲା ଯେ "ଆଦର୍ଶ ଶିକ୍ଷକ" ପରି ଅଭିବ୍ୟକ୍ତିଟିଏ କାହାପାଇଁ ଅଗ୍ରହଣୀୟ ହୋଇ ନ ପାରେ। ଅତି ସରଳ ଭାଷାରେ କହିଲେ, ଯିଏ ପ୍ରିୟ ଶିକ୍ଷକ, ସିଏ ଆଦର୍ଶ ଶିକ୍ଷକ ମଧ୍ୟ। ଅନ୍ୟ ପକ୍ଷରେ, ଅନୁରୋଧ ରକ୍ଷାକରି ନିଜ ନିଜ ଅନୁଭୂତିରୁ ନିଜ ଆଦର୍ଶ ଶିକ୍ଷକଙ୍କ ସଂପର୍କରେ ବିସ୍ତାରରେ ସେମାନେ ଲେଖିବା ମାନେ ଆମର ହୃଦବୋଧ ହୋଇଛି ଯେ ଏଭଳି ଏକ ବିଷୟରେ ଆଲୋଚନାର ନିଶ୍ଚିତ ରୂପେ ପ୍ରାସଂଗିକତା ରହିଛି। ଅନ୍ୟଥା ଲେଖା ପାଇଁ ସ୍ୱୀକୃତି ଆସିନଥାନ୍ତା, ଲେଖା ଆସି ନଥାନ୍ତା। ଯେହେତୁ ଜଣେ ଆଦର୍ଶ ଶିକ୍ଷକ ଆତ୍ମ-ପ୍ରଚାର କରେନା, ନିଜ ଗୁଣ ଗାରିମାର ବଖାଣ କରେନା, ତାକୁ ଲୋକ ଲୋଚନକୁ ଆଣିବାର ଦାୟିତ୍ୱ ହୁଏ ଛାତ୍ରର। ଗବେଷକ, ଲେଖକ, କବି ପରି ତା'ର କୃତି ହୁଅନ୍ତି ତା'ର ଛାତ୍ରମାନେ। ସେମାନେ ତାକୁ ଭଲଭାବେ ଚିହ୍ନନ୍ତି। ଉକ୍ତ ଦାୟିତ୍ୱକୁ ନିର୍ବାହ କରି ଛାତ୍ରମାନେ ଗୋଟିଏ ବଡ଼ ସାମାଜିକ କାମ କରିଛନ୍ତି, ଏଥିରେ ସଂଦେହ ନାହିଁ। କେବଳ ନିଜ ଶିକ୍ଷକ ନୁହନ୍ତି, ସମଗ୍ର ଶିକ୍ଷକ ସମାଜ ପ୍ରତି ଏହା ଏକ ଆଦର୍ଶ ଶ୍ରଦ୍ଧାଞ୍ଜଳି ହେବ- ଏ ବିଶ୍ୱାସ ଆମର ଅଛି।

ତିନି ବର୍ଷ ତଳେ (୨୦୦୩ ମସିହାରେ) ସଂବଲପୁରଠାରେ ସ୍ଥାନୀୟ ଶିକ୍ଷକ ମାନଙ୍କର ଏକ ଆଠଦିନିଆ ତାଲିମ କାର୍ଯ୍ୟକ୍ରମ ଆୟୋଜନ କରିବା ଅବସରରେ ମୁଁ ବିଷୟଟିର ପରିକଳ୍ପନା କରିଥିଲି। ପ୍ରତିଦିନ ସଂଧ୍ୟାରେ ଦୈନିକ ନିୟମିତ କାର୍ଯ୍ୟକ୍ରମ ଉତ୍ତାରୁ ପ୍ରତିଭାଗୀ ଶିକ୍ଷକମାନେ ଅନୌପଚାରିକ ଢଂଗରେ ନିଜ ନିଜ ଅନୁଭୂତିରୁ ତାଙ୍କ ଆଦର୍ଶ ଶିକ୍ଷକ ସଂପର୍କରେ ବକ୍ତବ୍ୟ ରଖନ୍ତି। ଆଲୋଚନାକୁ ମହତ୍ତ୍ୱ ଦେବା ପଛରେ ସଂଯୋଜକ ଭାବରେ ମୋର କେତୋଟି ସୀମିତ ଉଦ୍ଦେଶ୍ୟ ରହିଥିଲା। ପ୍ରଥମ, ପ୍ରତିଭାଗୀମାନଙ୍କ ଦୃଷ୍ଟିରେ କିଏ ଆଦର୍ଶ

ଶିକ୍ଷକ, କ'ଣ ସବୁ ତାଙ୍କର ଚରିତ୍ର, ସେ ସଂପର୍କରେ ଅବଗତ ହେବା। ଦ୍ୱିତୀୟତଃ, ଏଭଳି ଏକ ଚର୍ଚ୍ଚା ଆରଂଭ ହେଲେ ପ୍ରତିଭାଗୀ ବକ୍ତା ଓ ଶ୍ରୋତାମାନଙ୍କ ବ୍ୟକ୍ତିତ୍ୱ ଓ ପାଠ ପଢ଼ା ଶୈଳୀରେ ତା'ର ପ୍ରଭାବ ପଡ଼ିବ। ତୃତୀୟତଃ, ପ୍ରତିଭାଗୀମାନଙ୍କର ହୃଦବୋଧ ହେବ ଯେ ଭଲ ଶିକ୍ଷକ ଜଣେ ସମାଜରେ ଅଲୋଡ଼ା, ଅପଚ଼ରା ନୁହେଁ। ସମାଜ ଗଠନରେ ତା'ର ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି। ତା' ହାତ ଗଢ଼ା ଛାତ୍ର ସମାଜ ଏକଥା କେବେ ଭୁଲି ପାରନ୍ତି ନାହିଁ; ତାକୁ ଚିର ଅମର କରି ରଖନ୍ତି। ମୂର୍ତ୍ତିକାରଟିଏ ନିଜେ ସନ୍ତୁଷ୍ଟ ନହେବା ଯାଏଁ ଯେମିତି ତା' ହାତଗଢ଼ା ମୂର୍ତ୍ତିକୁ ସର୍ବସମକ୍ଷକୁ ଆଣେନା, ଆଦର୍ଶ ଶିକ୍ଷକ ବି ପୂରା ମନ ଧ୍ୟାନ ଦେଇ ତା' ଛାତ୍ରକୁ ଗଢ଼େ ! ସାଂସାରିକ ଜୀବନରେ ବିଷୟ୍-ସଂପତ୍ତିର ତା'ର ଅଭାବ ରହିପାରେ। ତା' ସତ୍ତ୍ୱେ ତା'ର ଉପଲବ୍ଧି ଅନ୍ୟମାନଙ୍କ ତୁଳନାରେ ଊଣା ନୁହେଁ। ଏହି ଧରଣର ଅବବୋଧଟିଏ ଯଦି ଜଣେ ସାଧାରଣ ଶିକ୍ଷକ ମନରେ ସୃଷ୍ଟି ହୋଇପାରିଲା, ଶିକ୍ଷା ଉପରେ ତା'ର ଦିଗନ୍ତ ବିସ୍ତାରୀ ପ୍ରଭାବ ପଡ଼ିବ- ଏଥିରେ ସଂଦେହ ନାହିଁ।

ଆଠଦିନ ଧରି ରୋଜ ଚର୍ଚ୍ଚା ଚାଲିଲା। ପ୍ରତିଭାଗୀମାନେ ଛାତ୍ର ବେଳର ନିଜ ନିଜର ଅନୁଭୂତି ବର୍ଣ୍ଣନା କରନ୍ତି। ନିଜର ପ୍ରିୟ୍ ଶିକ୍ଷକଙ୍କର ବ୍ୟକ୍ତିତ୍ୱ, ପାଠପଢ଼ା ଶୈଳୀ, ଆଚ଼ାର ବିଚ଼ାର ଆଦି ବିସ୍ତାରରେ ରଖନ୍ତି। ଅନୌପଚ଼ାରିକ ଚର୍ଚ୍ଚା। ତେଣୁ ବକ୍ତା ନିମିତ୍ତ ଭାଷା ତଥା ଶୈଳୀର କୌଣସି ବଂଧନ ନଥାଏ। ବକ୍ତା ନିଜ ଭଙ୍ଗୀରେ କହନ୍ତି। ସେତେବେଳେ ପ୍ରଥମ କରି ମୋର ଅନୁଭବ ହେଲା ଯେ, ନିଜ ଆଦର୍ଶ ଶିକ୍ଷକଙ୍କ ସମ୍ବନ୍ଧରେ ଆଲୋଚ଼ନା କରିବା ଏମିତି ଏକ ସମ୍ବେଦନଶୀଳ ବିଷୟ୍, ଯାହା ଉଭୟ୍ ବକ୍ତା ଓ ଶ୍ରୋତାକୁ ଭିନ୍ନ ଏକ ଭାବ ରାଜ୍ୟକୁ ଟାଣି ନେଇଯିବାର ସାମର୍ଥ୍ୟ ରଖେ। ସମସ୍ତେ ଭାବ ବିହ୍ୱଳିତ। ଅନୁଭୂତିକୁ ଅଭିବ୍ୟକ୍ତ କଲାବେଳେ ସେମାନେ ନିଜ ନିଜ ଶିଶୁ, କିଶୋର ଅବସ୍ଥାକୁ ଫେରିଯାଉଛନ୍ତି। ଆଦର୍ଶ ଶିକ୍ଷକଙ୍କର ସ୍ମୃତି, ତ୍ୟାଗ, କର୍ମନିଷ୍ଠା ସେମାନଙ୍କୁ ଏମିତି ଆନ୍ଦୋଳିତ କରି ରଖୁଛି ଯେ, ତହିଁରୁ ବର୍ତ୍ତି ପାରିବା କାଠିକର ହୋଇପଡୁଛି। ସେତେବେଳେ କେତେ ଯେ ବକ୍ତା କାନ୍ଦିଛନ୍ତି, ତା'ର ହିସାବ ନାହିଁ। ନିଜ ପ୍ରିୟ୍ ଶିକ୍ଷକଙ୍କର ଋଣ ସେ ସୁଝି ପାରିବେ ନାହିଁ ! ସେହି ନିର୍ଦ୍ଦିଷ୍ଟ ଶିକ୍ଷକ ଜଣକ ନଥିଲେ, ଛାତ୍ର ଭାବରେ ତାଙ୍କର(ବକ୍ତାଙ୍କର) ଜୀବନ କେଉଁ ମୋଡ଼ ନେଇଥାନ୍ତା ତାହା କହି ହେବନି ! ଶ୍ରୋତାଙ୍କ ଆଖିରେ ବି ଲୁହ। କାର୍ଯ୍ୟକ୍ରମର ସଂଯୋଜକ ଭାବରେ ମୋର ତଟସ୍ଥ

ରହିବା କଥା । ମାତ୍ର ମୁଁ ବି କୋହ ସଂଭାଳି ପାରିନି । ବକ୍ତାର ଆଦର୍ଶ ଶିକ୍ଷକ ଭିତରେ ମତେ ମୋର ଶିକ୍ଷକଗଣ ଦିଶିଛନ୍ତି । ଶିକ୍ଷକଙ୍କର 'ଦାନ' ମୁଁ କେବେ ସୁଝିପାରିବି ନାହିଁ । ସର୍ବଦା ତାଙ୍କ ଆଖିରେ 'ସାନ' 'ଦୟାର ପାତ୍ର' ହୋଇ ରହିବା ଯେମିତି ମୋର ନିୟତି ! ସେହି ଋଣ ପରିଶୋଧ ନ କରିପାରିବାର ଅସାମର୍ଥ୍ୟ ମତେ କନ୍ଦେଇ ଦେଇଛି । ମୋର ମନେ ହେଲା, ବାକି ସମସ୍ତଙ୍କ ଆଖିର ଲୁହ ପଛରେ ବି ସେଇଆ କାରଣ ହୋଇଥିବ ! ଯେଉଁ କର୍ମନିଷ୍ଠା ଯୋଗୁଁ ପ୍ରିୟ ଶିକ୍ଷକ ଆମ ଜୀବନର ମୋଡ଼ ବଦଳେଇ ଦେଲେ, ବୋଧେ ସେହି କର୍ମନିଷ୍ଠା ନିଜ ଠାରେ ନଥିବାର ଅପରାଧବୋଧ ଆମକୁ କନ୍ଦେଇ ଦେଇଛି !

ଆଲୋଚ଼ନା ଚାଲେ । ସମୟ ଜଣାପଡ଼େନି । ଲାଗେ, ସମୟ ଟିକେ ଅଟକି ଯାଆନ୍ତା କି ! ସେହି ବିହ୍ୱଳିତ ଭାବ ରାଜ୍ୟରେ ଆମେ ରହି ଯାଆନ୍ତେ କି ! ପୂରା କାର୍ଯ୍ୟକ୍ରମ ଭିତରେ ସନ୍ଧ୍ୟାର ଏହି ଅନୌପଚ଼ାରିକ ଚର୍ଚ୍ଚା ସମୟକୁ ସମସ୍ତେ ଚାକି ରହନ୍ତି । ଚର୍ଚ୍ଚା ଆମ ସମସ୍ତଙ୍କୁ ଅର୍ନ୍ତମୁଖୀ କରିଦିଏ, ଅତୀତ ସାଙ୍ଗରେ ବର୍ତ୍ତମାନକୁ ଯୋଡ଼ିବା ପାଇଁ ତାହା ମାଧ୍ୟମ ହୁଏ; ପ୍ରତିଭାଗୀ ଶିକ୍ଷକ ଭିତରେ କିଶୋର ଛାତ୍ରଟିକୁ ଏବଂ ଛାତ୍ର ମନ ଭିତରେ ଆଦର୍ଶ ଶିକ୍ଷକକୁ ନେଇ ଗଢ଼ିଉଠୁଥିବା ପରିକଳ୍ପନାକୁ ଅନୁଭବ କରିବା ପାଇଁ ଅବସର ମିଳେ । ଅତୀତ, ବର୍ତ୍ତମାନ, ଶିକ୍ଷକ, ଛାତ୍ର, ସ୍କୁଲ୍ ଶିକ୍ଷକ, ଅଧ୍ୟାପକ, ସବୁ ଯେମିତି ଏକାକାର ହୋଇଯାଆନ୍ତି । ଆଖିର ଲୁହରେ ଲାଜ, ଭୟ, ଅହଂଭାବ, ଗର୍ବ ଆଦି ଧୋଇ ଯାଆନ୍ତି । ଲାଗେ, ଆମେ ସମସ୍ତେ ଛାତ୍ର; ଜଣେ ଆମର ଶିକ୍ଷକ ! ତାଙ୍କରି ତତ୍ତ୍ୱାବଧାନରେ ଆମେ ଏକତ୍ରିତ ହୋଇଛୁଁ ଏଇଠି ! "ଗୁରୁ ସାକ୍ଷାତ ପରଂ ବ୍ରହ୍ମ" ନାମକ ଶ୍ଳୋକଟି ପିଲାଦିନୁ ବାରଂବାର ଆବୃତ୍ତି କଲାପରେ ବି ଯାହାର ଅର୍ଥ ମୋ ପାଇଁ ଅବୁଝା ରହୁଥିଲା, ତାକୁ ସ୍ୱୟଂ ଯେମିତି ସେଦିନଗୁଡ଼ିକରେ ମୁଁ ଅନୁଭବ କରୁଥିଲି । ମୋର ଦୃଢ଼ ଧାରଣା, ଏହା କେବଳ ଜଣକର ବ୍ୟକ୍ତିକ ଅନୁଭବ ନଥିଲା, ଆମ ସମସ୍ତଙ୍କର ସାମୂହିକ ଅନୁଭବ ! ନୋହିଲେ ଚର୍ଚ୍ଚା ଏଭଳି ଆବେଗମୟ ପରିବେଶ ସୃଷ୍ଟି କରି ପାରିନଥାନ୍ତା !

ସେତେବେଳେ ପ୍ରତିଭାଗୀମାନଙ୍କୁ ଅନୁରୋଧ କରିଥିଲି, ନିଜ ନିଜ ଅନୁଭୂତିକୁ ଲେଖି ଦେବାପାଇଁ । ଅନ୍ୟମାନଙ୍କ ପାଇଁ ତାହା କେବଳ ସୁଖପାଠ୍ୟ ହେବ ନାହିଁ, ସାଙ୍ଗରେ ଶିକ୍ଷଣୀୟ ବି ହେବ । ମାତ୍ର ଦୁଃଖର କଥା, ଲେଖା ହେଇପାରିଲା ନାହିଁ । କେତେକ ଶିକ୍ଷକ ପ୍ରତିଶ୍ରୁତି ଦେଲେ, ପରେ ଲେଖା ପଠାଇ

ଦେବେ । ତା' ବି ହେଲା ନାହିଁ । ତା'ର ଗୋଟାଏ ତ କାରଣ ହୋଇଥିବ ଯେ ସେହି ଭାବରାଜ୍ୟରୁ ଉଜୁଡ଼ି ଗଲାପରେ ଲେଖିବାଟା ଆଉ ପ୍ରାଥମିକତା ପାଇନି ! ମାତ୍ର ତା'ଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ କାରଣ ହେଲା ଯେ, ସେହି ଭାବାନୁଭୂତିକୁ ତାଙ୍କ ପକ୍ଷେ କାଗଜ କଲମରେ ସଠିକ୍ ଭାବେ ଅଭିବ୍ୟକ୍ତ କରିବା କଷ୍ଟକର । ସେହି ଅଭିବ୍ୟକ୍ତ କରି ନପାରିବାର ଅପାରଗତା ହୁଏତ ଲେଖିବା ପାଇଁ ସେମାନଙ୍କ ଆଗରେ ବାଧକ ସାଜିଲା । ଏହି ଅନୁଭୂତି ପରେ ସ୍ଥିର କଲି, କେତେଜଣ ସୃଷ୍ଟିଶୀଳ ଲେଖକଙ୍କୁ ନିଜ ନିଜ ଆଦର୍ଶ ଶିକ୍ଷକଙ୍କ ସଂପର୍କରେ ଲେଖିବା ପାଇଁ ଅନୁରୋଧ କରିବି । ସେସବୁ ଲେଖାକୁ ଏକତ୍ରିତ କରି ପ୍ରକାଶ କଲେ ଛାତ୍ର, ଶିକ୍ଷକ, ସାଧାରଣ ନାଗରିକ, ସମସ୍ତଙ୍କ ପାଇଁ ତାହା ପଠନୀୟ ହେବ, ଶିକ୍ଷଣୀୟ ବି ହେବ । ମୋର ଅନୁରୋଧ ରକ୍ଷା କରି ସମସ୍ତେ ଲେଖା ଲେଖିଛନ୍ତି, ସେ ଏକ ସୌଭାଗ୍ୟର କଥା । ତା'ଠାରୁ ବଡ଼ କଥା ଯେ ସବୁଗୁଡ଼ିକ ଲେଖା ମୋର ପରିକଳ୍ପନା ଅନୁକୂଳ ହୋଇଛି, ଅଭିବ୍ୟକ୍ତିର ଅଭାବରେ ଯେଉଁ ଅନୁଭବଗୁଡ଼ିକୁ ମୁଁ ଏବଂ ଅନ୍ୟ ପ୍ରତିଭାଗୀମାନେ ରୂପ ଦେଇ ପାରୁନଥିଲୁ, ଉପଯୁକ୍ତ ବିଂଧାଣୀ ହାତରେ ସେଗୁଡ଼ିକ ଜୀବନ୍ତ ହୋଇଉଠିଛି । ମୋର ବିଶ୍ୱାସ, ପୁସ୍ତକର ଅନ୍ୟ ସାଧାରଣ ପାଠକ ବି ଠିକ୍ ମୋ ପରି ଅନୁଭବ କରିବେ । ଅନୁଭୂତିଗୁଡ଼ିକୁ ପଢ଼ିଲା ବେଳେ ଅନ୍ତତଃ ଆମେ ଭାବରାଜ୍ୟରେ ରହିବାର ଅମୃତ-ସ୍ୱାଦ ଚାଖିପାରିବୁ !

ସେହିଭଳି ପ୍ରଫେସର ଗୋଷ୍ଠ ବିହାରୀ କାନୁନ୍‌ଗୋ ବହୁବର୍ଷ ଧରି ଭାରତ ସରକାରଙ୍କ ଦ୍ୱାରା ପରିଚାଳିତ ଏକ ପ୍ରମୁଖ ଶିକ୍ଷକ ତାଲିମ୍ ମହାବିଦ୍ୟାଳୟର ଅଧ୍ୟକ୍ଷ ଦାୟିତ୍ୱ ନିର୍ବାହ କରିଛନ୍ତି । କେବଳ ଅଧ୍ୟକ୍ଷ ଭାବରେ ନୁହେଁ, ଜଣେ ଦର୍ଶନ ଅଧ୍ୟାପକ ହିସାବରେ ମଧ୍ୟ ସେ ଶିକ୍ଷକମାନଙ୍କୁ ସହକର୍ମୀ ରୂପେ ପାଇଛନ୍ତି, ଛାତ୍ରମାନଙ୍କୁ ତାଲିମ୍ ଦେଇଛନ୍ତି । ସେହି ସୁଦୀର୍ଘ ଅନୁଭୂତିର ଏକ ସଂକ୍ଷିପ୍ତ ଓ ମାର୍ମିକ ପରିପ୍ରକାଶ ହେଲା ତାଙ୍କ ନିବଂଧ, "ପରିବର୍ତ୍ତିତ ପରିସ୍ଥିତିରେ ଶିକ୍ଷକ" । ନିଜେ ଭାଗ ନେଇଥିବା ସେହି ପୁରୁଣା କାଳଖଣ୍ଡରେ ସେ ଅଟକି ଯାଇନାହାନ୍ତି । ଦାର୍ଶନିକ ଭାବରେ ତଟସ୍ଥ, ସ୍ଥିତପ୍ରଜ୍ଞ ହୋଇ ସେ ସାମାଜିକ 'ପରିସ୍ଥିତି'ରେ ଘଟୁଥିବା ଅବଶ୍ୟମ୍ଭାବୀ 'ପରିବର୍ତ୍ତନ'କୁ ହୁଏତ ସ୍ୱାଗତ କରିଥାଇ ନ ପାରନ୍ତି, ମାତ୍ର ସ୍ୱୀକାର କରିଛନ୍ତି ଏବଂ ସେଥିରେ ଶିକ୍ଷକର କ'ଣ ସବୁ ଭୂମିକା ହେବା କଥା, ସେ ନେଇ ନିଜର ଦୃଷ୍ଟିକୋଣ ବାଢ଼ିଛନ୍ତି । ଗୋଟିଏ ଦୃଷ୍ଟିରୁ ଦେଖିଲେ ମନେହୁଏ ତାଙ୍କ ଲେଖା ହେଲା ଏକ ଗବେଷଣା ପ୍ରସୂତ ନିବଂଧ । ମାତ୍ର

ବ୍ୟକ୍ତିଗତ ଅନୁଭୂତି ସଂବଳିତ ଯୁକ୍ତିଗୁଡ଼ିକ ଏତେ ମାତ୍ରାରେ ପରିପୁଷ୍ଟ ଯେ ଆଦର୍ଶ ଶିକ୍ଷକ ସଂବଂଧରେ ଥିବା 'ଗବେଷଣାସ୍ତରୀୟ' ତତ୍ତ୍ୱ ସହ ଅପରିଚ଼ିତ ପାଠକ ପାଇଁ ବି ତାହା ଅବୁଝା ମନେ ହେବ ନାହିଁ । ଯେହେତୁ ବିଷୟଟି ସହିତ ଲେଖକଙ୍କର ଏକ ଆତ୍ମିକ ସମ୍ବନ୍ଧ ରହିଛି, ଗବେଷଣା ନିବଂଧରେ ସାଧାରଣତଃ ପରିଲକ୍ଷିତ ହେଉଥିବା ଭାଷା ଓ ଭାବଗତ କ୍ଲିଷ୍ଟତା ଲେଖକଙ୍କୁ ଆଦୌ ସ୍ପର୍ଶ କରିପାରିନି । ଫଳତଃ, ପ୍ରାଣଖୋଲା ଭାଷାରେ ସେ ନିଜ ବିଚ଼ାରକୁ ଅଭିବ୍ୟକ୍ତ କରି ପାରିଛନ୍ତି ।

ଆଦର୍ଶ ଶିକ୍ଷକ ତା'ର ଶିକ୍ଷଣ ପ୍ରଣାଳୀକୁ ନିଜେ ନିର୍ମାଣ କରେ । ତାଲିମ୍ କେନ୍ଦ୍ରର ଶିକ୍ଷା ଏବଂ ସ୍ଥିରିକୃତ ଶିକ୍ଷଣ ପ୍ରଣାଳୀ ବୋଧହୁଏ ସେତେବେଳେ ବିଶେଷ ଉପଯୋଗୀ ସିଦ୍ଧ ହୁଏ ନାହିଁ । ମନରେ ନିଷ୍ଠା ଥାଏ । ତେଣିକି ସ୍ଥାନୀୟ ପରିବେଶ ଓ ପରିସ୍ଥିତି ତାକୁ ନିଜସ୍ୱ ଶିକ୍ଷଣ ଶୈଳୀଟିଏ ତିଆରି କରିବାକୁ ବାଟ ଦେଖାନ୍ତି । ସେ ସ୍ଥାଣୁ ହୋଇ ରହିପାରେନା । ବରଂ ପ୍ରତି ମୁହୂର୍ତ୍ତରେ ନିଜ ଶୈଳୀକୁ ପରଖୁଥାଏ, ପ୍ରାସଙ୍ଗିକ କରିବା ପାଇଁ ପ୍ରୟାସ କରୁଥାଏ । ଏହି କାରଣରୁ ଆଦର୍ଶ ଶିକ୍ଷକମାନଙ୍କର ଶୈଳୀରେ ବିବିଧତା ଦେଖାଯିବା ସ୍ୱାଭାବିକ । ଶରତ ପୂକାରୀଙ୍କ 'ସେନ୍‌ଗୁପ୍ତ ଆଜ୍ଞା' ଭୁଲ୍ ସୁଧାରିବା ପାଇଁ ଛାତ୍ରକୁ କଠୋର ଶାରୀରିକ ଦଣ୍ଡ ଦିଅନ୍ତି । କନିଅର ବେତର ପ୍ରହାର ସହ୍ୟ କରିବା ଛାତ୍ରପାଇଁ କଷ୍ଟକର ହୁଏନି, କଷ୍ଟକର ହୁଏ ଆଜ୍ଞାଙ୍କର ବେତ୍ରାଘାତ କରିବା ସମୟର କରୁଣ ମନୋସ୍ଥିତିକୁ ସହ୍ୟ କରିବା । କ୍ଷୀଣ, ଦୁର୍ବଳିଆ ତାଙ୍କ ଶରୀର । ଜୋର୍ ଜୋର୍‌ରେ ବେତର ପ୍ରହାର କରିବା କେତେ କଷ୍ଟକର ହେଉନଥିବ ତାଙ୍କୁ ? ଛାତ୍ରକୁ ଲାଗେ ଯେମିତି ଆଜ୍ଞା ନିଜେ ନିଜକୁ ପ୍ରହାର କରୁଛନ୍ତି । ଭାବୁଛନ୍ତି ବୋଧେ, ତାଙ୍କୁ ଶାସ୍ତି ଦରକାର, ତାଙ୍କ ଶିକ୍ଷକତାରେ କାହିଁ କେଉଁଠି ଭୁଲ୍ ରହିଗଲା । ନୋହିଲେ ଛାତ୍ର ଦଣ୍ଡ ପାଇବା ଯୋଗ୍ୟ 'କୁକାମ' କରିନଥାନ୍ତା । ସେହି ସମୟରେ ଛାତ୍ର ଆଗଭର ହୋଇ କହେ; "ଆଜ୍ଞା, ଆପଣ ଭୁଲ୍ କରି ନାହାନ୍ତି ।" ଯେଉଁ ପ୍ରକାରେ ଦଣ୍ଡ ଭୋଗୁଥିବା ଛାତ୍ରର କଷ୍ଟ ଶିକ୍ଷକଠାରେ ପ୍ରତିଫଳିତ ହୁଏ, ଠିକ୍ ସେହି ପ୍ରକାରେ ଶିକ୍ଷକର କଷ୍ଟ ବି ଛାତ୍ର ଅନୁଭବ କରିପାରେ । ପରସ୍ପର ପାଇଁ ଉଭୟଙ୍କର ସେହି ଆହତଭାବ ଦୂରତା ବଦଳରେ ନିକଟତା ସୃଷ୍ଟି କରେ । ସେହି କାରଣରୁ ସୁଦୂର ବଙ୍ଗ ପ୍ରଦେଶରୁ ଆସି ଓଡ଼ିଶାର ଲଠଂଭା ଭଳି ଏକ ପଲ୍ଲୀ ଅଂଚ଼ଳରେ ଶିକ୍ଷକତା କରୁଥିବା "ହେଡ଼ମାଷ୍ଟ୍ରେ - ସେନଗୁପ୍ତ ଆଜ୍ଞା" ଛାତ୍ର ମହଲରେ ଆଦର୍ଶ ଶିକ୍ଷକର ପଦବୀ ପାଆନ୍ତି । ଜଣେ ସୃଜନଶୀଳ ଲେଖକ, କଳାକାର, ଚିତ୍ରଶିଳ୍ପୀ ତଥା

ଆଦର୍ଶ ଶିକ୍ଷକ ଶରତ ପୂଜାରୀ ଯେଉଁ ସହଜତାର ସହ ଆଜ୍ଞାଙ୍କର ଆଦର୍ଶ ପଣିଆକୁ ଦେଖାଇ ପାରିଛନ୍ତି, ତହିଁରେ କିଶୋର-ଜୀବନକୁ ମୋଡ଼ିବାର ସାମର୍ଥ୍ୟ ଦେଖିଛନ୍ତି, ତାଙ୍କର ଅନ୍ୟ ସହପାଠୀମାନଙ୍କ ବର୍ଣ୍ଣନାରେ ସେହି ସହଜତା ହୁଏତ ମିଳିନପାରେ। ତା' ସତ୍ତ୍ୱେ 'ଆଜ୍ଞା'ଙ୍କ ପାଇଁ ସେମାନଙ୍କ ମନରେ ଥିବା ସମ୍ମାନବୋଧ କି କେବେ ଊଣା ହେବ ?

ଶାରୀରିକ ଦଣ୍ଡ ଦେବା ଦୃଷ୍ଟିରୁ ଏହାର ଠିକ୍ ବିପରୀତ ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କର ପ୍ରିୟ ଶିକ୍ଷକଗଣ। ସିଆଲଖଣ୍ଡତା ଗାଁ ହାଇସ୍କୁଲ୍‌ରେ ଅନ୍ୟମାନଙ୍କ ମଧ୍ୟରେ ଲେଖକଙ୍କ କାକା କଂଦର୍ପ ତ୍ରିପାଠୀ ମଧ୍ୟ ଜଣେ ଶିକ୍ଷକ। କିଶୋର ଛାତ୍ରଟିକୁ ମଣିଷ କରିବା ପାଇଁ ଆଦର୍ଶ ଶିକ୍ଷକ ହାତରେ ମାଡ଼ ଏଠି ମାଧ୍ୟମ ନୁହେଁ। ମାଧ୍ୟମ ହୁଏ ବଂଧୁତା। ଛାତ୍ର ଓ ଶିକ୍ଷକ ମଧ୍ୟରେ ନିୟମିତ ଉଭୟ ପାଠ ଓ ଶାଠର ଆଲୋଚ଼ନା ହୁଏ। ଶିକ୍ଷକମାନେ ଲେଖକ ଭଳି ଜଣେ ଛାତ୍ରଠାରେ କୌଣସି ପ୍ରକାର ସଂଶୋଧନ ସୁଦ୍ଧା କରିନାହାନ୍ତି। "ବରଂ ମୋର କେତେକ ଅନାବଶ୍ୟକ ଉଗ୍ରତାକୁ ବିନା ପ୍ରତିରୋଧରେ ସହିଯାଇଛନ୍ତି।" ଏହା ଛାତ୍ର ଓ ଶିକ୍ଷକ ମଧ୍ୟରେ ସବୁପ୍ରକାର ଦୂରତାକୁ ହ୍ରାସ କରିବା ସାଂଗରେ କୌଶରାବସ୍ଥାରେ ପାଦ ଦେଇ ଅନନ୍ୟ-ସାଧାରଣ ହେବାକୁ ଆକାଂକ୍ଷା ପାଳିଥିବା ଛାତ୍ରଟିକୁ ସ୍ୱାବଲମ୍ବୀ, ସ୍ୱାଧୀନଚ଼େତା ଓ ଆତ୍ମନିର୍ଭରଶୀଳ ହେବାକୁ ପ୍ରୋତ୍ସାହିତ କରିଛି। ଛାତ୍ର ହୋଇ ବି ସେ ଶିକ୍ଷକର ସମକନ୍ଧ, ସମକକ୍ଷ ! ଏହି ଗଭୀର ଆତ୍ମବିଶ୍ୱାସ ଓ ନିଡ଼ର ଭାବର ଜାଗୃତି ତା' ଜୀବନକୁ ନୂଆଁ ମୋଡ଼ ଦେଇଛି ଏବଂ ତା' ପାଇଁ ସେ ପ୍ରିୟ ଶିକ୍ଷକମାନଙ୍କ ପାଖରେ ଋଣୀ। ଘୋର ଅଭାବରେ ଥିଲେ ବି ଏ ଭଳିଆ ଶିକ୍ଷକ ପାଇଥିବା ଛାତ୍ରର ଜୀବନରେ କେବେ କ'ଣ "ହସ, ସାହସ ଓ ଉତ୍ସାହର ଅବସାନ" ଘଟିପାରେ ?

ଛାତ୍ରର ଦୃଷ୍ଟିରେ, ଅନୁଭୂତିରେ ଆଦର୍ଶ ଶିକ୍ଷକର ପରିଧି ଯେ କେତେ ବିସ୍ତାରିତ ହୋଇପାରେ, ତା'ର ଏକ ନମୂନା ଦେଖିବାକୁ ମିଳେ ପ୍ରଫେସର ସର୍ବେଶ୍ୱର ଦାଶଙ୍କ ଲେଖନୀରେ। ପ୍ରାଥମିକ ଶ୍ରେଣୀଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ କେତେ କେତେ ଶିକ୍ଷକ, ଅଧ୍ୟାପକଙ୍କଠାରୁ ସେ ଶିକ୍ଷାଲାଭ କରିଛନ୍ତି। ଆଜି ସ୍ମରଣ କଲେ "ପ୍ରାୟ ସମସ୍ତେ ମନେ ହେଉଛନ୍ତି ଆଦର୍ଶ ଶିକ୍ଷକ"। ମନେହୁଏ, ଯେମିତି ଜଣେ ଆଦର୍ଶ ଶିକ୍ଷକ ନିଜର କୌଣସି ଶିକ୍ଷକଙ୍କୁ ଅ-ଶିକ୍ଷକ ରୂପରେ ଚିନ୍ତା କରି ପାରେନା। 'ମା', ବାପା, ଭାଇ,

ଭଉଣୀ, ସାଙ୍ଗଙ୍କ ମଧ୍ୟରୁ କାହାକୁ ତୁମ୍ଭେ ବେଶୀ ଭଲ ପାଅ ବା କିଏ ତୁମକୁ ବେଶି ଭଲ ପାଆନ୍ତି" ବୋଲି ଅଡୁଆ ପ୍ରଶ୍ନଟିଏ ହେଲେ ଯେମିତି ନିଷ୍ପାପ ଶିଶୁଟି ପକ୍ଷରେ ଉତ୍ତର ଦେବା କଠିନ ହୋଇପଡ଼େ, ଲେଖକଙ୍କ ପକାଶେ ଜଣକୁ ଆଦର୍ଶ ଶିକ୍ଷକ ଭାବରେ ନିର୍ବାଚନ କରିବା ସେମିତି କଷ୍ଟକର ହୋଇପଡ଼ିଛି। ତେଣୁ 'ବିଶେଷ ଭାବରେ" ମନେ ପଡୁଥିବା ସ୍କୁଲ୍ ଶିକ୍ଷକମାନଙ୍କ କଥା ସେ କହିଛନ୍ତି; ପୁରୀ ଜିଲ୍ଲା ସ୍କୁଲ୍‌ର ତାଙ୍କ ଶିକ୍ଷକ କ୍ଷିତୀଶ ଚନ୍ଦ୍ର ଦେଙ୍କର ବ୍ୟକ୍ତିତ୍ୱକୁ ଚିତ୍ରଣ କରିଛନ୍ତି, ଆଉ କେତେକ ଶିକ୍ଷକଙ୍କୁ ମଧ୍ୟ ସ୍ମରଣ କରିଛନ୍ତି।

କ୍ଷିତୀଶ ଚନ୍ଦ୍ର ଦେ ଲେଖକଙ୍କ ଦୃଷ୍ଟିରେ ଆଦର୍ଶ ହେବା ପଛରେ ବୋଧହୁଏ ଏକ ବଡ଼ କାରଣ ହେବ ଶିକ୍ଷକଙ୍କର ବହୁମୁଖୀ ପ୍ରତିଭା ଏବଂ ଛାତ୍ରଙ୍କୁ ଗଢ଼ିବା ପକାଶେ ତା'ର ବିହିତ ଉପଯୋଗ। ସେ (ଶିକ୍ଷକ) ଗୀତ ଲେଖିପାରନ୍ତି, ହାରମୋନିଅମ୍ ଧରି ପିଲାଙ୍କୁ ଗୀତ ଶିଖାଇ ପାରନ୍ତି; ପ୍ରତିଷ୍ଠିତ ପତ୍ର ପତ୍ରିକାରେ ତାଙ୍କର କବିତା ଓ ପ୍ରବଂଧମାନ ପ୍ରକାଶିତ ହୁଏ, ସ୍କୁଲ୍‌ର ପତ୍ରିକା 'ମହୋଦଧି'ର ସଂପାଦନା ଭାର ବି ତାଙ୍କ ଉପରେ। ସେ ବଂଗାଳୀ ହେଲେ ମଧ୍ୟ ବଂଗାଳୀ-ଓଡ଼ିଆଙ୍କ ମଧ୍ୟରେ ପାତର ଅନ୍ତର କରୁନଥିଲେ। ହେଡ଼ମାଷ୍ଟର ହରିବାବୁ ଏବଂ ତାଙ୍କର "ଉଦାରତା ଓ ସୁକୌଶଳତା ହେତୁ" ଅବାଂଛିତ ବଂଗାଳୀ-ଓଡ଼ିଆ କଳହର ଛାୟା ସ୍କୁଲ୍‌ରେ ପଡ଼େ ନାହିଁ। ଖେଳକୁ ଉତ୍ସାହିତ କରନ୍ତି। "ଖେଳରେ ମାତି ବାରମ୍ବାର ଫେଲ୍ ହେଉଥିବା ଛାତ୍ରମାନଙ୍କ ପ୍ରତି" ସେ କଠୋର ହୋଇପାରନ୍ତି ନାହିଁ। ପୁଣି, ଶ୍ରେଣୀ ଶିକ୍ଷକ ଭାବରେ ସାହିତ୍ୟରେ ରସ ଆହରଣ କରିବା ପକାଶେ "ଯେଉଁ ସହୃଦୟତା ଦରକାର ତା'ର ମୂଳଦୁଆ ସେ ଦେଇଥିଲେ ଆମ ଭିତରେ।" ପଢ଼ାଉ, ପଢ଼ାଉ ସେ ନିଜେ ଅଭିଭୂତ ହୋଇଯାଆନ୍ତି, ଶ୍ରୋତାମଣ୍ଡଳୀକୁ ଅଭିଭୁତ କରି ପକାନ୍ତି। ୧୯୩୫-୪୦ ମସିହାରେ ପାଠ ପଢ଼ାଉଥିବା ଏହି ଅସାଧାରଣ ଶିକ୍ଷକର ଆଜି ଏକ ବିଂଶ ଶତାବ୍ଦୀରେ ହୁଏତ ପ୍ରତ୍ୟକ୍ଷ ଦର୍ଶନ ମିଳି ନପାରେ। ମାତ୍ର ତାଙ୍କର ସେହି ଆଦର୍ଶପଣିଆ ସେତେବେଳର ଛାତ୍ର ଏବଂ ପରବର୍ତ୍ତୀ ସମୟର ପ୍ରଫେସର ସର୍ବେଶ୍ୱର ଦାଶଙ୍କଠାରେ ଅତୁଟ ହୋଇ ରହିଯାଇଛି, ଏଥିରେ ସନ୍ଦେହ ନାହିଁ। ସେ କ୍ଷିତୀଶ ଚନ୍ଦ୍ର ଦେ ହୁଅନ୍ତୁ ବା ଆଲ୍‌ହାବାଦ ବିଶ୍ୱବିଦ୍ୟାଳୟର ଇଂରାଜୀ ପ୍ରଫେସର ସତୀଶ ଚନ୍ଦ୍ର ଦେବ ହୁଅନ୍ତୁ ଲେଖାରୁ ସେମାନଙ୍କ ସମ୍ବନ୍ଧରେ ଜାଣିଲା ପରେ ପ୍ରଫେସର ଦାଶଙ୍କ ବ୍ୟକ୍ତିତ୍ୱ ଓ ଶିକ୍ଷକତା ସହ ପରିଚିତ ଥିବା ପ୍ରତ୍ୟେକ ବ୍ୟକ୍ତି ନିଶ୍ଚିତ ରୂପେ

ସ୍ୱୀକାର କରିବ ଯେ ଶିକ୍ଷକଠାରୁ ପାଇଥିବା ଦାନକୁ ଅକୁଣ୍ଠିତ ଚିତ୍ତରେ ସାଧ୍ୟ ମତେ ଲେଖକ ନିଜ ଛାତ୍ର ମହଲରେ ବିତରଣ କରିବାକୁ ହିଁ ଜୀବନଯାକ ପ୍ରୟାସ କରିଛନ୍ତି । ଆଦର୍ଶ ଶିକ୍ଷକର ସ୍ମୃତିକୁ ସମ୍ଭାଳି ରଖିବା ପାଇଁ ଏହାଠାରୁ ଭଲ ବିକଳ୍ପ ବା ଆଉ କ'ଣ ହୋଇପାରେ ?

ଚିତ୍ତରଂଜନ ଦାସ ଆମ ସମୟର ଜଣେ ବିଶିଷ୍ଟ ତତ୍ତ୍ୱବିଦ । ସ୍ୱ-ଭାଷା ଓ ସାହିତ୍ୟ ଦେଇ ବିଶ୍ୱ ସାହିତ୍ୟ ଓ ସମାଜକୁ ଦେଖିବା, ବୁଝିବା ପାଇଁ, ନିଜକୁ ପରଖିବା ପାଇଁ ସେ କେତେ ଯେ ମୌଳିକ ଲେଖା ଓ ଅନୁବାଦ ମାଧ୍ୟମରେ ଉପାଦାନ ଏଯାଏଁ ଯୋଗାଇ ସାରିଲେଣି, ତା'ର ହିସାବ ରଖିହେବନି । ହେଲେ ତା'ଠାରୁ ବି ବେଶୀ ଜଣାଶୁଣା ସେ ଜଣେ ଶିକ୍ଷକ ଭାବରେ । ବିଶ୍ୱବିଦ୍ୟାଳୟର ବୟସ୍କ ଛାତ୍ରଠାରୁ ଆରମ୍ଭ କରି କୁନି କୁନି ପିଲାଯାଏଁ କୌଣସି ଛାତ୍ର ଭିତରେ ସେ ପାତର ଅନ୍ତର କରନ୍ତି ନି; କାହାରି ପାଇଁ ସେ ଅପହଂଚ୍ ହୁଅନ୍ତି ନାହିଁ । ଆଜି ପରିଣତ ବୟସରେ ବି ସେ ଶିକ୍ଷକତାକୁ ଛାଡ଼ି ପାରିବେ ନାହିଁ । ନିଜ ପାଠପଢ଼ା ଦିନଗୁଡ଼ିକର କଥା ମନେ ପକାଇଲା ବେଳେ ସେ ସ୍ୱୀକାର କରନ୍ତି ଯେ, "ସବା ଆଗ ମୋର ଶିକ୍ଷକମାନେ ହିଁ ଦୃଷ୍ଟିଗୋଚର ହୋଇ ଆସନ୍ତି । ଆଗ ଶିକ୍ଷକମାନେ ତା'ପରେ ଯାଇ ବିଦ୍ୟାଳୟ ଘରଗୁଡ଼ିକ । ସେହି ଘରଗୁଡ଼ିକ ପଛ, ଶିକ୍ଷକମାନେ ହେଉଛନ୍ତି ମୁଖ୍ୟ ।" ତାଙ୍କର ଏବେ ମଧ୍ୟ ମନେ ଅଛି କେମିତି କୋଉ ଶିକ୍ଷକ ଅନ୍ୟ ସମସ୍ତଙ୍କଠାରୁ ଅଧିକ ଭଲ, ସେ ନେଇ ପିଲାଙ୍କ ମଧ୍ୟରେ ମତଭେଦ ରହୁଥିଲା । ପିଲାଏ ନିଜ ନିଜ ନିର୍ବାଚନଗୁଡ଼ିକୁ କଦାପି ଭୁଲ୍ ବୋଲି ମାନୁନଥିଲେ । ଏହି କ୍ରମରେ ସେ ସଠିକ୍‌ଭାବେ ମନେ ରଖିଛନ୍ତି କଟକ ରାଣୀହାଟ ମଧ୍ୟ ଇଂରାଜୀ ବିଦ୍ୟାଳୟର ତାଙ୍କ ଶିକ୍ଷକ ବାଞ୍ଛାନିଧି ଶତପଥୀଙ୍କ କଥା । ଭୁଲ୍ କଲେ ବାକ୍ୟ ମାଧ୍ୟମରେ ଯେଉଁ କ୍ରୋଧ ବର୍ଷଣ କରନ୍ତି, ତା'ର ପରିଣତି "ତରଳ ଓ ସହଜ ବୟସର" ପିଲାଙ୍କ କଇଁ କଇଁ ହୋଇ କାନ୍ଦିବା ଯାଏଁ ଯାଏ । ତେଣିକି ଲୁହଧାରରେ ପିଲାଙ୍କ ସବୁ ଭୁଲ୍, ସବୁ ଅପରାଧ ଧୋଇ ହୋଇଯାଏ, ସାରଙ୍କ କ୍ରୋଧାଗ୍ନି ଲିଭିଯାଏ । ସ୍କୁଲ୍‌ର ସାନ ହତାଟି ଭିତରେ ନିର୍ଦ୍ଧାରିତ ପାଠଟିଏ ପଢ଼ିବା ପାଇଁ ଆସୁଥିବା କିଶୋର ଛାତ୍ରସମାଜକୁ ସାର କେତେ ନା କେତେ ବିସ୍ତାର ମଧ୍ୟକୁ ପ୍ରାୟ ହାତ ଧରି" ନେଇ ଯାଆନ୍ତି ଯେ ତା'ର କଳନା ନାହିଁ । ଝାଟିମାଟିର ସେହି ଛୋଟିଆ ସ୍କୁଲ୍ ଗୃହଟି ପୁଣି ବିଶ୍ୱର ବ୍ୟାପକତାକୁ ଜାଣିବା ବୁଝିବା ପାଇଁ ଗବାକ୍ଷ ହୁଏ, ସାରଙ୍କ ସହାୟତାରେ ।

ଚିତ୍ତଭାଇଙ୍କ 'ମହାଭାଗ୍ୟ' ଯେ ଦେଶରେ, ବିଦେଶରେ, ବିଦ୍ୟାଳୟରେ, ସବୁଠି ସେ କେବଳ ଭଲ ଶିକ୍ଷକମାନଙ୍କୁ ହିଁ ପାଇଛନ୍ତି । ସ୍କୁଲ୍‌ବେଳ କଥା ପଡ଼ିଲେ ତାଙ୍କ ବାଞ୍ଛାନିଧି ସାରଙ୍କ କଥା ବିଶେଷ ଭାବରେ ମନେ ପଡ଼େ, କାରଣ ଛାତ୍ରପାଇଁ "ଭଲ ଶିକ୍ଷକ ପାଇବାର ସେ ବାଟ ଖୋଲି ଦେଇଛନ୍ତି" । ଦୁଇ ଜଣ ଆଦର୍ଶ ଶିକ୍ଷକ ମଧ୍ୟରେ ଛାତ୍ର କେମିତି ପ୍ରତିଦ୍ୱନ୍ଦିତା ଦେଖିପାରେନା, ତା'ର ବର୍ଣ୍ଣନା ଏଥିରୁ ଅଧିକ ସହଜ ଓ ସରଳ ଶବ୍ଦରେ ବୋଧେ ଆଶା କରାଯାଇପାରେନା!

ଏକା କିସମର ସହଜତା ରହିଛି ପ୍ରତିଭା ରାୟଙ୍କ ଅଭିବ୍ୟକ୍ତିରେ । ଓଡ଼ିଆ ସାହିତ୍ୟର ସେ ଜଣେ ବହୁ ପରିଚିତ ସ୍ରଷ୍ଟା । ଗାଁଠାରୁ ସହର ଯାକେ, ପାଠୁଆ ଠାରୁ ଦରପାଠୁଆ ପର୍ଯ୍ୟନ୍ତ, ସମସ୍ତଙ୍କୁ ତାଙ୍କ ଦୃଷ୍ଟିରେ ଧରି ରଖିବାର ସାମର୍ଥ୍ୟ ରହିଥାଏ । ସେଥିପାଇଁ ଓଡ଼ିଶା ଓ ଓଡ଼ିଶା ବାହାରେ ବି ତାଙ୍କ ସୃଷ୍ଟିର ଅସଂଖ୍ୟ ଗ୍ରାହକ । ନିଜର ପ୍ରିୟ ଶିକ୍ଷକ ବାଛିବା ବେଳେ ସେ ଆଦୌ କାର୍ପଣ୍ୟ ଦେଖାଇ ନାହାନ୍ତି । ଆରମ୍ଭ ହୋଇଛି ବାଲିକୁଦା ନିମ୍ନ ପ୍ରାଇମେରୀ ସ୍କୁଲ୍‌ର 'ବଡ଼ମାଷ୍ଟ୍ରେ' ଦୁର୍ଗାଚରଣ ମହାନ୍ତି ଏବଂ 'ସାନମାଷ୍ଟ୍ରେ' ନଟବର ନାୟକଙ୍କ ଠାରୁ । ବଳଭଦ୍ର ଓ ଜଗନ୍ନାଥ ପରି ଦୁହେଁ ଲେଖିକାଙ୍କର ଶିଶୁ ପ୍ରାଣରେ ଯେମିତି ସ୍ଥାପିତ ହୋଇ ରହିଯାଇଛନ୍ତି, ତାଙ୍କୁ କାଢ଼ି ହେବନି ! "ନଟମାଷ୍ଟ୍ରେ କେବେ ରାଗିଛନ୍ତି କି କାହା ଉପରେ ?" ଲେଖିକା ନିଜକୁ ନିଜେ ପ୍ରଶ୍ନ କରନ୍ତି, କାରଣ ଯେତେ ମନେ କଲେ ବି 'ସାନମାଷ୍ଟ୍ରେଙ୍କର' ରାଗିବା ଦୃଶ୍ୟ ମନେ ପଡ଼େନା । 'ପିଲାଙ୍କ ଦେହରେ ବେତ ନଛୁଆଇଁ, ପିଲାଙ୍କ କାନ ନ ମୋଡ଼ି, ଆଣ୍ଠେଇବା ପାଇଁ ନ କହି, ପିଲାଙ୍କ ପିଠି ଆଉଁସି ପାଠ ପଢ଼ାଇବାର କଳା ନଟ ମାଷ୍ଟ୍ରେଙ୍କୁ ଜଣା ଥିଲା" । ନିମ୍ନ ପ୍ରାଇମେରୀ ପରେ ପିଲା ଯାଏ ପ୍ରାଇମେରୀ ସ୍କୁଲ୍‌କୁ । ସେଠି ଆସନ୍ତି ଇତିହାସ ଶିକ୍ଷକ 'ଅଭିଳାଷ ସାର' । କବିତା ଲେଖିବା କୌଣସି ଅପରାଧ ନୁହେଁ । ଶିଶୁ ଛାତ୍ରଟିର ମନ ପ୍ରାଣରେ ଏ ଯେଉଁ ଭାବବୋଧର ଦୃଢ଼ ସ୍ଥାପନା ହେଲା, ତା' ପଛରେ ରହିଛି ସାରଙ୍କର ଅଭୟବାଣୀ । ପିତା ତଥା ଆଦର୍ଶ ଶିକ୍ଷକ ପରଶୁରାମ ଦାସ ଯେଉଁ ଦିନ କିଶୋର-କବି ପ୍ରତିଭାଙ୍କର ପ୍ରଥମ ପ୍ରକାଶିତ କବିତାଟିକୁ ଦେଖି ଘୋଷଣା କଲେ, "ସମସ୍ତେ ଶୁଣ, ମୋ ଝିଅ ଗୋଟେ କବି ହୋଇଗଲା", ସେହିଦିନଠାରୁ ସେ (ଲେଖିକା) ଆଉ ପଛକୁ ଚାହିଁନାହାନ୍ତି । ଅଥକ ହୋଇ ଲେଖିଛନ୍ତି । ତାଙ୍କୁ ସ୍ରଷ୍ଟା କରି ଗଢ଼ିବାରେ ଶିକ୍ଷକ (ଏବଂ ପିତା)ଙ୍କ ଉଦାତ୍ତ ଘୋଷଣାର ଯେଉଁ ମହତ୍ତ୍ୱ, ତାହା ଲେଖାରେ ସ୍ପଷ୍ଟ ଦେଖାଯାଉଛି । ଏକଥା ନିଶ୍ଚିତ ଯେ, ଶିକ୍ଷକଙ୍କର

ଆଦର୍ଶପଣିଆ, 'ମାଟିର ମଣିଷ' ବରକୁ ହେବାର କ୍ଷମତା, ମଣିଷ ପ୍ରତି ଅକୁଣ୍ଠ ବିଶ୍ୱାସ ଏବଂ ସେଦିନର ସେହି ଉଦାତ୍ତ ଘୋଷଣା ମଧ୍ୟରେ ଏକ ନିବିଡ଼ ସମ୍ବନ୍ଧ ରହିଛି । ଅନ୍ୟଥା, ଆଦର୍ଶ-ଶୂନ୍ୟ ବ୍ୟକ୍ତି କେବଳ ଘୋଷଣା କରି କାହାକୁ କ'ଣ କେବେ 'କବି' କରିପାରେ ?

ନରେନ୍ଦ୍ର ନାଥ ମିଶ୍ର ବହୁ ବର୍ଷ ଧରି ଗୁରୁଦେବ ରବୀନ୍ଦ୍ରନାଥ କୃତ ବିଶ୍ୱଭାରତୀରେ ଅଧ୍ୟାପନା କରିଛନ୍ତି । ଦୁଇଜଣ ସୁପଣ୍ଡିତ ପ୍ରହ୍ଲାଦ ପ୍ରଧାନ ଏବଂ କୁଂକବିହାରୀ ଦାଶଙ୍କର ସେ ପ୍ରତ୍ୟକ୍ଷ ଛାତ୍ର । ଏବଂ ତା' ବି ସ୍କୁଲ୍‌ରେ ! ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ର 'କାଶୀନାଥ ସାର' ପୁଣି ତାଙ୍କର ଇତିହାସ ଶିକ୍ଷକ । ସତ୍ୟବାଦୀର କେବଳ ନାଁ ନିଅନ୍ତେ ତା'ର ଛାତ୍ରର ଆଦର୍ଶପଣିଆ ସିଦ୍ଧ ହୋଇଯାଏ । ତା' ପାଇଁ ବିଶେଷଣ କିମ୍ବା ଉଦାହରଣର କୌଣସି ଆବଶ୍ୟକତା ନଥାଏ ! ପ୍ରତ୍ୟକ୍ଷ ଭାବେ ତାଙ୍କୁ ଶ୍ରେଣୀଗୃହରେ ପାଠ ପଢ଼େଇନଥିବା ସତ୍ତ୍ୱେ ରବୀନ୍ଦ୍ରନାଥ ଏବଂ ମହାତ୍ମାଗାନ୍ଧିଙ୍କୁ ବି ସେ ନିଜର ଗୁରୁ ବୋଲି ମନେ କରନ୍ତି । କୁଞ୍ଜବିହାରୀ ଦାଶଙ୍କ ଠାରୁ ଶିଖିଛନ୍ତି ଯେ କିଶୋର ଛାତ୍ରଟି କେବେ ଅପରିପକ୍ୱ, ଅଜ୍ଞାନ ହୋଇନପାରେ । ସେ ଚିର ସୃଷ୍ଟିଶୀଳ ଲୋକ ସମାଜର ଅଂଗ । ଅନ୍ୟାୟ ଓ ଅନୀତି ପଥରେ ଭ୍ରଷ୍ଟ ନହେବା ପାଇଁ ମହାତ୍ମାଗାନ୍ଧି ତାଙ୍କୁ ପଦେ ପଦେ ବାଟ ଦେଖାଇଛନ୍ତି, ପୁଣି ରବୀନ୍ଦ୍ରନାଥ ପାଠ ପଢ଼ାର କୌଣସି ନିର୍ଦ୍ଦିଷ୍ଟ ପ୍ରଣାଳି ଗିଳିବା ବଦଳରେ ନିଜେ ନିଜେ ପ୍ରଣାଳୀଟିଏ ତିଆରି କରିବାକୁ ପ୍ରେରଣା ଦେଇଛନ୍ତି । ଏତେ ସବୁ ମହାନ୍ ଶିକ୍ଷକଙ୍କୁ ମନ ପ୍ରାଣରେ ତୀବ୍ରରୂପେ ଅନୁଭବ କଲା ପରେ ବି କେବେ ଛାତ୍ର ଅବିବେକୀ, ଅମଣିଷ ହୋଇପାରେ ?

ହେମଚନ୍ଦ୍ର ଆଚାର୍ଯ୍ୟ ଓ ମଂଗଳୁ ଚରଣ ବିଶ୍ୱାଳ ଓଡ଼ିଆରେ ବି ଅନେକ ଲେଖିଛନ୍ତି । କାବ୍ୟ, କବିତା, ଗଳ୍ପ, ନାଟକ । କିନ୍ତୁ ସମ୍ବଲପୁରୀର ଲେଖକ ଭାବରେ ଉଭୟଙ୍କର ଯେଉଁ ସ୍ୱୀକୃତି, ପଶ୍ଚିମା ଓଡ଼ିଶ ବାହାରେ ବୋଧେ ଅନେକ ଲୋକ ତା'ର କଳନା କରିପାରିବେନି । ହେମଚନ୍ଦ୍ର ଆଚାର୍ଯ୍ୟଙ୍କର ସମ୍ବଲପୁରୀ ରାମାୟଣ, 'ରାମରାହା', ଲେଖକଙ୍କୁ କୋଶଳ ବାଲ୍ମିକୀ ରୂପେ ଘରେ ଘରେ ପରିଚିତ କରାଏ । ମଂଗୁଳୁ ଚରଣ ବିଶ୍ୱାଳଙ୍କର ଗପରେ ଆଧାରିତ ସମ୍ବଲପୁରୀ ଚଳଚ୍ଚିତ୍ର 'ଭୂଖା' ସାଂପ୍ରତିକ ସମୟ ଓ ପାରିପାର୍ଶ୍ୱିକ ପରିବେଶର ଏକ ଜୀବନ୍ତ କାହାଣୀ । ଏ ଭଳିଆ ଦୁଇଜଣ ସୃଜନଶୀଳ ଲେଖକ ସ୍ୱ ପ୍ରିୟ ଶିକ୍ଷକଙ୍କୁ ଏ ସଂକଳନରେ ମନେ ପକାଇଛନ୍ତି । ହେମଚନ୍ଦ୍ର ଆଚାର୍ଯ୍ୟଙ୍କର "ପ୍ରଥମ ଶ୍ରେଣୀ

ଆଞ୍ଚା" ଫୁଲଶର ପ୍ରଧାନ କେବଳ ଲେଖକଙ୍କର ନୁହଁନ୍ତି, ସ୍କୁଲ୍‌ର ସମଗ୍ର ଛାତ୍ର ସମାଜର ପ୍ରିୟତମ ଶିକ୍ଷକ। ସ୍କୁଲ୍ ନିରୀକ୍ଷକ ଶରତ ଚନ୍ଦ୍ର ମହାରଣା ଯେତେବେଳେ ଅନେକ ପ୍ରଶ୍ନ ଭିତରେ ପଚାରନ୍ତି, "କେଉଁ ଆଞ୍ଚା ତୁମକୁ ଭଲ ଲାଗନ୍ତି ?" ସମବେତ ସ୍ୱରରେ ପିଲାଙ୍କ ଆଡୁ ଉତ୍ତର ଆସେ, "ପ୍ରଥମ ଶ୍ରେଣୀ ଆଞ୍ଚା"। ପ୍ରିୟ ଶିକ୍ଷକଙ୍କର ନିର୍ବାଚନକୁ ନେଇ ପିଲାଏ ଦ୍ୱିଧାଗ୍ରସ୍ତ ନୁହଁନ୍ତି। କାରଣ 'ଆଞ୍ଚା' କାହାକୁ ଗାଳି ଦିଅନ୍ତି ନାହିଁ, କ୍ଲାସ୍‌ରେ ପଢ଼ା ବହିର ବିଷୟବସ୍ତୁ ଉପରେ ନାଟକ କରାନ୍ତି। ତାଙ୍କରି ଯୋଗୁଁ ନାଟ୍ୟକଳା ସ୍କୁଲ୍ ପରିସରକୁ ଟପି ଗାଁକୁ ପ୍ଲାବିତ କଲା। ତାଙ୍କର ଅନେକ 'ପିଲା' ଜୀବନର ଶେଷ କାଳ ପର୍ଯ୍ୟନ୍ତ ଅଭିନେତା, ନାଟ୍ୟକାର, ନିର୍ଦ୍ଦେଶକ ହୋଇ ସୁଖ୍ୟାତି ପାଇଲେ। ସବୁଠାରୁ ବଡ଼ କଥା ସ୍କୁଲ୍ ଓ ଗାଁ ଭିତରେ ଆଞ୍ଚା ଆବଦ୍ଧ ହୋଇ ରହି ନାହାନ୍ତି। ସ୍ୱାଧୀନତାର ଡାକରେ ସ୍କୁଲ୍, ପରିବାର ଛାଡ଼ି ଭାରତଛାଡ଼ ଆନ୍ଦୋଳନରେ ଝାସ ଦେଇଛନ୍ତି, ଜେଲ୍ ଯାଇଛନ୍ତି। ପ୍ରଥମ ଶ୍ରେଣୀ ପିଲାଙ୍କୁ ପାଠ ପଢ଼େଇବାରୁ ଆରମ୍ଭ କରି ସ୍ୱାଧୀନତା ପାଇଁ ଜେଲ୍ ଯିବା ପର୍ଯ୍ୟନ୍ତ ଯେତେବେଳେ ଯାହା ବିବେକ କହିଛି ତାକୁ ସେ ଶୁଣିଛନ୍ତି, ତଦନୁଯାୟୀ କାମ କରିଛନ୍ତି। ଶିକ୍ଷକତା, ନାଟକ କରିବା, ସ୍ୱାଧୀନତା ପାଇଁ ଲଢ଼ିବା ତାଙ୍କ ନଜରରେ ସମାଜ ଓ ଦେଶକାମ ପାଇଁ ପ୍ରତ୍ୟେକଟି ଗୋଟାଏ ଗୋଟାଏ ମାଧ୍ୟମ। ଏଭଳି ବିବେକୀ ମଣିଷ ଜଣେ ଯେ ଶିଶୁମନକୁ ନିଶ୍ଚୟ କିଣିନେବେ, ତହିଁରେ ଅସ୍ୱାଭାବିକତା କିଛି ନାହିଁ। ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ଆସନ୍ତି ଖଡି ତ୍ରିପାଠୀ। ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ର। ଦେଶପ୍ରେମ, ବିକଳ୍ପ ଶିକ୍ଷା ପ୍ରଣାଳୀ ପାଇଁ ଚିନ୍ତା, ମୌଳିକ ଶିକ୍ଷଣ ଶୈଳୀ ସବୁ ଯେମିତି କୁଟି ହୋଇ ତାଙ୍କ ଭିତରେ ରହିଛି। ସ୍କୁଲ୍‌ର ସେହି ଅନ୍ଧାରୁଆ ଶ୍ରେଣୀଗୃହରେ ବି ପ୍ରତ୍ୟହ ଛାତ୍ରର 'ବିଶ୍ୱକବି', 'ମହାତ୍ମାଗାନ୍ଧି' ଏବଂ 'ଗୋପବନ୍ଧୁ' ପ୍ରଭୃତିଙ୍କ ମୌଳିକ ଚିନ୍ତନ ସହ ଭେଟ ହୁଏ ଏବଂ ତା' ପାଇଁ ମାଧ୍ୟମ ହୁଅନ୍ତି ଖଡି ତ୍ରିପାଠୀ। ଲେଖକଙ୍କ ଜୀବନରେ ପୁଣି ଆସନ୍ତି ବରଗଡ଼ ଜର୍ଜ ହାଇସ୍କୁଲ୍‌ର ଶଶିଭୂଷଣ ମିଶ୍ର, ଶଶିମାଷ୍ଟ୍ରେ। ଆଞ୍ଚା ସ୍କୁଲ୍‌ର ପ୍ରାଚୀର ପତ୍ର 'ମଧୁଚକ୍ର'ର ହସ୍ତଶିଳ୍ପୀ, ସବୁ ସାମଗ୍ରୀ ସଂଗ୍ରହ କରି ନିଜ ହାତରେ ଲେଖନ୍ତି ତାକୁ; ଗଣିତ ଠାରୁ ଆରମ୍ଭ କରି ଚିତ୍ରାଙ୍କନ ଯାଏଁ ପଢ଼େଇ ପାରନ୍ତି; ସ୍କୁଲ୍ ହଷ୍ଟେଲର ସୁପରିଟେଣ୍ଡେଣ୍ଟ୍ ଭାବରେ ପିଲାଙ୍କ ରହଣିଠାରୁ ଆରମ୍ଭ କରି ପାଠ ପଢ଼ାଯାଏ ସବୁ କଥା ବୁଝନ୍ତି; ବୋଡ଼ିଂର ଛୋଟିଆ ଜାଗାରେ ବଗିଚା କରନ୍ତି, ପିଲାଙ୍କୁ ବଗିଚା

ଶିକ୍ଷା ଦିଅନ୍ତି । ନିଜେ ଗୀତ-କବିତା ଲେଖନ୍ତି, ପିଲାଙ୍କୁ ଲେଖିବା ପାଇଁ ଉତ୍ସାହ ବି ଦିଅନ୍ତି, ଏତେ କାମ ପାଇଁ ଆଜ୍ଞାଙ୍କୁ ସମୟ ମିଳେ କେମିତି, ପିଲା ମନରେ ଏଭଳି ପ୍ରଶ୍ନ ହେବା ସ୍ୱାଭାବିକ। ମାତ୍ର, ତା'ଠାରୁ ବି ସେ ବେଶି ଅଭିଭୂତ ଯେଉଁ ପାରିବାରିକ ପରିସ୍ଥିତି ଭିତରେ ରହି ଆଜ୍ଞା ସେସବୁ କାମ ସଂପାଦନ କରନ୍ତି । ବଡ଼ ପୁଅ ଏବଂ ଏକମାତ୍ର ଝିଅର ଆକସ୍ମିକ ମୃତ୍ୟୁ ଘଟି ସାରିଛି, ପତ୍ନୀ ବିକ୍ଷିପ୍ତ ମସ୍ତିଷ୍କ । ଅର୍ଥାତ୍ ଘରକାମ ବି ଆଜ୍ଞାଙ୍କୁ କରିବାକୁ ପଡ଼େ । ତା' ସତ୍ତ୍ୱେ ଦାୟିତ୍ୱ ପ୍ରତି ଅବହେଳା ନାହିଁ ।

ସେତେବେଳେ "ଶଶିଭୂଷଣ ମାଷ୍ଟ୍ରେ" କେବେ ଭାବି ପାରି ନଥିବେ ଯେ ଅଷ୍ଟମ କି ନବମ ଶ୍ରେଣୀର କିଶୋର ଛାତ୍ରଟିଏ ତାଙ୍କର ପ୍ରତ୍ୟେକ କାମକୁ ଏତେ ତନ୍ନ ତନ୍ନ କରି ନିରୀକ୍ଷଣ କରୁଛି; ପାଠ ବହିଟି ଉପରେ ତା'ର ଆଖି ସ୍ଥିର ହୋଇ ରହିଯାଇନି। ଶିକ୍ଷକଙ୍କର ଅଲକ୍ଷ୍ୟରେ ସେ ମାଷ୍ଟ୍ରେଙ୍କଠାରୁ ଦୁଃଖ ଭିତରେ ଜୀଇଁବାର କଳା ଶିକ୍ଷା କରୁଛି ଏବଂ ତା'ପାଇଁ ସ୍ୱୟଂ ଶିକ୍ଷକକ ପାଠ ବହି ସାଜିଛନ୍ତି । ପାରିବାରିକ ବିପତ୍ତି ତାଙ୍କ ଜିଇଁବା ପାଇଁ, ନିଜ କର୍ତ୍ତବ୍ୟ କରିବା ପାଇଁ ବାଧକ ହୋଇ ପାରେନା ! କୌଣସି ବ୍ୟାଖ୍ୟାନ ବା ପ୍ରବଚନ ମାଧ୍ୟମରେ ନୁହେଁ, ବରଂ ନିଜ ଆଚରଣ ଦ୍ୱାରା ଶିକ୍ଷକ ଏହି ଅବବୋଧ ଯଦି ଛାତ୍ର ମନରେ ଦେଇ ପାରିଲେ, ସେହି ସମାଜକୁ ନିରାଶା କେବେ ଘୋଟି ପାରିବନି। ନିଜ ଅବର୍ତ୍ତମାନରେ ସୁଦ୍ଧା ଶିକ୍ଷକ ଛାତ୍ରର କାନେ କାନେ କହନ୍ତି, "ମୁଁ ତୋ ଭିତରେ ଅଛି, ମୋର ସାହାଯ୍ୟ ତୋ ପାଇଁ ସର୍ବଦା ଉନ୍ମୁକ୍ତ ରହିଛି ।" ଆଜି ଅଶୀତିପର ବୟସରେ ବି ଲେଖକ ସେହି ଶାନ୍ତ ସରଳ ଗୁରୁବାଣୀ ଶୁଣନ୍ତି, ଅନ୍ୟକୁ ଶୁଣିବା ପାଇଁ କୁହନ୍ତି । ନିରାଶାକୁ ଏଡ଼ିଯିବା ପାଇଁ ସେହି ଗୁରୁବାଣୀ 'ମନ୍ତ୍ର' ପରି କାମ୍ କରେ !

କ୍ଷତ୍ରୀୟ ମେହେର ଜଣେ ମେଧାବୀ ଛାତ୍ର। ଭୁକ୍ତା ହାଇସ୍କୁଲ୍‌ରେ ପଢ଼ନ୍ତି। ଗରିବ ପରିବାର; ବାପାଙ୍କର ପୁଅକୁ ପଢ଼େଇବା ପାଇଁ ସଂବଳ ନାହିଁ । ତା'ହେଲେ ପୁଅର କ'ଣ ପଢ଼ା ବନ୍ଦ ହେବ ? ଏହି ସଂଧିକ୍ଷଣରେ ସ୍ଥାନୀୟ ସମାଜ ଅଣ୍ଟାଭିଡ଼ି ଉତ୍ତର ଦିଏ- 'ନା'। କେହି କେହି ଆସି ମୁଷ୍ଟିଭିକ୍ଷା ଦେଇ ସାହାଯ୍ୟ କରନ୍ତି, ସାଙ୍ଗ ଜଣେ କହେ, ମୋ ଲଣ୍ଠନ ଆଲୁଅରେ ଦୁହେଁ ବସି ପଢ଼ିବା । ତୋତେ କିରୋସିନି ପାଇଁ ଖର୍ଚ୍ଚ କରିବାକୁ ପଡ଼ିବ ନାହିଁ। ଛାତ୍ରାବାସକୁ ଭୁଜା ବିକିବାକୁ ଆସେ ନିରକ୍ଷର ଗୋକୁଳ ପଶାୟତ। ସେ ବି ଚାହେଁ ପିଲାଟି ଆଗକୁ ପଢୁ। ତା' ଲାଗି

ନିଜ ସାଧ୍ୟମତେ କିଛି ସାହାଯ୍ୟ କରିବ ସେ । ଦୁଇ ଓଳି ପିଲାଟିକୁ ସେ ଜଳଖିଆ ଯୋଗାଇବ । ପ୍ରତିବଦଳରେ ପିଲାଟି ତା' ପାଇଁ ହିସାବ ରକ୍ଷକର କାମ କରିବ । ଦୀନବନ୍ଧୁ ସାର୍ ବିନା ପାଉଣାରେ ଟ୍ୟୁସନ୍ ପଢ଼ାନ୍ତି ତାକୁ । ବେଳେବେଳେ ଡରମାଡ଼େ, ଏ ଯେଉଁ ସାମାଜିକ ପରିପୂରକତାର ସ୍ୱାଭାବିକ ଦୃଶ୍ୟ, ଭବିଷ୍ୟତରେ ସେ ଖାଲି କବିର କଳ୍ପନା ହୋଇ ରହିଯିବ ନାହିଁ ତ ? ପାଞ୍ଚ ଜଣଙ୍କ ପାଇଁ ଯାହା ଲକଡ଼ି, ଜଣକ ପାଇଁ ବୋଝ ! ସେହି ନ୍ୟାୟରେ ସାଙ୍ଗସାଥି, ପାଖପଡ଼ୋଶୀ ସମସ୍ତଙ୍କ ଠାରୁ ସାହାଯ୍ୟ ନେଇ କ୍ଷତ୍ରୀୟ ମେହେରେ ପଢ଼ିଛନ୍ତି । ଶିକ୍ଷିତ ହୋଇ ସେହି ଭୁକ୍ତା ହାଇସ୍କୁଲ୍‌ର ଶିକ୍ଷକ ହୋଇଛନ୍ତି । ଅଙ୍କ ପଢ଼ାନ୍ତି । କବି ମଙ୍ଗୁଳୁ ଚରଣ ବିଶ୍ୱାଳଙ୍କର ସେ "ବିରଳ ବିଷ୍ଣୁଶର୍ମା"। ଗଣିତରେ 'ୟୁକ୍ଲିଡ୍' ପରି ତାଙ୍କ ପାରଦର୍ଶିତା । ମାତ୍ର ତା'ଠାରୁ ବଳି ତାଙ୍କର ଯେଉଁ ଗୁଣଟି ଲେଖକଙ୍କୁ ଅଭିଭୂତ କରିଛି ସେ ହେଲା ସାମାଜିକ ଧାର ପରିଶୋଧ କରିବାର ଶୈଳୀ । ସମାଜଠାରୁ ମିଳିଥିବା ସାହାଯ୍ୟ ସହଯୋଗକୁ ଅଣାପାହୁଲାରେ ପରିଶୋଧ କରିବାକୁ ସେ ବଦ୍ଧ ପରିକର । ତେଣୁ ନିଜ ଆୟରୁ ହଜାର ହଜାର ଟଙ୍କା ଗରିବ ମେଧାବୀ ଛାତ୍ରମାନଙ୍କ ହାତରେ ବାଣ୍ଟିଛନ୍ତି । ପାଠ ନ ହେଲା ନାହିଁ, ପିଲାଙ୍କୁ ମଣିଷ କରିବା ତାଙ୍କର ଧର୍ମ ! ପୁଣି ପିଲାଙ୍କୁ ମଣିଷ କରିବା ତ ପାଠ ! କେବଳ କ୍ଷତ୍ରୀୟ ମେହେର ନୁହଁନ୍ତି, ଯୁଧିଷ୍ଠିର ପ୍ରଧାନ, କୁଂଜବିହାରୀ ପଣ୍ଡା, ଡଃ ମାୟାଧର ମାନସିଂହ ମଧ୍ୟ ଲେଖକଙ୍କ ନଜରରେ ଜଣେ ଜଣେ ବିରଳ ବିଷ୍ଣୁଶର୍ମା । ତାଙ୍କର ଆଶା ସେହି ବିରଳ ବିଷ୍ଣୁଶର୍ମାମାନେ ଜନ୍ମ ଜନ୍ମାନ୍ତର ପାଇଁ ତାଙ୍କ ସ୍ମୃତିରେ ରହିଥାନ୍ତୁ, ମଣିଷ ଗଢ଼ିବା ପାଇଁ ରାସ୍ତା ଦେଖାଉଥାନ୍ତୁ !

କବି ବ୍ରଜନାଥ ରଥଙ୍କୁ ତାଙ୍କ ପ୍ରିୟ ଶିକ୍ଷକ ନିର୍ବାଚନ ନିମିତ୍ତ ବେଶି ସମୟ ଘାଣ୍ଟି ହେବାକୁ ପଡ଼ିନି । ଅବାଧରେ ଓ ଅକ୍ଳେଶରେ ଯାହାଙ୍କ ନାମ ସେ ଉଚ୍ଚାରଣ କରିବେ, ସେ ହେଲେ ତାଙ୍କ ପିତା ବିଶ୍ୱନାଥ ରଥ । କେବଳ କବିଙ୍କର ନୁହନ୍ତି, ପ୍ରତିଭା ରାୟଙ୍କର ପିତା-ଶିକ୍ଷକ ପରଶୁରାମ ଦାସଙ୍କ ପରି "ହଜାର ହଜାର ଛାତ୍ରଙ୍କର ଆଦର୍ଶ ଶିକ୍ଷକ ଭାବରେ ସେ ଶ୍ରଦ୍ଧା ଓ ସମ୍ମାନର ପାତ୍ର ।" ଶିକ୍ଷକ ଓ ବାପା ଯଦି ଜଣେ ମଣିଷ ତେବେ ତାହା ଉଭୟ ଶିକ୍ଷକ ଓ ଛାତ୍ର (ପିତା ଓ ପୁତ୍ର) ପାଇଁ ଏକ ଘୋର ସଂଧିକ୍ଷଣ । ପୁତ୍ର ବା କନ୍ୟା ଛାତ୍ରଟି ଯେତେ ପାଖରୁ ଅହରହ ପିତା-ଶିକ୍ଷକଙ୍କୁ ଦେଖୁଥାଏ, ସେତେ ପାଖରୁ ଆଉ କେହି ତାଙ୍କୁ ଦେଖି-ପରଖି ପାରନ୍ତି ନାହିଁ । ସନ୍ତାନ ପ୍ରତି କୋହଳ ହେଲେ ବି ରକ୍ଷା ନାହିଁ; ସନ୍ତାନ-ଛାତ୍ର

ପିତାଙ୍କ ପ୍ରତି କୃତଜ୍ଞ ରହେନା, ବରଂ ପୁତ୍ର ନଜରରେ ତାଙ୍କର ସମ୍ମାନ ହାନି ହୁଏ। ଶିକ୍ଷକ ଭାବରେ, ପିତା ଭାବରେ ବି ପିତାଙ୍କ ଅଜାଣତରେ ନିକିତିଧରି କିଶୋର ଛାତ୍ରଟି ନିୟମିତ ମାପି ଚାଲିଥାଏ ପିତାଙ୍କ ଆଦର୍ଶ ପଣିଆଁକୁ। ବ୍ରଜନାଥ ରଥଙ୍କ ଅନୁଭୂତିରୁ ଏହା ସ୍ପଷ୍ଟ ଦେଖିବାକୁ ମିଳେ।

ପିତାଙ୍କୁ ଶିକ୍ଷକରୂପେ ପାଇଥିବା ଆଉ ଜଣେ ଲେଖକ ହେଲେ ରବୀନ୍ଦ୍ରନାଥ ପଣ୍ଡା। ଦେଶର ପ୍ରଶାସନିକ ସେବାରେ ବଡ଼ ଅଧିକାରୀ ଭାବରେ ଚାକିରି କରି ଅବସର ନେଇଛନ୍ତି ସେ। ମାତ୍ର ବେଶୀ ଜଣାଶୁଣା ଜଣେ 'ତୀକ୍ଷ୍ଣ' ବୁଦ୍ଧିଜୀବୀ ରୂପରେ। ସବୁ କଥାକୁ ରୋକଠୋକ କହିବା ତାଙ୍କର ପୁରୁଣା ଅଭ୍ୟାସ। ତାଙ୍କ ବର୍ଣ୍ଣନାରେ ଯେତେ ଆଦର୍ଶ କଥା ନାହିଁ, ତା'ଠାରୁ ଢେର୍ ଅଧିକ ମାତ୍ରରେ ରହିଛି ଆଦର୍ଶ-ଶୂନ୍ୟ ଶିକ୍ଷକଙ୍କର କଥା। ଭଲ କିଛି ପାଇନାହାନ୍ତି ବୋଲି ବାଧ୍ୟ ହୋଇ ମାଷ୍ଟର ହୋଇଛନ୍ତି ସେମାନେ ! ସେଥିରୁ ତାଙ୍କ ବାପା, ସ୍କୁଲ୍ ହେଡ୍‌ମାଷ୍ଟର ବି ବାଦ ପଡ଼ିନାହାନ୍ତି। ଲେଖକଙ୍କ ଭାଷାରେ, ବାପା ପାଠପଢ଼ା ଜାଣିଥିଲେ ଭଲ। ହେଲେ "ଜମାରୁ ଭଲ ମଣିଷ ନଥିଲେ; କୋଉ ବାଟରେ ରୋଜଗାର ବେଶୀ ହେବ, ସେଇ ଦିଗକୁ ଥିଲା ନଜର, ଯେପରି ପାଠ୍ୟପୁସ୍ତକ ବିକିବା, ଟିଉସନ୍ କରିବା। ଇସକୁଲକୁ ଯେଉଁ ଗରିବ ପିଲା ଆସୁଥିଲେ, ସେମାନଙ୍କ ପ୍ରତି ତାଙ୍କ ନିଘା କମ୍, ସାମାନ୍ୟ ଦୋଷ ଦେଖିଲେ ମାରଧର କରନ୍ତି।" ଯିଏ ନିଜ ପିତାଙ୍କର ଏତେ କଠୋର ସମାଲୋଚନା କରିପାରନ୍ତି, ମାଷ୍ଟରଙ୍କୁ ବା ସେ ଛାଡ଼ିବେ କାହିଁକି ? ସ୍କୁଲ୍‌ରେ ସେ ପାଠ ପଢ଼ିଛନ୍ତି, ସବୁଠି ସେହି ଏକା ଦୁରବସ୍ଥା ! ଲେଖକ "ଆଦର୍ଶ-ଫାଦର୍ଶ" କିଛି ବୁଝନ୍ତିନି; ଯେଉଁଦିନ ଦେଖିଲେ ଯେ ଆଖଣ୍ଡଳମଣୀଙ୍କ ନାଁରେ ଶପଥ କଲାପରେ ଶପଥ ଭାଙ୍ଗିଥିବା ସହପାଠୀର କିଛି ଅମଂଗଳ ହୋଇନି, "ଈଶ୍ୱର ବିଶ୍ୱାସ" ତାଙ୍କର "ଧୂଆଁ ହୋଇଗଲା"। ରବୀନ୍ଦ୍ରପ୍ରସାଦ ପଣ୍ଡାଙ୍କ ପରି ଜଣେ ସ୍ପଷ୍ଟବାଦୀ, ଅପ୍ରିୟ ସତ କହିଲାବାଲା ଲେଖକଙ୍କର ଅନୁଭୂତି ଲିପିବଦ୍ଧ ହୋଇନଥିଲେ ନିଶ୍ଚୟ ଏହି ସଂକଳନଟି ଏକପାଖିଆ ହୋଇଯାଇଥାନ୍ତା, ଭାରସାମ୍ୟ ହରାଇଥାନ୍ତା, ଏଥିରେ ସଂଦେହ ନାହିଁ। ଦ୍ୱିତୀୟତଃ, ସମାଜରେ ଆଦର୍ଶଶୂନ୍ୟ ଶିକ୍ଷକର ବହୁଳତା ରହିଛି ବୋଲି ସମସ୍ତେ ଆଜି ଆଦର୍ଶ ଶିକ୍ଷକଟିକୁ ଅନ୍ତତଃ ନିଜ ସ୍ମୃତିରୁ ଖୋଜି ବାହାର କରିବାକୁ ପ୍ରୟାସ କରୁଛନ୍ତି, ନିଜ ଅନୁଭୂତି କଥା କହି ସମାଜକୁ ଆଦର୍ଶ ଦିଗରେ ଟାଣିବାକୁ ଚେଷ୍ଟା କରୁଛନ୍ତି। ଏଭଳି ସ୍ଥିତିରେ ବାସ୍ତବିକତାକୁ ଅର୍ଥାତ୍ ଆଦର୍ଶ ଶୂନ୍ୟ ଶିକ୍ଷକର ବହୁଳତାକୁ

ଦେଖାଇ ରବିବାବୁ ଯେ ବିଲେଇ ବେକରେ ଘଣ୍ଟି ବାନ୍ଧିଛନ୍ତି, ଏ କଥା ସହଜରେ ଅନୁମାନ କରିହୁଏ। ଅନ୍ୟଥା ସେ ବି ଚାନ୍ଦବାଲି ସ୍କୁଲ୍‌ର ବିଚକ୍ଷଣ ଶିକ୍ଷକ ରବିନାରାୟଣ କେନା, ରେଭେନ୍‌ସା କଲେଜର ଅଧ୍ୟାପକ ପ୍ରଫୁଲ୍ଲ ପତିଙ୍କୁ ଭୁଲି ନାହାନ୍ତି, ତାଙ୍କ ଆଦର୍ଶ ପଣିଆଁକୁ ଅସ୍ୱୀକାର କରି ନାହାନ୍ତି। ଅନ୍ୟଅର୍ଥରେ, ଶୈକ୍ଷିକ ପରିବେଶରେ ଥିବା ଆଦର୍ଶ ଅନାଦର୍ଶନର ଦ୍ୱୈତ ବାସ୍ତବିକତା ଏବଂ ଦୁହିଁଙ୍କ ମଧ୍ୟରେ ରହିଥିବା ସାମାଜିକ ଖିଅକୁ ବିଶ୍ଳେଷଣ କରିବା ପାଇଁ ମାର୍କ୍ସବାଦୀ ଚିନ୍ତକ ରବୀନ୍ଦ୍ର ପ୍ରସାଦ ପଣ୍ଡାଙ୍କ ଅନୁଭୂତି ନିଶ୍ଚୟ ସହାୟକ ହେବ- ଏଥିରେ ଦ୍ୱିରୁକ୍ତି ନାହିଁ।

ଛାତ୍ରର ଜୀବନରେ ନୂଆ ମୋଡ଼ ଆଣିଥିବା ସେହି ଆଦର୍ଶ ଶିକ୍ଷକର ଶିକ୍ଷାଗତ ଯୋଗ୍ୟତା କ'ଣ ବହୁତ ବେଶୀ ? ତାଲିମ୍ କେନ୍ଦ୍ରର ଡିଗ୍ରୀ, ଡିପ୍ଲୋମା ପାଇବାରେ କ'ଣ ତାଙ୍କୁ ବହୁତ ସମୟ ଦେବାକୁ ପଡ଼ିଛି ? ମାଷ୍ଟ୍ରେ ଆଜ୍ଞାଙ୍କ ସହ ହରିହର ତ୍ରିପାଠୀଙ୍କ ଛାତ୍ର ବେଳର ଅନୁଭୂତିକୁ ଅନୁଧ୍ୟାନ କଲେ ଲାଗିବ ଏ ପ୍ରଶ୍ନ ସବୁ ସତେ କେତେ ଅମୂଳକ ! 'ଆଜ୍ଞା' ବୋଧେ ସପ୍ତମ ଶ୍ରେଣୀ ଯାଏଁ ବି ପାଠ ପଢ଼ିନଥିଲେ। ଚାକିରିଟିକୁ 'ନିୟମିତ' ଶ୍ରେଣୀଭୁକ୍ତ କରିବା ସକାଶେ ଶିକ୍ଷକତା କରିବାର ଅନେକବର୍ଷ ପରେ କର୍ତ୍ତୃପକ୍ଷଙ୍କ ପରାମର୍ଶରେ ତାଙ୍କୁ 'ଇଟି' ତାଲିମ୍ ନେବାକୁ ପଡ଼ିଲା। ଅନ୍ୟଥା ସରକାରୀ ରେଜିଷ୍ଟରରେ ଶିକ୍ଷକ ପଦବାଚ୍ୟ ହେବେନି। ସରକାରୀ ଭାଷାରେ ଏଭଳିଆ ଜଣେ "ଅର୍ଦ୍ଧ-ଶିକ୍ଷିତ" ଏବଂ "ଅଣ-ତାଲିମ୍‌ପ୍ରାପ୍ତ" "ମାଷ୍ଟ୍ରେ ଆଜ୍ଞା"ଙ୍କ ଶିକ୍ଷଣ ଶୈଳୀରେ କ'ଣ କୁହୁକ ଥିଲା ଯେ ଶିଶୁ ବୟସରେ ଲେଖକ ତାଙ୍କ ଆଡ଼କୁ ଯେଉଁ ଢଳିଥିଲେ, ଆଜି ପରିଣତ ବୟସରେ, ଦେଶରେ ସ୍କୁଲ୍‌ଶିକ୍ଷାର 'ସର୍ବୋତ୍ତମ' ଅନୁସଂଧାନ ଓ ତାଲିମ୍ କେନ୍ଦ୍ରରେ (NCERTରେ) ତାଲିମ୍‌ଦାତା ଭାବରେ ଦୀର୍ଘ ବର୍ଷ ଧରି ଶିକ୍ଷଣ କାର୍ଯ୍ୟ ଓ ଗବେଷଣା କଲା ପରେ ବି ତହିଁରୁ ଉଭୁରି ପାରିନାହାନ୍ତି। ଲେଖକଙ୍କ ସ୍ମୃତିରେ ସାମିଲ୍ ହେଲେ ମନେ ହେବ, ଭଲ ପାଠ ପଢ଼ା ଲାଗି ଶିକ୍ଷକର କେବଳ ମନ ଥିବା କଥା, ନିଷ୍ଠା ରହିବା ଆବଶ୍ୟକ। ତେଣିକି କୌଣସି ପାଠ ଶିଶୁ ଛାତ୍ର ପାଇଁ ଅବୁଝା ରହିବନି। ମଣିଷ ପଣିଆଁ, ବିବେକଶୀଳତା ପ୍ରଭୃତି ମାନବୀୟ ମୂଲ୍ୟବୋଧ ଅପହଂଚ ହେବ ନାହିଁ। ପକ୍କା ସ୍କୁଲ୍ ଘର, ମହଂଗା ପାଠ୍ୟ ସହାୟକ ସାମଗ୍ରୀ, ବାହାରି ଚାକଚକ୍ୟର 'ଅଭାବ' ସତ୍ତ୍ୱେ ପିଲା ମନରେ କୌଣସି ଅଭାବବୋଧ ସୃଷ୍ଟି ନକରିବା ହେଲା ଶିକ୍ଷକର ପ୍ରମୁଖ ଦାୟିତ୍ୱ। ମାଷ୍ଟ୍ରେ ଆଜ୍ଞା କାଛରେ ଚିତ୍ର

ଆଙ୍କିଥିଲେ, ଚଟାଣରେ ସୁନ୍ଦର ଅକ୍ଷରରେ ନୀତିବାଣୀ ଲେଖିଥିଲେ; ସ୍ଲେଟ ଅଭାବରେ ଛାତ୍ର ଗୋବର ଲିପା ଚଟାଣରେ ଲେଖନ୍ତି, ଅଙ୍କ କଷନ୍ତି ! ପିଲାଙ୍କୁ 'କଳଚକ୍ର' ବୁଝେଇବା ପାଇଁ ଆଜ୍ଞା ବହି କିମ୍ବା 'ଲେକଚ଼ର'ର ସାହାଯ୍ୟ ନେଇ ନାହାନ୍ତି । ଭାଲେରୀ ଓ ସାଲେରୀ ପାହାଡ଼ରେ ଧକ୍କା ଖାଇବାକୁ ଯାଉଥିବା ମେଘକୁ ଦେଖାଇଛନ୍ତି, ବର୍ଷା ଯୋଗୁଁ ଚିଲିକା ହ୍ରଦରେ ବଢୁଥିବା ଜଳସ୍ତରକୁ ଦେଖାଇଛନ୍ତି । ଅନୁଭୂତି ଶୁଣିଲେ ଲାଗୁଛି, ଆଜ୍ଞା ପାଠ ପଢ଼ାଇବେ ବୋଲି ଯେମିତି ପ୍ରକୃତି ଲାଗିପଡ଼ି ସ୍କୁଲ୍ ଆଖପାଖରେ ଚିଲିକା ହ୍ରଦ ତଥା ସାଲେରୀ ଓ ଭାଲେରୀ ପାହାଡ଼କୁ ଖଞ୍ଜି ଦେଇଛି ! ପ୍ରକୃତିରୁ ପାଠ୍ୟ ସାମଗ୍ରୀ ରୂପେ ନେବାର ସାମର୍ଥ୍ୟ ରଖିଥିବା "ମାଷ୍ଟ୍ର ଆଜ୍ଞାଙ୍କ" ଆଗରେ ତାଲିମ୍, ଡିଗ୍ରୀ ଡିପ୍ଲୋମା ଯେମିତି ନିରର୍ଥକ, ମହଙ୍ଗା ପାଠ୍ୟସାମଗ୍ରୀର ବି ସେମିତି କିଛି ବିଶେଷ ଆବଶ୍ୟକତା ନାହିଁ । ସ୍କୁଲ୍ ନାଁରେ ଝାଟିମାଟି କୁଡ଼ିଆଟିଏ; ସେଠି ଶିକ୍ଷକ ସେ ଜଣେ ଏକା; ପାଠ୍ୟ ସାମଗ୍ରୀ ବୋଇଲେ କାଛ ଓ ଗୋବର ଲିପା ଚଟାଣ ! ତା' ସତ୍ତ୍ୱେ ସେ ପିଲା ମନରେ ଅଭାବବୋଧ ସୃଷ୍ଟି ହେବାକୁ କେବେ ଦେଇନାହାନ୍ତି ।

ଭଲ ମଣିଷ ଜଣେ କିଛି ସମାଜ ପାଇଁ କରିବାକୁ ଚାହେଁ । ସେତେବେଳେ ଶିକ୍ଷକତା ତା' ଆଗରେ ଏକ ମାଧ୍ୟମ ମାତ୍ର ହୁଏ । ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରିୟ, "ପ୍ରଥମ ଶ୍ରେଣୀ ଆଜ୍ଞା", ଫୁଲଣର ପ୍ରଧାନ ଶିକ୍ଷକତା ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଝାସ ଦିଅନ୍ତି, ତ ପୁଣି ପ୍ରତିଭା ରାୟଙ୍କ ଆଦର୍ଶ ଶିକ୍ଷକ "ନରୋତ୍ତମ ସାର୍" ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇ ସାରି ଆସି ସ୍କୁଲ୍‌ରେ ଶିକ୍ଷକତା କରନ୍ତି । ମଣିଷ ଗଢ଼ିବା କାରିଗର ସେ । ଯେଉଁଠି କାମ କରିବେ, ସେ ସ୍କୁଲ୍ ହେଉ ବା ଅନ୍ୟ କେଉଁ ଜାଗା, ତାକୁ ମଣିଷ ତିଆରି କାରଖାନାରେ ପରିଣତ କରିବାକୁ ପ୍ରୟାସ କରିବେ । ଏମିତି ମଣିଷମାନେ ଯେଉଁଠି ରହିଲେ ବି ସେମାନେ ଶିକ୍ଷକ-ପ୍ରାଣ । ଶିକ୍ଷକତା ତାଙ୍କ ଅନ୍ତଃମନକୁ ପ୍ଲାବିତ କରି ସାରିଛି । ଶିକ୍ଷକତା ଓ ସମାଜ କର୍ମ ଭିତରେ ସେମାନଙ୍କୁ କୌଣସି ପାର୍ଥକ୍ୟ ଦେଖାଯାଏନା ।

ଏଭଳିଆ ଶିକ୍ଷକତା ରସରେ ଓତଃପ୍ରୋତଃ ଭାବରେ ଭିଜିଯାଇଥିବା ଆଉ ଜଣେ ଶିକ୍ଷକ ହେଲେ ଦାଶରଥୀ ନାୟକ, ପ୍ରଫେସର ନିରଂଜନ ବାରିକଙ୍କର ଅନୁଭୂତିର ଶିକ୍ଷକ । "ଛ ମାଣ ଆଠ ଗୁଣ୍ଠ"ର ଜମି ସହିତ "ଭଗିଆ"ର ଯେଉଁ ସଂବଂଧ, ଶିକ୍ଷକତା ସହିତ 'ସାରଂକର' ବି ସେହି ସଂପର୍କ । ଶିକ୍ଷକତାରୁ କାଢ଼ି ନେଇ ତାଙ୍କର ବ୍ୟକ୍ତିତ୍ୱକୁ ଚିତ୍ରଣ କରାଯାଇ ପାରେନା । ସାହିତ୍ୟକୁ ଗଣିତ ପରି

ତର୍କ ସଂଗତ, ଯୁକ୍ତିନିଷ୍ଠ କରି ଅଭିବ୍ୟକ୍ତ କରିବାର କଳା ସେ ବତାନ୍ତି । ଅନ୍ୟ ପକ୍ଷରେ ଗଣିତରେ ବି ସେ ଭାଷାଗତ ଅଶୁଦ୍ଧିକୁ ସହ୍ୟ କରିପାରିବେ ନାହିଁ। ସାହିତ୍ୟରେ ଗଣିତ ଏବଂ ଗଣିତରେ ସାହିତ୍ୟକୁ ସମନ୍ୱିତ କରିବାର ଅଭିନବ ଶିକ୍ଷଣ କଳା ତାଙ୍କୁ ଜଣାଥିଲା। ତାଙ୍କ ଅଭିନବ ଶିକ୍ଷକତାର ଆଉ ଏକ ଉଦାହରଣ ହେଲା ତାଙ୍କ ପ୍ରଶ୍ନ ପଚାରିବା ଢଙ୍ଗ। ତାଙ୍କ ପ୍ରଶ୍ନର ଉତ୍ତର ତାଙ୍କୁ ବି ଜଣା ନଥାଏ ବେଳେବେଳେ। ପାଠ ବହିରେ ନଥିବା ପ୍ରଶ୍ନ, ସାରଙ୍କୁ ଜଣା ନଥିବା ଉତ୍ତର ! କି ଅଜବ ସ୍ଥିତି ! ନିଜ ଅଜ୍ଞତାକୁ ଅସ୍ୱୀକାର ବି କରିବେ ନାହିଁ। କହିବେ, "ମୁଁ ତ (ଉତ୍ତର) ଜାଣିନି ଠିକ୍ ଭାବରେ; କିନ୍ତୁ ତୁ କହିଲେ ବା ଲେଖିଲେ ମୁଁ କହିଦେବି, ଠିକ୍ ହେଲା ନା ନାହିଁ।" ଛାତ୍ର ସାଙ୍ଗରେ ପାଦ ମିଳାନ୍ତି, ଆଜୀବନ ଛାତ୍ର ହୋଇ ଶିଖିବାର ପ୍ରବୃତ୍ତି ଥିଲା ତାଙ୍କ ଠାରେ।

ଅପାଦ ମସ୍ତକ ଶିକ୍ଷକତାରେ ବୁଡ଼ି ରହିଥିବା ଏମିତି ଜଣେ ଶିକ୍ଷକ ପୁଣି ଦିନେ କର୍ତ୍ତୃପକ୍ଷଙ୍କ ରୋଷର ଶିକାର ହେଲେ, ଶିକ୍ଷକତା ଛାଡ଼ିବାକୁ ବାଧ୍ୟ ହେଲେ। ଏବେ ଭରଣ ପୋଷଣ ପାଇଁ ଠିକାଦାରୀ ହେଲା ତାଙ୍କ ବୃତ୍ତି। ଠିକାଦାରୀରେ ରହି ମଧ୍ୟ ଅହରହ ସେ ଶିକ୍ଷକତାକୁ ଝୁରୁଥିଲେ। ମଝିରେ ମଝିରେ ଅତୀତର ଛାତ୍ର ଲେଖକଙ୍କ (ନିରଂଜନ ବାରିକ) ପାଖକୁ ଆସନ୍ତି। ପ୍ରଫେସର ବାରିକ ସେତେବେଳେ ବିଶ୍ୱବିଦ୍ୟାଳୟର ଅଧ୍ୟାପକ। ଚାକିରିର ଝଡ଼ଝଞ୍ଜାରେ ବ୍ୟତିବ୍ୟସ୍ତ ନ ହୋଇ ଶିକ୍ଷକତାକୁ ଉପଭୋଗ କରିବାକୁ ପରାମର୍ଶ ଦିଅନ୍ତି। ପାଖରୁ ଶିକ୍ଷକତା ପରି ମହାସଂପତ୍ତିଟି ହାତଛଡ଼ା ହେବା ପରେ ଭାବନ୍ତି ବୋଧେ ପ୍ରିୟ ଶିଷ୍ୟ ହାତରେ ଅନ୍ତତଃ ତାହା ଅତୁଟ ଥାଉ। ଏମିତି ଜଣେ 'ଠିକାଦାର'କୁ ପୁଣି ଦିନେ 'କର୍ତ୍ତା' ଇଂଜିନିଅର ନିଜ ଅବାଧ୍ୟ ସନ୍ତାନର ପାଠପଢ଼ା ଦାୟିତ୍ୱ ଦେଲେ। ଦୁଇ ଚାରି ଥର ପରୀକ୍ଷାରେ ଫେଲ୍ ହୋଇସାରିଥିବା ଇଂଜିନିଅର ସନ୍ତାନ ସାରଙ୍କ ଚେଷ୍ଟାରେ ଯେଉଁଦିନ ପାସ୍ କଲା, ତାଙ୍କ ଖୁସି କହିଲେ ନ ସରେ। ଠିକାଦାରୀ କଲା ପରେ ବି ଶିକ୍ଷକ-ପ୍ରାଣ ତାଙ୍କ ମରିନାହିଁ। ଏହା ଇଂଜିନିୟର 'କର୍ତ୍ତା' ମଧ୍ୟ ସ୍ୱୀକାର କରିଛନ୍ତି। ତୁଚ୍ଛ ଠିକାଦାରକୁ ଶିକ୍ଷକର ସମ୍ମାନ ଦେବାକୁ ବାଧ୍ୟ ହୋଇଛନ୍ତି। ଜଣେ 'ଠିକାଦାର' ପାଇଁ କ'ଣ ଏହା କମ୍ ବଡ଼ କଥା ? ଦିନେ ପୁଣି ସାରଙ୍କ "ହାର୍ଟ ଏଟାକ୍" ହେଲା। ତାଙ୍କୁ ଲାଗିଲା, ମୃତ୍ୟୁ ଆଉ ବେଶୀ ଦୂର ନୁହେଁ ! ତା'ପାଇଁ ତାଙ୍କର ଦୁଃଖ ନାହିଁ; ଚିନ୍ତା- କ'ଣ ତାଙ୍କ ମଲା ପରେ କେହି ଜଣେ କହିବାକୁ ଆଗଭର ହେବ, ଦିନେ ସେ ଶିକ୍ଷକ ଥିଲେ?

ଶିକ୍ଷକଙ୍କର ପରିଚ୍ଛିତିଟିକକୁ ଏକ ମହାର୍ଘ୍ୟ ଉପଲବ୍ଧି ବୋଲି ମନେ କରିଥିବା ଦାଶରଥି ସାର୍‌ଙ୍କ ମନୋବ୍ୟଥାକୁ ପ୍ରଫେସର ନିରଂଜନ ବାରିକ ଯେଉଁ ପ୍ରାଣମୟ ଭାଷା ଓ ଭାବ ଦେଇ ଅଭିବ୍ୟକ୍ତ କରିଛନ୍ତି ଶୁଣିଲେ ଲାଗିବ କେଉଁ ନାଟକର ମନଗଢ଼ା କାହାଣୀ ସେ ! ବାସ୍ତବତା ଯେ କାହାଣୀଠାରୁ ବେଶୀ ନାଟକୀୟ ତାହା ସ୍ପଷ୍ଟଭାବେ ଅନୁମାନ କରିହେବ। ଲେଖିଲାବେଳେ ଲେଖକଙ୍କର ମନୋସ୍ଥିତି ଦେଖିନି, ମାତ୍ର ଲେଖାଟିକୁ ପଢ଼ିଲା ବେଳେ ମୁଁ କାନ୍ଦିଛି କଇଁ କଇଁ ହୋଇ। ଶିକ୍ଷକତା ଯେ ଏକ ମହାନ୍ ଉପଲବ୍ଧି- ଏ କଥା ଦାଶରଥୀ ସାର୍‌ଙ୍କ ବ୍ୟାକୁଳତା ଦେଖି ନଥିଲେ ହୁଏତ କେବେ ହୃଦୟଙ୍ଗମ କରି ହୋଇ ନଥାନ୍ତା। ତେଣୁ, ସାର୍‌ଙ୍କ ପ୍ରତି ଯେଉଁ ଆନ୍ତରିକ କୃତଜ୍ଞତା, ତାହା ହିଁ ବୋଧେ ଲୁହ ଆକାରରେ ବୋହି ଆସିଛି। ମନେ ହୋଇଛି, ତଟସ୍ଥ ହୋଇ ଲେଖା କିମ୍ବା ବିଷୟଟିର ମୂଲ୍ୟାଙ୍କନ କରିବା ମୋ ପକ୍ଷରେ ଯେମିତି ପୁରାପୁରି ଅସମ୍ଭବ! ସାଙ୍ଗରେ ଏକଥା ବି ମନେ ହୋଇଛି, ଦାଶରଥୀ ନାୟକ ମୋର ବି ଶିକ୍ଷକ ଥିଲେ। ଓଡ଼ିଶାର କେଉଁ ପଲ୍ଲୀ ଅଂଚଳରେ ତାଙ୍କ କର୍ମକ୍ଷେତ୍ର ସୀମିତି ହୋଇଥାଉ ପଛକେ, ସମଗ୍ର ସମାଜ ପାଇଁ, ଶିକ୍ଷକ ସମାଜ ପାଇଁ ଶିକ୍ଷକ ହେବାର ସମାର୍ଥ୍ୟ ଥିଲା ତାଙ୍କ ଭିତରେ ! କାରଣ ଶିକ୍ଷକତାକୁ ଗର୍ବ ଓ ଗୌରବର ପ୍ରତୀକ ବୋଲି ସେ ମନେ କରୁଥିଲେ। ଏମିତି ଶିକ୍ଷକ ଜଣେ ଆଖପାଖରେ ଥିଲେ, ବାକି ଶିକ୍ଷକମାନେ କ'ଣ କେବେ ତୁଚ୍ଛଭାବଗ୍ରସ୍ତ ହୋଇ ପାରିବେ ? ଆତ୍ମଦୟା ପ୍ରବୃତ୍ତି ଦ୍ୱାରା ଆକ୍ରାନ୍ତ ହେବେ ?

ଦାଢ଼ି ଆଜ୍ଞା ରବିନାରାୟଣ ଶତପଥୀ ମୂଳତଃ ଉପକୂଳ ଅଂଚଳର ଲୋକ। ସୁନ୍ଦରଗଡ଼ ଜିଲ୍ଲାର ଏକ ନିପଟ ମଫସଲ ଗାଁ ତୁମୁଲିଆ ତାଙ୍କ କର୍ମକ୍ଷେତ୍ର। ଏମିତିରେ ଉଚ୍ଚ ପ୍ରାଥମିକ ସ୍କୁଲ୍‌ର ଜଣେ ଶିକ୍ଷକ ମାତ୍ର ସେ। ମାତ୍ର ତାଙ୍କରି ନେତୃତ୍ୱରେ ସେଠାରେ ହାଇସ୍କୁଲ୍, କଲେଜ ସ୍ଥାପିତ ହୋଇଛି; ଶିକ୍ଷାନୁଷ୍ଠାନରେ କେବଳ ଝିଅଙ୍କ ପାଇଁ ଚାରୋଟି ହଷ୍ଟେଲ୍; ପୁଅ-ଝିଅଙ୍କୁ ଏକା ମହତ୍ତ୍ୱ ମିଳେ; ଖେଳକୁଦକୁ ମଧ୍ୟ ପାଠ ବହି ପରି ମର୍ଯ୍ୟାଦା ମିଳେ। 'ଦାଢ଼ି ଆଜ୍ଞା' ହେମଗିରି ବ୍ଲକ୍‌ରେ ଭୂମି ସଂସ୍କାର କାମ କରିଛନ୍ତି, ମଦ ବିରୋଧୀ ଆନ୍ଦୋଳନର ନିଅ ଡାକିଛନ୍ତି। ପ୍ରତିବଦଳରେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ରୋଷର ଶିକାର ହୋଇଛନ୍ତି, କଚ୍ରେରୀକୁ ଟଣା ହୋଇଛନ୍ତି; ବ୍ୟକ୍ତି ନାମରେ ଅନୁଷ୍ଠାନଟିଏ ସେ ! ସବୁଠାରୁ ବଡ଼ କଥା, ଏତେ ସବୁ କାମ ପାଇଁ କୌଣସି 'ବଡ଼' ଲୋକର 'ଦାନ'ର ଆଶ୍ରିତ ହୋଇ

ନାହାନ୍ତି । ସ୍ଥାନୀୟ ଲୋକଙ୍କର ଅନ୍ତଃଶକ୍ତି ହିଁ ଏକମାତ୍ର ସଂବଳ । ଶିକ୍ଷା ତାଙ୍କ ପାଇଁ ଏକ ବ୍ୟାପକ ସାମାଜିକ ଆନ୍ଦୋଳନ, ମୁକ୍ତିର ବାଟ । ଜଣେ ସ୍ଥାନୀୟ ଆଦିବାସୀ ଶିକ୍ଷକ ଗଦାଧର ମାଝୀ ଏହି ଆନ୍ଦୋଳନରେ ତାଙ୍କର ସହକର୍ମୀ । ମାତ୍ର, ମାଝୀବାବୁ ଯେତେବେଳେ ଏମଏଲ୍ଏ, ମନ୍ତ୍ରୀ ହେଲେ, ତାଙ୍କ ଠାରୁ ବି 'ଦାଢ଼ି ଆଜ୍ଞା' ଦୂରେଇ ରହନ୍ତି । "ସେ ରାକ୍ଷୀ ବାନ୍ଧିବାକୁ ଗଂଗୀ ବେଓ୍ବାକୁ ସମୟ" ଦେବେ, "ଗଂଗା ହରିଜନ ବୁଢ଼ାର ଟାହୁଲା କଥା" ଶୁଣିବେ, ଅଥଚ୍ 'ମନ୍ତ୍ରୀ' 'ଏମ୍ଏଲ୍ଏ'ଙ୍କ ପାଖ ଏଡ଼ିବେ । ସତୁରି-ନବେ ଦଶକରେ ପଶ୍ଚିମ ଓଡ଼ିଶାରେ, ବିଶେଷ କରି ସୁନ୍ଦରଗଡ଼ ଜିଲ୍ଲାରେ ଘରେ ଘରେ, ପରିଚିତ ଏହି ଆଦର୍ଶ ପୁରୁଷଙ୍କୁ ଯୋଗାଯୋଗର ଏତେଗୁଡ଼ିଏ ଅଭିନବ ମାଧ୍ୟମର ବିକାଶ ସତ୍ତ୍ୱେ ବାହାରେ ବହୁତ କମ୍ ଲୋକ ଜାଣନ୍ତି । ତାଙ୍କକଥା କହିବାର ଭାର ନେଇଛନ୍ତି ଆରମ୍ଭରେ ଶିକ୍ଷକ ଏବଂ ପରେ ମନ୍ତ୍ରୀପଦ ଅଳଂକୃତ କରିଥିବା ଗଦାଧର ମାଝୀ । ଦାଢ଼ିଆଜ୍ଞାଙ୍କ ଠାରୁ ସେ ଶ୍ରେଣୀରେ ପାଠ ପଢ଼ି ନାହାନ୍ତି, ମାତ୍ର ଆଦର୍ଶ ଲୋକ-ନେତା ହେବାର କଳା ଶିଖିଛନ୍ତି ।

'ଦାଢ଼ି ଆଜ୍ଞା' ପରି ନିଜ କର୍ମକ୍ଷେତ୍ରରେ ବହୁ ପରିଚିତ, ଅଥଚ୍ ବାହାରେ ଯଥୋଚିତ ଖ୍ୟାତି ପାଇ ନଥିବା ଆଉ ଜଣେ ଶିକ୍ଷକ ହେଲେ ରେଭେନ୍ସା କଲେଜର ଇତିହାସ ଅଧ୍ୟାପକ ଆଲ୍ତାଫ୍ ହୁସେନ୍ । ତାଙ୍କ ଶ୍ରେଣୀର ଛାତ୍ର ନହେବା ସତ୍ତ୍ୱେ ଜଣେ ଇତିହାସର ବିଦ୍ୟାର୍ଥୀ ଭାବରେ ମୁଁ ଅଧ୍ୟାପକମାନଙ୍କଠାରୁ ତାଙ୍କ କଥା ଶୁଣିଥିଲି । କୁଆଡ଼େ ତାଂକଠାରେ ମଧ୍ୟକାଳୀନ ଭାରତ ଇତିହାସର ଜଣେ ମୌଳିକ ଗବେଷକ ଭାବରେ ଦେଶ୍-ଦୁନିଆଁରେ ପ୍ରସିଦ୍ଧି ଲାଭ କରିବାର ଦକ୍ଷତା ଥିଲା । ଆଲିଗଡ଼ ମୁସ୍ଲିମ୍ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ ଛାତ୍ର ସେ । ମାତ୍ର 'ଗବେଷଣା' ସ୍ଥାନରେ ଶ୍ରେଣୀ ଶିକ୍ଷକତା'କୁ ସେ ପ୍ରାଥମିକତା ଦେଲେ, 'ବାହାରେ' ନରହି ଶିକ୍ଷାଦୀକ୍ଷା ପରେ 'ଘରକୁ', ଓଡ଼ିଶାକୁ କର୍ମକ୍ଷେତ୍ର କଲେ । ଏମିତି ଜଣେ ଏକନିଷ୍ଠ ଶ୍ରେଣୀ ଶିକ୍ଷକଙ୍କୁ ଦେଖିବା ପାଇଁ ଯତୀନ୍ଦ୍ର ନାୟକ ପ୍ରୟାସ କରିଛନ୍ତି । ଯତୀନ୍ବାବୁ ମୂଳତଃ ନିଜେ ଇଂରାଜୀ ସାହିତ୍ୟର ଜଣେ ଛାତ୍ର । କଲେଜରେ ପ୍ରଥମେ ବିଜ୍ଞାନ ଓ ପରେ ଇଂରାଜୀ ଛାତ୍ର ଭାବରେ ସେ ପ୍ରଫେସର ହୁସେନ୍ଙ୍କୁ ଶିକ୍ଷକ ରୂପରେ ଅନୁଭବ କରିବାର ବିଶେଷ ଅବସର ପାଇନାହାନ୍ତି । ତଥାପି ସେ ଦେଖିଛନ୍ତି "ଫରାସୀ ବିପ୍ଳବ" ଠାରୁ ଆରମ୍ଭ କରି "ରେଭେନ୍ସା କଲେଜ ଯାଏ" ଛାତ୍ରମନରେ ସବୁର ଇତିହାସ ପାଇଁ ଆଗ୍ରହ ସୃଷ୍ଟି କରିପାରିବାର

ଦକ୍ଷତା ଥିଲା 'ସାର୍‌ଙ୍କର' ପାଠପଢ଼ା ଶୈଳୀରେ। ସେ "ଫରାସୀ ବିପ୍ଳବର"ର ନାୟକ ଆବେ ସିଏଙ୍କ ଭୂମିକାରେ କୋଟ୍ "ପକେଟ୍ ଅଣ୍ଡାଳି" ପାରନ୍ତି, ପୁଣି 'ରେଭେନ୍‌ସା'ର ପ୍ରବାଦ ପୁରୁଷ ଭି.ଭି. ଜନଙ୍କ ଭୂମିକାରେ "ସାଇକେଲ୍‌ରେ ଯିବା ଆସିବା କରନ୍ତି"। 'ଅତୀତ' ସାଙ୍ଗରେ 'ବର୍ତ୍ତମାନ'କୁ, 'ଶ୍ରେଣୀଗୃହ' ସାଙ୍ଗରେ 'ସାଧାରଣ ଜ୍ଞାନ'କୁ ଏବଂ 'ଇତିହାସ ପାଠ' ସାଙ୍ଗରେ 'ଇଂରାଜୀ ଭାଷା' ଶିକ୍ଷାକୁ ଯୋଡ଼ିବାର ଦକ୍ଷତା ଥିଲା ପ୍ରଫେସର ହୁସେନ୍‌ଙ୍କ ଶିକ୍ଷାଦାନ ଶୈଳୀରେ। ଏହି କାରଣରୁ "ଦୀର୍ଘ ତେତିଶ ବର୍ଷ ପରେ" ବି ଲେଖକ ସାରଂଙ୍କର ବକ୍ତୃତାକୁ ମନେ ରଖିଛନ୍ତି। "ଜଣେ ପ୍ରତିଭାବାନ ଶିକ୍ଷକ ଛାତ୍ର ମନରେ କିପରି ଛାପ ପକାଇ ପାରନ୍ତି", ତା'ର ସମ୍ୟକ ଧାରଣା ମିଳିଛି। "ଜୀବନରେ ବହୁ ଲୋକଙ୍କର ପ୍ରଭୁତ୍ୱ, ପ୍ରତିପତ୍ତି, ଐଶ୍ବର୍ଯ୍ୟ, ସାଂସାରିକ ସାଫଲ୍ୟ ମନରେ ବେଳେବେଳେ ନିଶ୍ଚୟ ରେଖାପାତ କରେ। କିନ୍ତୁ ସମୟ ସେ ରେଖାକୁ ଲିଭାଇ ଦେଇଛି ବା ଅସ୍ପଷ୍ଟ କରିଦେଇଛି। ମାତ୍ର, ପ୍ରଫେସର ହୁସେନଙ୍କ ଭଳି ଶିକ୍ଷକ ମନରେ ଯେଉଁ, ଛାପ ଛାଡ଼ି ଦେଇଛନ୍ତି, ସମୟର ସୂଅ ତାକୁ ଆହୁରି ସ୍ପଷ୍ଟ କରି ଦେଇଛି।" ଲେଖକଙ୍କର ଅନୁଭବ ଶୁଣି ଲାଗୁଛି, 'ଗବେଷଣା ନିବଂଧ' ଲେଖା ତୁଳନାରେ ପ୍ରଫେସର ହୁସେନ୍ 'ଶ୍ରେଣୀ ଶିକ୍ଷକତା'କୁ ପ୍ରାଥମିକତା ଦେଇ କିଛି ଭୁଲ୍ କରି ନାହାନ୍ତି। ତାଙ୍କର 'ପରୋକ୍ଷ' ଛାତ୍ର ବି ତାଙ୍କର କୃତି; ତାଙ୍କୁ ଚିର ଅମର କରି ରଖିବେ।

ଶିକ୍ଷକତାରେ ଓତଃପ୍ରୋତଃ ଶିକ୍ଷକ ଜଣକ କେବଳ ପର ସେବା ପାଇଁ ଚିନ୍ତା କରେ, ନା ଏହାଦ୍ୱାରା ତାକୁ ଆତ୍ମତୁଷ୍ଟୀ ମଧ୍ୟ ମିଳେ ? ସଂଗ୍ରାମ କେନାଙ୍କ 'ସୁଧାକର ସାର୍'ଙ୍କୁ ଦେଖିଲେ, ପ୍ରଶ୍ନଟିର ଏକ ବ୍ୟାପକ ଉତ୍ତର ମିଳେ। ରେଭେନ୍‌ସା କଲେଜିଏଟ୍ ସ୍କୁଲ୍ ହଷ୍ଟେଲ୍‌ର ସହକାରୀ ସୁପରିନ୍‌ଟେଣ୍ଡେଣ୍ଟ୍ ସେ। ଯଦିଓ "ସ୍କୁଲ୍‌ରେ ଓଡ଼ିଆ ପଢ଼ାନ୍ତି" ହେଲେ "ବେଶୀ ସମୟ କଟାନ୍ତି ହଷ୍ଟେଲ୍‌ରେ"। ପିଲାଙ୍କ ପଢ଼ାଠାରୁ ଆରମ୍ଭ କରି ରାତିରେ ଶୋଇବା ବେଳେ "ଲାଇଟ୍ ଲିଭିଛି ନା ନାହିଁ" ସବୁଆଡ଼େ ତାଙ୍କ ନଜର। ପିଲାଙ୍କୁ ଲାଗେ, "ସେ ସବୁ କଥା ଜାଣି ପାରନ୍ତି", "ଯେମିତି ଏଇଠି କୋଉଠି ଠିଆ ହୋଇ ବଡ଼ ବଡ଼ ଆଖିରେ ଅନେଇଛନ୍ତି"। ବିଶ୍ୱ ତାଙ୍କର ହଷ୍ଟେଲ୍ ପରିସର ଯାଏଁ ସୀମିତ, ଜଗନ୍ନାଥଙ୍କ ପରି ସେ ସର୍ବବ୍ୟାପୀ, ସର୍ବଜ୍ଞାତା। କଡ଼ାକଡ଼ି ଭାବେ ପିଲାଙ୍କ ଭିତରେ ଶୃଙ୍ଖଳାବୋଧ ବି ଦେଖନ୍ତି, ସାଙ୍ଗରେ ଉପସ୍ଥାନ ବେଳେ ଶ୍ରେଣୀରେ 'ପ୍ରେଜେଣ୍ଟ୍ ସାର୍' ବଦଳରେ 'ଉପସ୍ଥିତ ମହାଶୟ' କହି ହେଡ୍‌ମାଷ୍ଟରଙ୍କ ରୋଷର ଶିକାର ହୋଇଥିବା ଛାତ୍ରଙ୍କ

ପକ୍ଷଧର ସାଜନ୍ତି, ସୁରକ୍ଷା ପ୍ରଦାନ କରନ୍ତି । ହଷ୍ଟେଲ୍ ପିଲାଙ୍କ ପାଇଁ ଶହେ ପ୍ରତିଶତ ପ୍ରତିବଦ୍ଧ ଏହି ଶିକ୍ଷକ ଜଣକ 'ସିନିୟର' ହେଲାପରେ ଯେତେବେଳେ ହଷ୍ଟେଲ୍ ଦାୟିତ୍ୱରୁ 'ଅବ୍ୟାହତି' ପାଆନ୍ତି ତାହା କି ତାଙ୍କୁ ଖୁସି କରିଦିଏ ? "ସାର୍‌ଙ୍କ ସାତ ଝିଅ । ସ୍ତ୍ରୀ ରୋଗୀ, ହାତରେ ରୋଷେଇ କରନ୍ତି"। ତାଙ୍କ ଶବ୍ଦରେ "ସମସ୍ୟା ତ ସବୁବେଳେ ଥିଲା, କିନ୍ତୁ ହଷ୍ଟେଲ୍‌ରୁ ଆସିବା ପରେ ମୁଁ ଖୁବ୍ ଏକୁଟିଆ ହୋଇଯାଇଛି"। ପିଲାଙ୍କ ବିନା ସେ ନିଃସଙ୍ଗ। ଶିକ୍ଷକତାରେ ବୁଡ଼ି ରହିବା ତାଙ୍କ ପାଇଁ ସମସ୍ୟା ନୁହେଁ, ବରଂ ବୈଚାରିକ, ପାରିବାରିକ, ସବୁ ସମସ୍ୟାର ସମାଧାନ ଲକ୍ଷ୍ୟରେ ଏକ ବ୍ୟକ୍ତିକ ପ୍ରୟାସ ! ଶିକ୍ଷକତା ତାଙ୍କ ପାଇଁ ପରସେବା ଯେତେ, ଆତ୍ମ ସେବା ବି ସେତେ। ଛାତ୍ର ଓ ଶିକ୍ଷକ ମଧ୍ୟରେ ବିଦ୍ୟମାନ ଏହି ଅନୁପୂରକତାକୁ ବୁଝି ପାରିଥିବା ଶିକ୍ଷକ ଜଣକ ଶିକ୍ଷକତାରେ ଓତଃପ୍ରୋତଃ ହେଲା ବେଳେ କଦାଚିତ୍ ଆତ୍ମ-ଦୟାଗ୍ରସ୍ତ ହୋଇପାରେନା । ଶିକ୍ଷକତା ତାକୁ ଆତ୍ମତୁଷ୍ଟୀ ଦିଏ । ଶିକ୍ଷକତା ତା' ପାଇଁ ଏକ ନିଶା, ଆଶାବାଡ଼ି । ପ୍ରଶଂସା, ପୁରସ୍କାର କିମ୍ବା କେବଳ ପାଉଣା ଲୋଭରେ ସେ ଶିକ୍ଷକତା କରିନି । ଶିକ୍ଷକତା ତା' ପାଇଁ ଏକ ଜୀବନଧାରା । କୌଣସି ସାଂସାରିକ ପ୍ରତିକୂଳତା ତା' ଆଗରେ ପ୍ରତିବନ୍ଧକ ହୋଇ ନପାରନ୍ତି ! ସ୍ରୋତର ଅନୁକୂଳରେ ଯାଉଥିବା ଭିଡ଼ ତା'ର ଏହି 'ଏକଲା ଚଲୋରେ' ଡାକକୁ ବୁଝି ନପାରିଲେ ସୁଦ୍ଧା ତା'ର ପରବାୟ ନାହିଁ ।

ସଂକଳନର ସବୁ ଲେଖା ମୁଁ ପଢ଼ିଛି; ସଂଯୋଜକ ଭାବରେ ମତେ ଏକାଧିକ ଥର ପଢ଼ିବାକୁ ପଡ଼ିଛି । ମୁଦ୍ରଣ-ତ୍ରୁଟି ଖୋଜିଲା ବେଳେ ପଢ଼ିଛି; କ୍ରମାନ୍ୱୟରେ ଲେଖାଗୁଡ଼ିକୁ ସଂଯୋଜିତ କଲାବେଳେ ପଢ଼ିଛି । ପଢ଼ିଲାବେଳେ ଲାଗିଛି, ମୁଁ ବିସ୍ତାରିତ ହୋଇଯାଇଛି, ଲଟେରୀ ମିଳିଲା ପରି ଏତେ ସବୁ ଅନନ୍ୟ ସୃଜନଶୀଳ ଅନୁଭୂତିକୁ ଯେମିତି ମୁଁ କବ୍‌କା କରି ଧରି ରଖିଛି ! ମତେ ନୂଆ ଶବ୍ଦ ମିଳିଛି, ଭାବ ମିଳିଛି, ଷାଠିଏ-ସତୁରି ବର୍ଷ ତଳର ସାମାଜିକ ଇତିହାସକୁ ଅନୁଭବ କରିବାର ଅବସର ମିଳିଛି । ସମ୍ବଲପୁରଠାରେ ଶିକ୍ଷକ କର୍ମଶାଳାରେ ପ୍ରତିଭାଗୀମାନେ ଭାବବିହ୍ୱଳିତ ହୋଇ ନିଜ ନିଜ ପ୍ରିୟ ଶିକ୍ଷକଙ୍କୁ ଯେଉଁ ମନେ ପକାଉଥିଲେ, ବକ୍ତା ଓ ଶ୍ରୋତା ଭାବରେ 'ଆମେ' ଯେଉଁ ଆନ୍ଦୋଳନ ନିଜ ଭିତରେ ଅନୁଭବ କରିଥିଲେ, ଏହି ଲେଖାଗୁଡ଼ିକୁ ପଢ଼ିଲା ବେଳେ, ମତେ ଲାଗିଛି, ସେହି ଆନ୍ଦୋଳନଭାବର ମୋ ଭିତରେ ପୁର୍ନଜାଗରଣ ହୋଇଛି । ମନ କରିଛି, ସେହି ପାଣ୍ଡୁଲିପି ପଢ଼ାବେଳର ଅମୂର୍ତ୍ତ ଅନୁଭବ ମୋ ଭିତରେ ବସା ବାନ୍ଧି ରହି

ଯାଆନ୍ତା କି ? ଏଭଳି ପୁସ୍ତକର ପରିକଳ୍ପନା କରିଥିବାରୁ ସେତେବେଳେ ନିଜକୁ କୃତ୍ୟ କୃତ୍ୟ ମନେ କରିଛି ମୁଁ । ଛାତ୍ରଟିଏ ଚାହେଁ, ଶିକ୍ଷକଠାରୁ 'ଦାନ' ସୂତ୍ରରେ ପାଇଥିବା ପାଠକୁ ସାମାଜିକ ସଂପତ୍ତି ଭାବେ ପର ପିଢ଼ି ପାଇଁ ସାଇତି ରଖିବାକୁ; ଅକୁଣ୍ଠିତ ଚିତ୍ତରେ ବିତରିତ ହୋଇ ପାରିଲେ ତାହା ସାଇତି ହୋଇ ରହିବ । ମୋର ବି ଏକାନ୍ତ ଇଚ୍ଛା, ଜଣେ ଭଲ ମଣିଷକୁ ମନେ ପକାଇବାର ଅକପଟ ନୈସର୍ଗିକ ଭାବ, ଆନ୍ତରିକ ଆନ୍ଦୋଳନର ସ୍ୱର ଅନ୍ୟମାନଙ୍କଠାରେ ପହଞ୍ଚୁ, ଅନ୍ୟମାନେ ମଧ୍ୟ ସେହି ଅମୂର୍ତ୍ତ ଆନନ୍ଦକୁ ଅନୁଭବ କରନ୍ତୁ । ଲେଖକମାନଙ୍କର ଅନୁଭବ ବ୍ୟକ୍ତିକ ନହୋଇ ସାମାଜିକ ହେଉ । ଅନ୍ୟମାନେ ବି ତା' ଭିତରେ ନିଜକୁ, ଏକ ଆଦର୍ଶ ସମାଜର ପରିକଳ୍ପିତ ସ୍ୱରୂପକୁ ଏବଂ ତା'ପାଇଁ କାମ କରିଥିବା ନିଷ୍ଠାପର କର୍ମୀମାନଙ୍କୁ ଅର୍ନ୍ତମନରେ ଦେଖନ୍ତୁ ! ଏକ ଆଦର୍ଶ ସମାଜର ଗଠନ ବେଳେ ଏହି ଦୃଷ୍ଟି ଓ ବିହ୍ୱଳିତ ଭାବ ନିଶ୍ଚୟ କାମରେ ଆସିବ- ଏଥିରେ ସଂଦେହ ନାହିଁ । ଆଦର୍ଶର ପ୍ରତିଷ୍ଠା ପାଇଁ ଲଢୁଥିବା ଶିକ୍ଷକମାନଙ୍କ ପ୍ରତି, ବାକି ମଣିଷମାନଙ୍କ ପ୍ରତି ମଧ୍ୟ ତାହା ଏକ ପ୍ରକାର ଶ୍ରଦ୍ଧାଞ୍ଜଳି ହେବ ବୋଲି ଆମର ଆଶା ଓ ବିଶ୍ୱାସ !!

ସାମାଜିକ ବିଜ୍ଞାନର ଛାତ୍ର ଭାବରେ 'ଆଦର୍ଶ ଶିକ୍ଷକ' ଓ 'ଆଦର୍ଶ ସମାଜ' ପ୍ରଶ୍ନକୁ ନେଇ ମନରେ ଉଙ୍କି ମାରୁଥିବା ଆଉ ଗୋଟିଏ କଥା ନ କହିଲେ ମନକୁ ହାଲୁକା ଲାଗିବ ନାହିଁ । ଅସଲରେ ଆଦର୍ଶ ଶିକ୍ଷକ କଥା ପଡ଼ିଲେ, ଅନେକ ଧାରଣା କରନ୍ତି, ସାଂସାରିକ ମୋହମାୟା, ଜୀବନ-ଜଂଜାଳରୁ ଉର୍ଦ୍ଧ୍ୱରେ ରହି କେବଳ ମୂଲ୍ୟବୋଧକୁ ବାଟି ଚକଟି ପିଉଥିବା ମଣିଷଟିଏ ସେ ! ଆର୍ଥିକ ଦାରିଦ୍ର୍ୟ, ପାରିବାରିକ ଅଶାନ୍ତିରେ ଓତଃପ୍ରୋତଃ, 'ବଡ଼ଲୋକ' ହୋଇ ନପାରି ସୁଦ୍ଧା ଆତ୍ମ-ସନ୍ତୁଷ୍ଟୀ ଲାଭ କରୁଥିବା ବ୍ୟକ୍ତିଟିଏ ସେ । ସେ 'ଦୟାର ପାତ୍ର' ! ତା'ର ଶିକ୍ଷକତା ଓ ସାଂସାରିକ 'ବିଫଳତା' ମଧ୍ୟରେ ନିବିଡ଼ ସଂପର୍କ ରହିଛି । କିନ୍ତୁ, ପରିବର୍ତ୍ତିତ ପରିସ୍ଥିତିରେ ଜଣେ ସାଧାରଣ ଶିକ୍ଷକ ତାକୁ ନେଇ ସ୍ଥିରିକୃତ ହୋଇଥିବା ଏହିଭଳି ଏକ ରୂପକଳ୍ପକୁ ଆଉ ସ୍ୱୀକାର କରୁନି । ଅନ୍ୟମାନଙ୍କ ପରି ସେ ମଧ୍ୟ ତା' ଜ୍ଞାନ କୌଶଳର 'ବଜାର ଦର କଷୁଛି', 'କମ୍ ସାମଗ୍ରୀ' ଦେଇ ବେଶୀ 'ଦାମ୍' ଅସୁଲ୍ କରିବାକୁ ପ୍ରୟାସ କରୁଛି ! ସେ ବିକ୍ରେତା; ଛାତ୍ର ହେଲା କ୍ରେତା, ପାଠପଢ଼ାରେ ପୁଂଜି ନିବେଶ ହୁଏ; ସେ ଶିକ୍ଷକ ନାଁରେ ଜଣେ 'ଚେଞ୍ଜ୍ ଏଜେଣ୍ଟ୍' । ସେ ବିଦ୍ୟାଶିକ୍ଷା ଦିଏ ନାହିଁ; 'କରିକ୍ୟୁଲମ୍ ଟ୍ରାନକ୍ଟେ' କରେ; ଶିକ୍ଷକର ନୂଆଁ ନାଁ ହେଲା 'ଫେସିଲିଟେଟର୍' । (ପୁଞ୍ଜିବାଦୀ ପରିବର୍ତ୍ତନ ସହ ଶିକ୍ଷାରେ ଏ ଯେଉଁ

ପରିବର୍ତ୍ତନ, ତାକୁ ଦର୍ଶନର ପ୍ରଫେସର୍ ଗୋଷ୍ଠ ବିହାରୀ କାନୁନ୍‌ଗୋ ବହୁତ ସାବଳିକ ଢ଼ଙ୍ଗରେ ବିଶ୍ଳେଷଣ କରିଛନ୍ତି) । ସେ କୋଠା ତୋଳିବ, ଗାଡ଼ି ଚଢ଼ିବ; ବଜାରର ପେଣ୍ଠ ଜାଗାରୁ ସ୍ଥାନଚ୍ୟୁତ ନ ହେବା ସକାଶେ ସେ ରାଜନେତା, ଅଧିକାରୀଙ୍କର ଖୋସାମଦ କରିବ, ତାଙ୍କୁ ଲାଞ୍ଚ ଦେବ ; ଅନ୍ୟମାନଙ୍କ ପରି ଆଜିର ପୁଂଜିବାଦୀ ବଜାର ସଂସ୍କୃତିରେ ସେ ବି 'ବଜାରୀ' ମଣିଷ ଜଣେ ! ପ୍ରକୃତରେ ଦେଖିଲେ, ଆମର ସାଧାରଣତଃ ଏଭଳି ଜଣେ ଶିକ୍ଷକ ସହ ଅନେକ ସମୟରେ ଭେଟ ହୁଏ । ସେତେବେଳେ ମନ କଷ୍ଟ ହୁଏ । ଲାଗେ, 'ଦଧିଚି' ଋଷି ପରି ନିଜ ହାଡ଼, ମାଂସ ଦେଇ ସମାଜ ଗଢ଼ିବାକୁ 'କିଏ' ପଣ କରନ୍ତା କି ? ସେହି 'କିଏ' ସ୍ଥାନରେ ଆମେ ଧରିବାନ୍ଧି କେବଳ 'ଶିକ୍ଷକ'କୁ ଭର୍ତ୍ତି କରିଦେଲେ କି ପ୍ରକାଣ୍ଡ ଶୂନ୍ୟସ୍ଥାନଟି କେବେ ପୂରଣ ହୋଇଯିବ ? 'ରାଜନେତା', 'ଅଧିକାରୀ', 'କିରାଣୀ', 'ବିଜ୍ଞାନୀ' ପ୍ରଭୃତିଙ୍କର ତା'ପାଇଁ 'ଆଦର୍ଶ' ହେବାର କ'ଣ ଦରକାର ପଡ଼ିବନି ? ଅନ୍ୟ ଶବ୍ଦରେ କହିଲେ 'ଆଦର୍ଶ ଶିକ୍ଷକ ନିଷ୍ଚିତ ରୂପେ ଆଦର୍ଶ ସମାଜ ଗଢ଼ିବା ପାଇଁ ଏକ ବଡ଼ ଆବଶ୍ୟକତା । କିନ୍ତୁ ସେଭଳି ସମାଜର ସେ ସବୁ କିଛି ନୁହେଁ, ବରଂ ସାମାନ୍ୟ ଉପାଦାନ ମାତ୍ର । ଆଦର୍ଶ ସମାଜର ଗଠନ ନିମନ୍ତେ ତା'ପରି ଅନ୍ୟ ଉପାଦାନ ସବୁର ମଧ୍ୟ ଆବଶ୍ୟକତା ରହିଛି । ଏହା ହୃଦୟଙ୍ଗମ ନ କଲେ, 'ଆଦର୍ଶ ସମାଜ' ପରି 'ଆଦର୍ଶ ଶିକ୍ଷକ' କେବଳ ଏକ କଳ୍ପନା ବିଳାସ ମାତ୍ର ହୋଇ ରହିଯିବ- ଏହା ସ୍ୱାଭାବିକ କଥା ।

ଲେଖକମାନଙ୍କର ସହଯୋଗ ବିନା ପାଣ୍ଡୁଲିପିର ପ୍ରସ୍ତୁତି ସଂଭବପର ହୋଇନଥାନ୍ତା । ତାହା ଜଣାଶୁଣା କଥା । ଜଣା କେତେକଙ୍କୁ ବାଦ୍ ଦେଲେ, ବାକିମାନେ ମତେ ଚିହ୍ନନ୍ତି ନାହିଁ । ତା' ସତ୍ତ୍ୱେ ମୋର ଅନୁରୋଧ ରକ୍ଷା କରିଛନ୍ତି, ଲେଖା ପଠାଇଛନ୍ତି । ସଂଯୋଜନା କରୁଥିବା ବ୍ୟକ୍ତିଟି ନୁହେଁ, ବରଂ ବିଷୟଟି ସେମାନଙ୍କୁ ଲେଖା ଲେଖିବା ପାଇଁ ପ୍ରୋତ୍ସାହିତ କରିଛି- ଏ କିଛି କମ୍ କଥା ନୁହେଁ । ପାଣ୍ଡୁଲିପିଟିକୁ ପ୍ରକାଶିତ ହେବାରେ ଅନିଚ୍ଛାକୃତ ଭାବେ କିଛି ବିଳମ୍ବ ଘଟିଛି । ଲେଖା ପାଇଁ ପ୍ରତ୍ୟେକଙ୍କ ଠାରେ ମୁଁ କୃତଜ୍ଞ ଯେତିକି, ବିଳମ୍ବ ପାଇଁ ବ୍ୟକ୍ତିଗତ ଭାବରେ କ୍ଷମାପ୍ରାର୍ଥୀ ମଧ୍ୟ ସେତିକି । ପୁସ୍ତକଟି ପ୍ରକାଶିତ ହେବା ଆଗରୁ ପାଣ୍ଡୁଲିପିର ଅନ୍ୟତମ ଲେଖକ ପ୍ରଫେସର ଗୋଷ୍ଠ ବିହାରୀ କାନୁନ୍‌ଗୋଙ୍କର ଦେହାବସାନ ହେଲା । ମୋ ପାଇଁ ସେ ଏକ ବ୍ୟକ୍ତିଗତ ଧକ୍କା ! ତାଙ୍କ ଜୀବିତାବସ୍ଥାରେ ପୁସ୍ତକଟି ପ୍ରକାଶିତ ହୋଇପାରିଥିଲେ ସେ କେତେ ଖୁସି

ହୋଇନଥା'ନ୍ତେ ! ଲେଖକମାନଙ୍କ ବାହାରେ ଆହୁରି କିଛି ବଂଧୁ ମଧ୍ୟ ଅଛନ୍ତି, ଯେଉଁମାନେ ଏଥିପାଇଁ ଅକୁଣ୍ଠ ସହଯୋଗ କରିଛନ୍ତି । ଆଂଚ଼ଳିକ ଶିକ୍ଷା ସଂସ୍ଥାନର ପୂର୍ବତନ ଅଧ୍ୟକ୍ଷ ପ୍ରଫେସର୍ ଏମ୍.ଏ. କାଦର, ଓ ଇଂରାଜୀ ପ୍ରଫେସର୍ ବିଜୟ୍ କୁମାର ସୁନଓ୍ୱାନୀ ଓଡ଼ିଆ ପଢ଼ିପାରନ୍ତିନି । ତଥାପି ତାଙ୍କ ଶୁଭେଚ୍ଛା ଭୁଲିବାର ନାହିଁ । ସହକର୍ମୀ ଓ ବନ୍ଧୁ ବସନ୍ତ କୁମାର ପଣ୍ଡା ଏବଂ ଶିକ୍ଷା ସନ୍ଧାନର ଶ୍ରୀଯୁକ୍ତ ଅନିଲ୍ ପ୍ରଧାନ ଆରମ୍ଭରୁ ଶେଷଯାଏ ସାଥିରେ ଅଛନ୍ତି । ମୁଦ୍ରଣ-ତ୍ରୁଟି ଖୋଜିବାଠାରୁ ଆରମ୍ଭ କରି ଲେଖା ସଂପାଦନା ଯାଏ । ଏହା ବ୍ୟତୀତ, ପଂଚ଼ାନନ ଦାସଙ୍କର କଟକ ଝାଂଝିରି ମଙ୍ଗଳା ଉଚ୍ଚ ପ୍ରାଥମିକ ସ୍କୁଲ୍‌ର 'ରାଷ୍ଟ୍ରୀୟ୍ ପୁରସ୍କାର' (୧୯୯୫) ପ୍ରାପ୍ତ ଶିକ୍ଷକ ଶ୍ରୀ ବି.କେ. ସ୍ୱାଇଁଙ୍କୁ ନେଇ ଏକ କେଶଷ୍ଟଡ଼ି ("Case study of A National Awardee Teacher - His Theory and Practice for Teacher Employment and School Effectiveness") ମତେ ବିଷୟ୍ଟିକୁ ବୁଝିବାରେ ଯଥେଷ୍ଟ ସାହାଯ୍ୟ କରିଛି । ଉକ୍ତ ଶିକ୍ଷକଙ୍କର ପାରିବାରିକ ସ୍ଥିତି, ପାଠପଢ଼ା, ଶୈଳୀ, ପରୀକ୍ଷାରେ ସଫଳତା ହାର, ତଥା ସ୍ଥାନୀୟ୍ ସମାଜ ସହ ପାରସ୍ପରିକ ସହଯୋଗ ସଂପର୍କରେ ସେ ନିବଂଧରେ ବିଶଦ ଆଲୋଚ଼ନା କରିଛନ୍ତି । ସମସ୍ତେ ମୋର ବ୍ୟକ୍ତିଗତ ବନ୍ଧୁ । ସେମାନଙ୍କ ସହଯୋଗ ବଦଳରେ ସେମାନଙ୍କୁ କେବଳ କୃତଜ୍ଞତା ହିଁ ଦେଇ ହେବ ।



# ପରିବର୍ତ୍ତିତ ପରିସ୍ଥିତିରେ ଶିକ୍ଷକ

*ଗୋଷ୍ଠ ବିହାରୀ କାନୁନ୍‌ଗୋ*

ପୂର୍ବେ ଶିକ୍ଷାଦାନ ଛାତ୍ରର ଆଗ୍ରହ ସହକାରେ ଅଧ୍ୟୟନ ଉପରେ ଗୁରୁତ୍ୱ ଦିଆଯାଉଥିଲା। ମୋ ପିଲାଦିନରୁ ମୁଁ ଏହି ଦେଖିଛି। ମୋର ଅଧ୍ୟୟନପ୍ରତି ପରିବାରରେ ଆଗ୍ରହ ସୃଷ୍ଟି ହୋଇଥିଲା। ଆମ ଗ୍ରାମ ଉତ୍ତାରଣ, କଟକ ଜିଲ୍ଲାର ଅଡ଼ସପୁର ନିକଟରେ ଅବସ୍ଥିତ। ବିଷ୍ଣୁ ସହସ୍ର ନାମ ମଧ୍ୟରେ ଉତ୍ତାରଣ ଏକ ନାମ। ଏହି ଗ୍ରାମଟି ବିଦ୍ୟାନଗର ନାମରେ ମଧ୍ୟ ଅଭିହିତ। ସଂସ୍କୃତ ଶିକ୍ଷାର ବିଶେଷ ପ୍ରଭାବ ଏଠାରେ ଥିଲା। ମୋ ପ୍ରପିତାମହ ସଂସ୍କୃତ ବ୍ୟାକରଣ ଓ ସାହିତ୍ୟରେ ପ୍ରବୀଣ ପଣ୍ଡିତ ଥିଲେ। ସେ ଏକଦା ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କର ତିନିଗୋଟି ଶ୍ଳୋକ ରଚନା କରି ପୁରୀ ମୁକ୍ତି ମଣ୍ଡପ ସଭାଦ୍ୱାରା ସମ୍ମାନିତ ହୋଇଥିଲେ। ପିତାମହ ମଧ୍ୟ ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ ଲାଭ କରି ଛାତ୍ରମାନଙ୍କୁ ସଂସ୍କୃତ ଶିକ୍ଷା ଦେଉଥିଲେ। ପିତା ପ୍ରଧାନ ଶିକ୍ଷକ ଭାବରେ ବିଭିନ୍ନ ବିଦ୍ୟାଳୟରେ ପ୍ରତିଷ୍ଠା ଲାଭ କରିଥିଲେ। ସେ ପାଟଣା ବିଶ୍ୱବିଦ୍ୟାଳୟରେ ବି.ଏ. ଅନର୍ସ ପରୀକ୍ଷାରେ ପ୍ରଥମ ସ୍ଥାନ ଲାଭ କରି ସ୍ୱର୍ଣ୍ଣପଦକ ଲାଭ କରିଥିଲେ। ଏବେ ମଧ୍ୟ ତାଙ୍କ ପବିତ୍ର ସ୍ମୃତିରେ ପ୍ରତିବର୍ଷ ଛାତ୍ରମାନଙ୍କୁ ବୃତ୍ତି ପ୍ରଦାନ କରାଯାଉଛି। ସେ ସଂସ୍କୃତ, ଇଂରାଜୀ, ଇତିହାସ ଏବଂ ଅର୍ଥନୀତିରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ। ଏହିପରି ଏକ ସଂସ୍କୃତି ସଂପନ୍ନ ପରିବାରରେ ଏକମାତ୍ର ପୁତ୍ର ସନ୍ତାନ ହୋଇଥିବାରୁ ସେମାନଙ୍କର ଆଶୀର୍ବାଦ ମୋ ଉପରେ ବର୍ଷିତ ହେଉଥିଲା। ଆମ ପରିବାରରେ ଗୀତା, ଭାଗବତ ପାଠ, ନାମ ସଂକୀର୍ତ୍ତନ ଏବଂ ମହୋତ୍ସବ ପ୍ରଭୃତିର ଆୟୋଜନ ହେଉଥିଲା। ମୁଁ ଏହି ପରିବେଶରେ ବଢ଼ିଥିବାରୁ ଏକ ଶିକ୍ଷକ ହେବାର ଆଶା ରଖିଥିଲି। ପରିବାରଠାରୁ ମୁଁ ସଂପୂର୍ଣ୍ଣରୂପେ ପ୍ରେରଣା ପାଇଥିଲି।

ଆମେ ପାଠ ପଢ଼ୁଥିବା ସମୟରେ ଶିକ୍ଷା ବ୍ୟକ୍ତିକୈନ୍ଦ୍ରିକ ଥିଲା। "ଜ୍ଞାନ ପାଇଁ ଜ୍ଞାନ" ଶିକ୍ଷାର ପ୍ରମୁଖ ଉଦ୍ଦେଶ୍ୟ ଥିଲା। କାଳକ୍ରମେ ଅର୍ଥନୈତିକ, ସାମାଜିକ ତଥା ବିଜ୍ଞାନନିଷ୍ଠ ପରିବର୍ତ୍ତନ ହେବାରୁ ଶିକ୍ଷାର ଆଦର୍ଶ ମଧ୍ୟ ପରିବର୍ତ୍ତିତ ହେଲା। ଶିକ୍ଷା କ୍ରମେ ଏକ ତାଲିମ୍ ଭାବରେ ସ୍ୱୀକୃତ ହେଲା। ଅକ୍‌ସଫୋର୍ଡ

ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଗିଲ୍‌ବଟ୍ ରାଇଲ୍ ଶିକ୍ଷା ଓ ତାଲିମ୍‌ର ସଂଜ୍ଞା ନିରୂପଣ କରିବାକୁ ଯାଇ ଅନେକ ମୂଲ୍ୟବାନ ତଥ୍ୟ ପ୍ରଦାନ କରିଅଛନ୍ତି । ତାଙ୍କ ମତରେ ଶିକ୍ଷାର ଲକ୍ଷ୍ୟ ବ୍ୟାପକ ଏବଂ ତାଲିମ୍‌ର ଲକ୍ଷ୍ୟ ସୀମିତ । ଶିକ୍ଷାରେ ଛାତ୍ରର ପୂର୍ଣ୍ଣାଙ୍ଗ ବିକାଶ ସାଧନ ହୋଇଥାଏ, କିନ୍ତୁ ତାଲିମ୍‌ରେ ଏକ ନିର୍ଦ୍ଦିଷ୍ଟ ଶକ୍ତିର ସଂକୀର୍ଣ୍ଣ ଉପଯୋଗ କରାଯାଏ । ହଠାତ୍ କିଛି ଶିଖିଯିବା ତାଲିମ୍‌ର ଲକ୍ଷ୍ୟ ହୋଇଥାଏ । ଯେଉଁ ପିଲା ସାଇକେଲ୍ ଶିଖିବାକୁ ଚାହେଁ ତାକୁ କେବଳ ରାସ୍ତାରେ ଚଲାଇବା ପାଇଁ ଶକ୍ତିର ବ୍ୟବହାର ଶିଖାଯାଏ । ସାଇକେଲଟି କେଉଁ ବିଜ୍ଞାନତଥ୍ୟଗୁଡ଼ିକ ଉପରେ ପ୍ରତିଷ୍ଠିତ ତାହା ତାକୁ ଜଣାନଥାଏ । କିନ୍ତୁ ଶିକ୍ଷାକୁ ଏପରି କଲେ ପ୍ରକୃତ ଶିକ୍ଷା ଲାଭ ହୁଏ ନାହିଁ । ତାଲିମ୍ ଏକ ପ୍ରକାର ଯାନ୍ତ୍ରିକ ପ୍ରକ୍ରିୟା ବୋଲି ଅନୁଭୂତ ହୁଏ ।

ଆମ ଶିକ୍ଷା ବ୍ୟବସ୍ଥାରେ ଯେଉଁ ପ୍ରକାର ଶିକ୍ଷକ-ତାଲିମ୍ ଦିଆଯାଉଅଛି ତାହା ମୁଖ୍ୟତଃ କେତେଗୁଡ଼ିଏ ପଦ୍ଧତି ଉପରେ ନିର୍ଭର କରେ । ଏହି ପଦ୍ଧତିକୁ ଶିକ୍ଷକମାନେ ଏକ ପ୍ରକାର ଯାନ୍ତ୍ରିକ ପଦ୍ଧତି ବୋଲି ମନେ କରନ୍ତି ଏବଂ ଶ୍ରେଣୀ ଗୃହରେ ଶିକ୍ଷାଦାନ ଏହି ଭାବରେ କରିଥାଆନ୍ତି । ପ୍ରଶ୍ନପଚାରିବାର ସୁଯୋଗ ଦିଆଯାଏ ନାହିଁ । ଏହି ବିଷୟ ଆଲୋଚନା କଲାବେଳେ ମୋର କେତେଗୁଡ଼ିଏ ଛୋଟ ଛୋଟ ଗଳ୍ପ ମନେ ପଡ଼େ । ଗ୍ରାମ ପୋଖରୀର ଚତୁଃର୍ଦ୍ଦିଗରେ ବଗମାନ ବସି ମାଛ ଖାଉଥିବାରୁ ମାଛଚାଷ କରିଥିବା ଲୋକଙ୍କର ଆର୍ଥିକ କ୍ଷତି ହେଉଥିଲା । ଏଥିରୁ ରକ୍ଷା ପାଇବା ନିମିତ୍ତ ବିଭିନ୍ନ କୌଶଳ ଅବଲମ୍ବନ କରାଗଲା । କିନ୍ତୁ ସୁଫଳ ମିଳିଲା ନାହିଁ । ତେଣୁ ସରକାର ଜଣେ ବିଦେଶୀ ବିଶେଷଜ୍ଞଙ୍କୁ ନିମନ୍ତ୍ରଣ କରି ତାଙ୍କୁ ଏହି ବିଷୟ ଅବଗତ କରାଇଲେ । ବିଶେଷଜ୍ଞ ଏକ ପଦ୍ଧତି ଉଦ୍ଭାବନ କରି .କହିଲେ ପୋଖରୀ କୂଳରେ ବସିଥିବା ବଗମାନଙ୍କ ମୁଣ୍ଡରେ କିଛି ପରିମାଣରେ ମହମ ରଖିଦେଲେ ତାହା ତରଳିଯାଇ ସେମାନଙ୍କ ଚକ୍ଷୁକୁ ଆବରଣ କରିଦେବ ଏବଂ ଏହାଦ୍ୱାରା ବଗମାନେ ଦୃଷ୍ଟିଶକ୍ତି ହରାଇ ଉଡ଼ିଯାଇ ପାରିବେ ନାହିଁ । ଏହା ଦେଖି ଜଣେ ଚାଷୀ ଠିଆ ହୋଇ କହିଲା ବଗମାନଙ୍କ ମୁଣ୍ଡରେ ମହମ ଦେଇ ଅନ୍ଧ କରିବା ନିଶ୍ଚୟ ଏକ ଅଭିନବ ଉପାୟ । କିନ୍ତୁ ସେମାନଙ୍କ ମୁଣ୍ଡରେ ମହମ ଦେଉଥିବା ସମୟରେ ଯଦି ସେମାନେ ଉଡ଼ିଯିବେ ଆମେ କ'ଣ କରିବୁ ? ବିଶେଷଜ୍ଞ କିଛି ଉତ୍ତର ନ ଦେଇ ସ୍ଥାନ ପରିତ୍ୟାଗ କରୁଥିବା ସମୟରେ କହିଲେ ନୂତନ ପଦ୍ଧତି ଉଦ୍‌ଭାବନ କରିବା ମୋର କାମ, ବଗମାନଙ୍କଠାରୁ

ରକ୍ଷାପାଇବା ଆପଣଙ୍କର କାମ। ଏହି ବିଷୟ ମତେ ପଞ୍ଜାବର ଜଣେ ବିଶିଷ୍ଟ ଶିକ୍ଷାବିତ୍ କହିଥିଲେ। ଆଉ ଗୋଟିଏ କୌତୁହଳ ଘଟଣା ମନେପଡୁଛି। ଘଟଣାଟି ଆମକୁ ଡ. ଜାକିର୍ ହୁସେନ୍ କହିଥିଲେ। ଶୁଆଙ୍କ ଅଧିପତି ଦେଖିଲେ ଯେ ଶୁଆମାନଙ୍କର ସଂଖ୍ୟା କ୍ରମେ କ୍ରମେ କମିଯାଉଛି। ସେମାନେ ଶିକାରୀର ଅଠାସଂଯୁକ୍ତ ଦଉଡ଼ିରେ ବସିବା ଦ୍ୱାରା ମୃତ୍ୟୁବରଣ କରୁଛନ୍ତି। ତେଣୁ ଅଧିପତି ସେମାନଙ୍କୁ ଡାକି ଗୋଟିଏ ମନ୍ତ୍ର ପ୍ରଦାନ କଲେ "ହମ୍‌ଲୋଗ୍ ପର୍‌ଦାର ଜାନୁଆର ହେଁ। ହମ୍‌ଲୋଗ୍ କଭି ବହେଲିଆ କା ନରକୁଲ୍ ପର ନେହିଁ ବୈଠେଙ୍ଗେ। ଅଗର ବୈଠ ଗୟେ ତୋ ଫରଫରା କର ଉଡ୍ ଯାଏଙ୍ଗେ।" ଶୁଆମାନେ ଅଳ୍ପ ସମୟ ମଧ୍ୟରେ ମନ୍ତ୍ରକୁ ମୁଖସ୍ଥ କରିଦେଲେ। କିଛି କାଳ ପରେ ଅଧିପତି ଦେଖିଲେ ଯେ ମନ୍ତ୍ର ଶିଖିଲା ପରେ ମଧ୍ୟ ଧରା ପଡୁଥିବା ଶୁଆଙ୍କର ସଂଖ୍ୟା ହ୍ରାସ ପରିଲକ୍ଷିତ ହେଲା ନାହିଁ। ଯଥାପୂର୍ବଂ ତଥା ପରମ୍। କେବଳ ଏତିକି ଫରକ୍ ପଡ଼ିଲା, ଶିକାରୀର ଅଠାଯୁକ୍ତ ରଜ୍ଜୁରେ ଶୁଆମାନେ ଧରାପଡ଼ିଲା ପରେ ମଧ୍ୟ କେବଳ ମନ୍ତ୍ରପାଠ କରୁଥାନ୍ତି। ଆମର ଶିକ୍ଷକ ତାଲିମ୍ ବ୍ୟବସ୍ଥା ଏହିପରି। ଥରେ ଆମେରିକାର ବ୍ୟଙ୍ଗକାର ମାର୍କ ଟ୍ୱାଇନ୍ ଆଣ୍ଟଲାଟିକ୍ ମହାସାଗରରେ ଯାତ୍ରା କରୁଥିଲେ। କିଛିବାଟ ଗଲା ପରେ ବୋଟ୍‌ରେ ଏକ ରନ୍ଧ୍ର ହେବାରୁ ସମୁଦ୍ରପାଣି ତା' ଭିତରେ ପ୍ରବେଶ କରିବାକୁ ଲାଗିଲା। ଏହା ଦେଖି ସମସ୍ତେ ଚିନ୍ତିତ ହୋଇ ଜୀବନ ରକ୍ଷା କରିବା ନିମିତ୍ତ ନାନା ପ୍ରକାର ଉପାୟ କ୍ୟାପଟେନ୍‌ଙ୍କୁ କହିଲେ। କୌଣସି ଉପାୟ କ୍ୟାପ୍‌ଟେନ୍‌ଙ୍କୁ ମନକୁ ପାଇଲା ନାହିଁ। ଏହା ଦେଖି ମାର୍କ ଟ୍ୱାଇନ୍ ମଧ୍ୟ ତାଙ୍କୁ କହିଲେ, "ଏହି ବିପଦ ସମୟରେ ଆପଣମାନେ ଆଣ୍ଟଲାଟିକ୍ ମହାସାଗରର ସମସ୍ତ ଜଳରାଶିକୁ ଉତ୍ତମ ରୂପେ ଫୁଟାଇ ଦିଅନ୍ତୁ। ତା' ହେଲେ ବୋଟ୍ ଓ ଆମମାନଙ୍କର ଜୀବନର ରକ୍ଷା ହୋଇପାରିବ।" ଏହା ଶୁଣି କ୍ୟାପ୍‌ଟେନ୍ କହିଲେ, ଏତେ ପରିମାଣର ପାଣି ଆମ୍ଭେମାନେ କିପରି ଫୁଟାଇବୁ। ମାର୍କ ଟ୍ୱାଇନ୍ ଉତ୍ତର ଦେଲେ ଉପାୟ ଉଦ୍ଭାବନ କରିବା ମୋର କାମ ; ମାତ୍ର ପାଣି ଫୁଟାଇବା ଆପଣଙ୍କର କାମ। ଥରେ ଭାରତର ବିଶିଷ୍ଟ ଜ୍ଞାନୀ ପ୍ରଫେସର୍ ନିହାର ରଂଜନ ରାୟଙ୍କୁ ଆମ କଲେଜକୁ ମୁଁ ଡାକିଥିଲି। ସେ ବଙ୍ଗଳାରେ ପଦେ କହିଲେ "କାସ୍ତେ (ଅର୍ଥାତ୍ ଦା) କେମନ୍ କରେ ଧର୍‌ତେ ହୟେ ଶିଖିତେ ଶିଖିତେ ଜୀବନ ଶେଷ ହୟଗେଲ। ଫସଲ୍ କାଟା ହଲନା।"

ଦୀର୍ଘକାଳ ଶିକ୍ଷକ ତାଲିମ୍ କଲେଜରେ ଅବସ୍ଥାନ କଲାପରେ ମୋର ଏହି

ଧାରଣା ପ୍ରାୟ ଦୃଢ଼ୀଭୂତ ହୋଇଛି । ତତ୍ତ୍ୱ ଏବଂ ଉପଯୋଗ ମଧ୍ୟରେ ଦ୍ୱନ୍ଦ୍ୱ ଏପର୍ଯ୍ୟନ୍ତ ଦୂରୀଭୂତ ହେଇପାରି ନାହିଁ ।

ଶିକ୍ଷକ ତାଲିମ୍ କଲେଜରେ ଶିକ୍ଷାଦାନର ମାନ ସାଧାରଣ କଲେଜରେ ଗୁଣାତ୍ମକମାନ ସହିତ ପ୍ରାୟ ସମକକ୍ଷ ହେଉନାହିଁ । ସାଧାରଣ କଲେଜରେ ଶିକ୍ଷକମାନେ ବହୁପୁସ୍ତକ ଅଧ୍ୟୟନ, ସେମିନାରରେ ଯୋଗଦାନ, ତର୍କବିତର୍କରେ ଅଂଶଗ୍ରହଣ ପ୍ରଭୃତି କାର୍ଯ୍ୟରେ ସ୍ୱତଃ ପ୍ରବୃତ୍ତ ହୋଇ ଯୋଗ ଦେଉଥିଲେ । ତା' ତୁଳନାରେ ଶିକ୍ଷା କଲେଜମାନଙ୍କର ବାତାବରଣ ଏକ ପ୍ରକାର ସଂକୀର୍ଣ୍ଣ ବୋଲି ମୋର ମନେହୁଏ । ମିନ୍, ମୋଡ୍, ମିଡ଼ିଆନ୍ ତଥା ଷ୍ଟାଣ୍ଡାର୍ଡ ଡିଭିଏସନ୍ କରି କରି ଶିକ୍ଷକ ତଥା ଛାତ୍ରମାନେ ସେମାନଙ୍କର କାର୍ଯ୍ୟକାଳ ପରିସମାପ୍ତ କରିଥାନ୍ତି । ବିଭିନ୍ନ ବିଷୟରେ ଜ୍ଞାନ ଆହରଣ ତଥା ପୁସ୍ତକ ଅଧ୍ୟୟନ ପ୍ରଭୃତି ପ୍ରାୟ ପରିଲକ୍ଷିତ ହୁଏ ନାହିଁ । ମୁଁ ବିଭିନ୍ନ ଶିକ୍ଷକ ମନୋନୟନ କମିଟିରେ ଯୋଗ ଦେଇ ଦେଖିଛି ଯେ ଶିକ୍ଷକମାନେ ବିଗତ ଦଶବର୍ଷ ମଧ୍ୟରେ ଖଣ୍ଡିଏ ବହି ମଧ୍ୟ ପଢ଼ିନଥାନ୍ତି । ବହି ପଢ଼ିବା ଶିକ୍ଷାକ୍ଷେତ୍ରରେ ଆବଶ୍ୟକ ହୁଏ ନାହିଁ ବୋଲି ସେମାନେ ମନେକରନ୍ତି । କିନ୍ତୁ ସେହିମାନଙ୍କୁ ନିଯୁକ୍ତି ଦିଆଯାଏ । ଏହି ପରିସ୍ଥିତି ମୋତେ ବିଷାଦଗ୍ରସ୍ତ କରିଦିଏ ।

ଆମର ଶିକ୍ଷକମାନଙ୍କୁ ତାଲିମ୍ ଦେବା ସମୟରେ ବାସ୍ତବ ପରିସ୍ଥିତି ସହିତ ସାମଞ୍ଜସ୍ୟ ରକ୍ଷାକରିବାର ପ୍ରୟାସ ପୂର୍ବରୁ ହୋଇନଥିଲା । ବିଲାତରେ ମଧ୍ୟ ଏହା Town ଏବଂ Gown ର ଦ୍ୱନ୍ଦ୍ୱ ରୂପରେ ଦେଖା ଦେଇଥିଲା । ଶିକ୍ଷାଜଗତ ଓ ବାସ୍ତବ ଜଗତର ଦୂରତା କ୍ରମଶଃ ହ୍ରାସ ହେବାରୁ ଲାଗିଛି । ଶିକ୍ଷାଦାନ ପରିବର୍ତ୍ତେ ଅଧିକ ଗୁରୁତ୍ୱ ଶିକ୍ଷଣ ଉପରେ ଦେବା ଅତ୍ୟନ୍ତ ଆବଶ୍ୟକ । ଶିକ୍ଷକମାନେ ଗାଁରେ ଥିବା ପୁଷ୍କରିଣୀ କୂଳକୁ ଛାତ୍ରମାନଙ୍କୁ ସାଂଗରେ ନେଇ ଭୌତିକ ବିଜ୍ଞାନ, ଜୀବ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ ପ୍ରଭୃତିର କେତେକ ତଥ୍ୟ ଏକତ୍ର ପଢ଼ାଇବାର ସୁଯୋଗ ପାଇବା ଉଚିତ୍ । ଛାତ୍ରମାନେ ମଧ୍ୟ ବିଭିନ୍ନ ପ୍ରଶ୍ନବାଣ ମାଧ୍ୟମରେ ସେମାନଙ୍କର ଜ୍ଞାନର ଅଭିବୃଦ୍ଧି ଘଟାଇ ପାରିବେ । ଏଥିପାଇଁ ବିଜ୍ଞାନାଗାରର ଆବଶ୍ୟକତା ନଥାଏ । ଆମ ଦେଶରେ ଏହା ଯୋଗାଇବା ଏ ପର୍ଯ୍ୟନ୍ତ ସମ୍ଭବ ହୋଇ ନାହିଁ । ଅଧିକନ୍ତୁ ଶିକ୍ଷା ଅଧିକ ବାସ୍ତବମୁଖୀ ହେଲେ ଛାତ୍ରର ଗବେଷଣା କରିବା ପ୍ରବୃତ୍ତି ଜାଗ୍ରତ ହୋଇ ପାରିବ । ଅଯଥା ଘୋଷାଘୋଷିରେ ସମୟ ନଷ୍ଟ ହେବ ନାହିଁ । ଏହି ସନ୍ଦର୍ଭରେ ମୋର ଗୋଟିଏ କଥା ମନେପଡୁଛି । ଅନେକ ବର୍ଷ ତଳେ ମତେ ଓ୍ୱାର୍ଦ୍ଧା

ଆଶ୍ରମରେ କିଛିଦିନ ତାଲିମ୍ ନେବା ପାଇଁ ସୁଯୋଗ ମିଳିଥିଲା । ଦିନେ ଆଚାର୍ଯ୍ୟ ବିନୋବାଭାବେ ଆମ୍ଭମାନଙ୍କୁ ଉଦ୍‌ବୋଧନ ଦେଇ କହିଲେ ଯେ ତାଙ୍କର ସ୍ମରଣ ଶକ୍ତି ଅତି ପ୍ରଖର ଥିଲା । ବହିରୁ ଯାହା ପଢୁଥିଲେ ସଂଗେ ସଂଗେ ମନେ ରଖି ଦେଉଥିଲେ ଏବଂ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ତାଙ୍କ ଘରକୁ ଯଦି କେହି ବୁଲି ଆସନ୍ତି ତାଙ୍କ ମା' ଅତ୍ୟନ୍ତ ଆନନ୍ଦିତ ହୋଇ କହନ୍ତି "ହମାରା ବିନୋବା କ୍ଲାସ୍ ମେଁ ଫାଷ୍ଟ ଆୟା ହେ । ଦୋ ଦିନ୍‌ମେ ସବ୍ ଶିଖା ।" ହମ୍‌ନେ ସବ୍‌କୋ ବତାଦିଆ 'ବିନୋବା ଦୋ ଦିନ୍ ମେ ତୋ ଶିଖା, ଲେକିନ୍ ଏକ ଦିନ୍ ମେ ଭୁଲା ।" ଶିକ୍ଷାକୁ ବାସ୍ତବମୁଖୀ ନ କଲେ ଏହି ପରିସ୍ଥିତି ଲାଗି ରହିଥିବ । ଶ୍ରେଣୀ ଗୃହରେ ଯାହା ପଢ଼ାହେବ, ଯେଉଁ ପାଠ୍ୟକ୍ରମ ଓ ପଦ୍ଧତି ପ୍ରସ୍ତୁତ କରାଯିବ ସେଥିପ୍ରତି ଶିକ୍ଷକ ଓ ଛାତ୍ରଙ୍କର ଏକାନ୍ତ ଶ୍ରଦ୍ଧା ରହିବା ଆବଶ୍ୟକ । ଶ୍ରଦ୍ଧା ନଥିଲେ କୌଣସି କାର୍ଯ୍ୟର ସୁଫଳ ମିଳେ ନାହିଁ ।

"ଶ୍ରଦ୍ଧାବାନ୍ ଲଭତେ ଜ୍ଞାନମ୍ ।"

ଜ୍ଞାନ ଲାଭରେ ଶ୍ରଦ୍ଧା ବା ବ୍ୟାକୁଳତା ହେଉଛି ପ୍ରଥମ ସୋପାନ । ପାଶ୍ଚାତ୍ୟ ଦାର୍ଶନିକମାନେ ମଧ୍ୟ ଏହା ଉପରେ ବିଶେଷ ଗୁରୁତ୍ୱ ଦେଇଅଛନ୍ତି । ଶିକ୍ଷାରେ ଶ୍ରଦ୍ଧାଲାଭ କରିବା ଉପରେ ରୁଷୋ, ପେଷ୍ଟାଲଜ୍‌ସି, ଫ୍ରୋବ୍‌ଲ୍ ମଣ୍ଟେସୋରୀ, ହ୍ୱାଇଟ୍ ହେଡ୍, ପ୍ରଭୃତି ବିଶେଷ ଗୁରୁତ୍ୱ ଦେଇ ଅଛନ୍ତି । ହ୍ୱାଇଟ୍ ହେଡ୍ ଶ୍ରଦ୍ଧାକୁ 'ରୋମାନସ୍' ବୋଲି ଅଭିହିତ କରିଅଛନ୍ତି । ମନୋବିଜ୍ଞାନୀମାନେ ଏହା ଉପରେ ଯେଉଁ ଗୁରୁତ୍ୱ ଦେଇଅଛନ୍ତି ତାହା ସମସ୍ତଙ୍କୁ ଜଣାଥିବାରୁ ଏଠାରେ ତା'ର ବିଶେଷ ଆଲୋଚନା କରାଗଲା ନାହିଁ । ଏହି ସନ୍ଦର୍ଭରେ ଏକଦା ବିଶିଷ୍ଟ କବି ଅନ୍ନଦାଶଙ୍କର ରାୟ, ଯେ କି ପରବର୍ତ୍ତୀ କାଳରେ ଆଇ ସି ଏସ୍ ପରୀକ୍ଷାରେ ପ୍ରଥମ ହୋଇଥିଲେ, ଢେଙ୍କାନାଳ ହାଇସ୍କୁଲ୍‌ର ସ୍ତୁତି ଚାରଣ କରି ଶିକ୍ଷକ ଏବଂ ଗ୍ରନ୍ଥାଗାର ପ୍ରତି ପ୍ରଗାଢ଼ ଶ୍ରଦ୍ଧା ନିବେଦନ କରିଅଛନ୍ତି । ଢେଙ୍କାନାଳ ହାଇସ୍କୁଲ୍ ଶିକ୍ଷକମାନେ ଏପରି ତନ୍ମୟ ହୋଇ ପାଠ ପଢ଼ାଉଥିଲେ ଯେ ଅନ୍ନଦାଶଙ୍କର ରାୟ ତାଙ୍କୁ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ମନେ ରଖିଥିଲେ । ମୋର ମଧ୍ୟ ସେହି ପ୍ରକାର ଅନୁଭୂତି । ସେଠାରେ ସମସ୍ତ ଶିକ୍ଷକ ତନ୍ମୟ ହୋଇ ପାଠ ପଢ଼ାଉଥିଲେ । ଏହି ତନ୍ମୟତା ମୁଁ ରେଭେନ୍‌ସା କଲେଜରେ ମଧ୍ୟ ଦେଖିଛି । ପ୍ରଫେସର୍ ରତ୍ନାକର ପତି, ଭି.ଭି.ଜନ୍, ଘନଶ୍ୟାମ ଦାଶ ପ୍ରଭୃତି ଏପରି ତନ୍ମୟ ହୋଇ ପାଠ ପଢ଼ାଉଥିଲେ ଯେ ସେମାନେ ପଢ଼ାଉଥିବା ବିଷୟବସ୍ତୁ ଛାତ୍ରମାନଙ୍କ ମନରେ

ଚିରଦିନ ପାଇଁ ଛାପି ହୋଇଯାଇଥିଲା । ବର୍ତ୍ତମାନ ମଧ୍ୟ ସ୍କୁଲ୍ ଏବଂ କଲେଜରେ ଏପରି ଅନେକ ଶିକ୍ଷକ ଅଛନ୍ତି, କିନ୍ତୁ ସେମାନେ ଆତ୍ମପ୍ରଚାର ବିରୋଧୀ ହୋଇଥିବାରୁ ଲୋକ ଲୋଚନକୁ ଆସିପାରୁନାହାନ୍ତି । କିନ୍ତୁ ଛାତ୍ରମାନଙ୍କ ମାନସପଟରେ ଜାଗ୍ରତ ଅଛନ୍ତି ।

ବର୍ତ୍ତମାନ ବିଭିନ୍ନ ଦେଶରେ ଶିକ୍ଷା ବ୍ୟବସ୍ଥାର ଅଭୂତପୂର୍ବ ପରିବର୍ତ୍ତନ ଦେଖାଦେଇଛି । ଶିକ୍ଷାବ୍ୟବସ୍ଥାକୁ ଏକ ଶିଳ୍ପ ବୋଲି ଧରାଗଲାଣି । ଆଡ଼ାମ୍ ସ୍ମିଥ୍ ଓ ତାଙ୍କ ପରବର୍ତ୍ତୀ ଅର୍ଥନୀତିଜ୍ଞମାନେ ଶିକ୍ଷାକୁ "ଅର୍ଥର ଅପଚୟ" ଭାବରେ ମନେ ନକରି ମାନବୀୟ ପାରଦର୍ଶିତାର ବିକାଶ ନିମିତ୍ତ ପୁଞ୍ଜି ନିବେଶ ଭାବରେ ଗ୍ରହଣ କରୁଅଛନ୍ତି । ଶିକ୍ଷା ଏକ ଶିଳ୍ପ ଭାବରେ ପରିଗଣିତ ହେଉଥିବାରୁ ଶିଳ୍ପ ଜଗତ ଓ ଶିକ୍ଷାଜଗତ ମଧ୍ୟରେ ସମନ୍ୱୟ ରଖିବାର ପ୍ରୟାସ ଚାଲିଛି । ଶିଳ୍ପଜଗତର 'ଜାର୍ଗନ' ଗୁଡ଼ିକ ଶିକ୍ଷାଜଗତ ଉପରେ ଆକ୍ରମଣ କରିବା ଆରମ୍ଭ ହୋଇଛି । ଗ୍ୟୁଲିକ୍ ଓ ଅରିଚ୍ POSDCORB ନାମରେ 'ଏକ୍ରୋନିମ' ଉଦ୍‌ଭାବନ କରିଥିଲେ । ଏହା ଶିଳ୍ପ ଜଗତ ସହିତ ଶିକ୍ଷାଜଗତରେ ମଧ୍ୟ ଅନୁସୃତ ହେଉଛି । ପ୍ରବନ୍ଧର କଳେବର ବୃଦ୍ଧି ପାଇବା ଆଶଙ୍କାରେ ଏହାର ବିସ୍ତୃତ ଆଲୋଚନା କରିବାରୁ ବିରତ ହେଉଛି । କେବଳ ଏତିକି ସୂଚାଇ ଦେବାକୁ ଚାହେଁ ଯେ ଉଚ୍ଚ ଆଧ୍ୟାତ୍ମିକ ଆଦର୍ଶ ପରିବର୍ତ୍ତେ ବ୍ୟବସାୟିକ କାର୍ଯ୍ୟ ଦକ୍ଷତା ଶିକ୍ଷକଙ୍କୁ ଏକ 'ଚେଂଜ ଏଜେଣ୍ଟ', 'କେଟାଲିଷ୍ଟ', ବା 'ଫେସିଲିଟେଟର' ଏବଂ ଶିକ୍ଷାଦାନକୁ 'କରିକୁଲମ ଟ୍ରାନଜେକସନ୍' ଭାବରେ ଗ୍ରହଣ କରାଗଲାଣି । ଶିକ୍ଷକମାନେ ବେପାରୀ (Business man) ଭାବରେ ସମାଜରେ ଗଣା ହେଉଛନ୍ତି । ଶିଳ୍ପ ଶ୍ରମିକମାନଙ୍କ ପରି ଶିକ୍ଷକମାନେ ମଧ୍ୟ ଶ୍ରମିକ ଭାବରେ ଗୃହିତ ହେଲେଣି । ଶିଳ୍ପ ଶ୍ରମିକମାନେ ଯେଉଁ ପନ୍ଥା ଅବଲଂବନ କରି ନିଜର ଲକ୍ଷ୍ୟ ସାଧନ କରୁଥିଲେ, ଶିକ୍ଷକମାନେ ମଧ୍ୟ ସେହି ପନ୍ଥା ଅନୁସରଣ କରୁଅଛନ୍ତି । ଏହି ସବୁ କାରଣରୁ ଶିକ୍ଷକ ଓ ଛାତ୍ରର ସମ୍ବନ୍ଧ କ୍ରେତା ଓ ବିକ୍ରେତା ଭାବରେ ଦେଖାଦେଲାଣି ।

ଆଉ କେତେଗୋଟି ବିଷୟର ସମ୍ୟକ୍ ସୂଚନା ଦେଇ-ପ୍ରବନ୍ଧର ଉପସଂହାର କରୁଅଛି । ଶିକ୍ଷକ ଓ ଛାତ୍ର ମଧ୍ୟରେ ଭାବର ଆଦାନପ୍ରଦାନ ଅଧିକ ହେବା ଆବଶ୍ୟକ । ଏହାଦ୍ୱାରା ଛାତ୍ର ଶିକ୍ଷକ ଆଲୋଚନା କରିଥିବା ବିଷୟଗୁଡ଼ିକ ଉପରେ ଅଧିକ ପରୀକ୍ଷା କରି ଶିକ୍ଷକଙ୍କୁ ବିଭିନ୍ନ ପ୍ରକାର ପ୍ରଶ୍ନବାଣ ଦ୍ୱାରା ସଂଶୟ ଦୂର କରି ପାରିବ । ଶିକ୍ଷାର୍ଥୀ ସର୍ବଦା ଶିକ୍ଷକଦିଆ ଉତ୍ତରକୁ ମାନିନେବା କଥା

ନୁହେଁ। ସେ ପ୍ରଶ୍ନ ପଚାରିବାର କଳା ଶିଖିବା ଆବଶ୍ୟକ। ମୋ ମତରେ ଶିକ୍ଷକମାନେ ପାଠ୍ୟପୁସ୍ତକ ବହିର୍ଭୂତ ଅଧିକ ଜ୍ଞାନ ଆହରଣ କରିବା ଆବଶ୍ୟକ। Electronic media ର ପ୍ରୟୋଗ ହେବା ଆବଶ୍ୟକ। ଶିକ୍ଷକମାନେ କେବଳ ପୁସ୍ତକ ମଧ୍ୟରେ ଆବଦ୍ଧ ହେବା ଉଚିତ୍ ନୁହେଁ। ସେମାନେ ଅହରହ ନିଜ ଜ୍ଞାନର ଅଭିବୃଦ୍ଧି ଘଟାଇବା ଆବଶ୍ୟକ। ଶିକ୍ଷକଙ୍କୁ ଜନସଖ୍ୟା ବିସ୍ଫୋରଣ, ଜ୍ଞାନର ବିସ୍ଫୋରଣ ଏବଂ ଆଶାର ବିସ୍ଫୋରଣ ପ୍ରତି ସଜାଗ ରହିବା ଉଚିତ୍। ଏକଦା ମୁଁ ଜଣେ ଶିକ୍ଷକଙ୍କୁ ପଚାରିଲି ଯେ ଆପଣ ନିଜର ଜ୍ଞାନ ଅଭିବୃଦ୍ଧି ସାଧନ ପାଇଁ କ'ଣ କରୁଅଛନ୍ତି ? ସେ ଉତ୍ତର ଦେଲେ "ମୁଁ କ'ଣ ଆଇଏଏସ୍ ପରୀକ୍ଷା ଦେବି ଯେ ମୋ ପାଇଁ ଏହା ଦରକାର ପଡ଼ିବ।" ଏପରି ଶିକ୍ଷକମାନେ ଦୀର୍ଘ ୩୫ ବର୍ଷ ଚାକିରି କରି କେଉଁ ପ୍ରକାର ଛାତ୍ର ସୃଷ୍ଟି କରିପାରିବେ ତାହା ସମସ୍ତଙ୍କର ବିଚାର କରିବାର କଥା। କେବଳ ପାଠ୍ୟକ୍ରମ ଭିତରେ ସୀମାବଦ୍ଧ ରହି କାର୍ଯ୍ୟ କରିବା ଉଚିତ୍ ନୁହେଁ। ମୋ ନିଜର ଏକ ଅନୁଭୂତି କଥା କହିଲେ ଅପ୍ରାସଙ୍ଗିକ ହେବ ନାହିଁ ବୋଧହୁଏ। ରୁଷୋଙ୍କ ଶିକ୍ଷାନୀତି ବିଷୟରେ ଟ୍ରେନିଂ କଲେଜମାନଙ୍କରେ ପଢ଼ାଯାଇଥାଏ। ଶିକ୍ଷକ ସମକାଳୀନ ଶିକ୍ଷା ବ୍ୟବସ୍ଥା, ରାଜନୀତି, ଫରାସୀ ବିପ୍ଳବ ପ୍ରଭୃତି ବିଷୟରେ ବିଭିନ୍ନ ପୁସ୍ତକ ଏବଂ ଜ୍ଞାନକୋଷ ପାଠ କରିପାରିଲେ ରୁଷୋଙ୍କ ଶିକ୍ଷାନୀତିକୁ ଭଲ ଭାବରେ ବୁଝାଇ ପାରିବେ। ଏହିପରି ଶିକ୍ଷାଦାନ ହେଲେ ଶିକ୍ଷାନୁଷ୍ଠାନଗୁଡ଼ିକରେ ବିଶୃଙ୍ଖଳା ଅନେକ ପରିମାଣରେ ହ୍ରାସ କରାଯାଇପାରନ୍ତା। ମୋର ଦୀର୍ଘ ଶିକ୍ଷକତା ଜୀବନ କାଳ ଭିତରେ ମୁଁ ବିଶୃଙ୍ଖଳିତ ଶିକ୍ଷକ ବା ଛାତ୍ର ସମୂହଟିଏ ଦେଖିନାହିଁ। ଅଳ୍ପ ସଂଖ୍ୟକ ଛାତ୍ର ଅଳ୍ପ ସମୟ ପାଇଁ ଅବାଟକୁ ଚାଲିଯାଆନ୍ତି। ପରେ ସେମାନେ ବାଟକୁ ଫେରି ଆସିଥାଆନ୍ତି।

ଶିକ୍ଷକମାନେ ଏପରିଭାବରେ ପାଠ ପଢ଼ାଇବା ଉଚିତ୍ ଯାହା ଦ୍ୱାରା ଛାତ୍ର ମନରେ ନାନା ପ୍ରକାର ଆନ୍ଦୋଳନ ସୃଷ୍ଟି ହୋଇ ତାକୁ ଦ୍ୱିଧାରେ ପକାଇବ। ସଠିକ୍ ଉତ୍ତର ଡାକି ଦେବା ଶିକ୍ଷକର କାମ ନୁହେଁ। ଅନ୍ୟଥା ଛାତ୍ର ନିଜ ପ୍ରଚେଷ୍ଟାରେ ଅଧ୍ୟୟନ କରି ସତ୍ୟ ଉପଲବ୍ଧି କରିପାରିବ ନାହିଁ। ହେଗେଲ୍ଙ୍କ ଭାଷାରେ- The owl of Minerva (The bird of wisdom) takes its flight when twilight shadows fall.

ସମାଜରେ ପୁରାତନ ଓ ନୂତନର ସଂଘର୍ଷ ଏବଂ ଶିକ୍ଷା ବ୍ୟବସ୍ଥାରେ ବ୍ୟବସାୟିକ ମନୋବୃତ୍ତି ପ୍ରକାଶିତ ହେଉଥିବାରୁ ମାନବୀୟ ମୂଲ୍ୟବୋଧଗୁଡ଼ିକର

ଅବକ୍ଷୟ ହେବାରେ ଲାଗିଛି। ଏହି ପରିସ୍ଥିତି ସମସ୍ତଙ୍କୁ ବିଶେଷ ଭାବରେ ଆନ୍ଦୋଳିତ କରୁଅଛି। କିନ୍ତୁ ଯେତେ ଯାହା କଲେ ସୁଦ୍ଧା ଶିକ୍ଷାରେ ମୂଲ୍ୟବୋଧ ଆଣିବାର ପ୍ରଚେଷ୍ଟା ସୁଫଳବତୀ ହେବାର ପ୍ରାୟ ଦେଖା ଯାଉନାହିଁ। ଫରାସୀ ଦର୍ଶନିକ ଜାଁ ପଲ୍ ସାର୍ତ୍ରେ, ଯେ କି ଉତ୍ତର-ଆଧୁନିକବାଦର ଅନ୍ୟତମ ପ୍ରବକ୍ତା, କହୁଥିଲେ, ବର୍ତ୍ତମାନ ସମୟରେ ମୂଲ୍ୟବୋଧ କଥା କହିଲେ ପାଟି ଖନିମାରିଯିବ। (value is a terrible bussiness ! you will only stammer when you talk about values.) ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ଉପରେ ସମାଜର ଏପରି ଉଗ୍ରଚାପ ପଡୁଛି ଯେ ସେମାନଙ୍କ ପାଇଁ ସମାଜର ପୁରାତନ ମୂଲ୍ୟବୋଧକୁ ରକ୍ଷାକରିବା ସମ୍ଭବପର ହେଉନାହିଁ। ଏହାର ଅର୍ଥ ନୁହଁ ଯେ ନୂତନତାକୁ ବିରୋଧ କରିବା ଉଚିତ୍। ଏଠାରେ କାଳିଦାସଙ୍କ "ମାଳବିକାଗ୍ନି ମିତ୍ର" ନାଟକର ଏକ ଶ୍ଳୋକ ମନକୁ ଆସୁଛି :

> ପୁରାଣମିତ୍ୟେବ ନ ସାଧୁ ସର୍ବଂ
> ନଚାପି କାବ୍ୟ ନବମିତ୍ୟବଦ୍ୟମ୍
> ସନ୍ତଃ ପରୀକ୍ଷାନ୍ୟତରେ ଭଜନ୍ତେ
> ମୂଢ଼ଃ ପରପ୍ରତ୍ୟୟନେୟ ବୁଦ୍ଧିଃ ।।

ଶ୍ଳୋକର ଭାବାର୍ଥ-

ପୁରାତନ ହେଲା ବୋଲି ଏହାକୁ ସମସ୍ତେ ଗ୍ରହଣ କରିବା ଉଚିତ୍ ନୁହେଁ। ପୁନଶ୍ଚ ନୂତନତାକୁ ମଧ୍ୟ ସବୁବେଳେ ଉତ୍ତମ ବୋଲି ମନେ କରାଯାଇପାରିବ ନାହିଁ। ବିଜ୍ଞ ଲୋକମାନେ ଉପଯୁକ୍ତ ପରୀକ୍ଷା କରି କେଉଁ ବସ୍ତୁ ଗ୍ରହଣୀୟ ଏବଂ କେଉଁ ବସ୍ତୁ ଗ୍ରହଣଯୋଗ୍ୟ ନୁହେଁ ତାହା ନିର୍ଣ୍ଣୟ କରିଥାନ୍ତି। କିନ୍ତୁ ବିବେକହୀନ ମନୁଷ୍ୟର ଚିନ୍ତାଧାରା ଅନ୍ୟମାନଙ୍କ ଦ୍ୱାରା ସ୍ଥିରୀକୃତ ହୋଇଥିବାରୁ ସେ ଏହା କରିବାରୁ ବଞ୍ଚିତ ହୋଇଥାଏ।



# ମୋ ଦୃଷ୍ଟିରେ, ଅନୁଭୂତିରେ ଆଦର୍ଶ ଶିକ୍ଷକ

ସର୍ବେଶ୍ୱର ଦାଶ

ଛାତ୍ରଜୀବନର ପ୍ରାଥମିକ ସ୍ତରଠାରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ମୁଁ କେତେ ଶିକ୍ଷକ, ଅଧ୍ୟାପକଙ୍କଠାରୁ ଶିକ୍ଷା ଲାଭ କରିଛି, ସେମାନଙ୍କ କଥା ଏବେ ସ୍ମରଣ କଲେ ପ୍ରାୟ ସମସ୍ତେ ମନେ ହେଉଛନ୍ତି ଆଦର୍ଶ ଶିକ୍ଷକ। ସେ ସମୟର ଅଧିକାଂଶ ଶିକ୍ଷକଙ୍କ ପାଇଁ ଶିକ୍ଷକତା ଜୀବିକା ଅର୍ଜନ ପାଇଁ ଏକ ବୃତ୍ତି ମାତ୍ର ନଥିଲା - ଥିଲା ଏକ ମିଶନ୍, ମଣିଷ ଗଢ଼ିବା ମିଶନ୍-ମହତ୍ ଉଦେଶ୍ୟ ସେମାନଙ୍କୁ ସର୍ବଦା ଉଦ୍‌ବୁଦ୍ଧ କରିଥିଲା। ସମସ୍ତ ଛାତ୍ରସମାଜ ଯେପରି ଥିଲେ ସେମାନଙ୍କ ପରିବାର। ସ୍ନେହର ଗଙ୍ଗୋତ୍ରି ସେମାନଙ୍କ ହୃଦୟରୁ ବୋହି ଯାଉଥିଲା ଶତ ଶତ ଛାତ୍ରଙ୍କ ହୃଦୟକୁ ପ୍ଲାବିତ କରି।

ଆଜି ବିଶେଷ ଭାବରେ ମନେ ପଡୁଛନ୍ତି ମୋର ସ୍କୁଲ୍ ଶିକ୍ଷକ ଗଣ। ସର୍ବାଦୌ ମନେ ପଡୁଛନ୍ତି ପୁରୀ ଜିଲ୍ଲା ସ୍କୁଲ୍‌ର କ୍ଷିତୀଶ ଚନ୍ଦ୍ର ଦେ। ମୁଁ ସେହି ସ୍କୁଲ୍‌ରେ ପଢ଼ିଥିଲି ୧୯୩୫ ରୁ ୧୯୪୦ ପର୍ଯ୍ୟନ୍ତ। ସେତେବେଳେ ସ୍କୁଲ୍‌ରେ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ି ମାଟ୍ରିକୁଲେସନ୍ ପରୀକ୍ଷା (ଏବର ସେକେଣ୍ଡାରୀ ବୋର୍ଡ ପରୀକ୍ଷା) ଦେବାକୁ ହେଉଥିଲା। ସପ୍ତମ, ଅଷ୍ଟମ ଓ ନବମ ଶ୍ରେଣୀରେ। କ୍ଷିତୀଶ ବାବୁ ଆରଂଭରେ କୌଣସି କ୍ଲାସ୍ ନେଉ ନଥିଲେ। ସେ ଇଂରାଜୀରେ ଏମ୍.ଏ. ପାସ୍ କରିଥିଲେ। ସେ ସମୟର ଆମର ହେଡ଼ମାଷ୍ଟର ବିଲାତ ଫେରନ୍ତା ହରିହର ମିଶ୍ରଙ୍କର ସହପାଠୀ ଥିଲେ। ଦଶମ ଓ ଏକାଦଶ ଶ୍ରେଣୀରେ ସେ ଆମକୁ ଇଂରାଜୀ ପଢ଼ାଇଲେ।

ନାତି ଉଚ୍ଚ ପୃଥଳ ମଣିଷଟିଏ। ସ୍କୁଲ୍‌କୁ ପ୍ରାୟ ଅଧିକାଂଶ ଦିନ ପେଣ୍ଟ୍ ସାର୍ଟ ପିନ୍ଧି ଆସନ୍ତି। (ସେତେବେଳେ ଛାତ୍ରମାନଙ୍କ ପରି ପ୍ରାୟ ସବୁ ଶିକ୍ଷକ ଧୋତି ସାର୍ଟ କି ଧୋତି ପଞ୍ଜାବି ପିନ୍ଧି ଆସୁଥିଲେ) ତେବେ ଫେସନ୍ ନଥାଏ - ଟାଇ ନଥାଏ। ସାଧାରଣ ଭାବରେ ପିନ୍ଧିଥାନ୍ତି।

ସ୍କୁଲ୍‌ରେ ପ୍ରଥମ ଦୁଇ ତିନି ବର୍ଷ ଆମର କ୍ଲାସ୍ ନେଉ ନଥିଲେ ମଧ୍ୟ ଆମେ ତାଙ୍କର ସମ୍ପର୍କରେ ଆସିଥିଲୁ ବିଭିନ୍ନ ପାଠ୍ୟବର୍ହିଭୂତ କାର୍ଯ୍ୟକ୍ରମରେ। ମୁଁ ସ୍କାଉଟ୍

ହୋଇଥିଲି । ଗୋଟିଏ ପ୍ରାଦେଶିକ କାମ୍ବୋରି ବା ସ୍କାଉଟ୍ ମେଳା ପୁରୀରେ ହେବାର ଥାଏ । କ୍ଷିତୀଶ ବାବୁ ହାରମୋନିୟମ୍ ଧରି ଆମକୁ ସବୁ ଏକ ସମବେତ ସଂଗୀତ ଶିଖାଇଲେ। ଗୀତଟି ସେ ନିଜେ ଲେଖିଥା'ନ୍ତି, ସୁର ବି ଦେଇଥା'ନ୍ତି। ଗୀତର ପ୍ରଥମ ଧାଡ଼ି ମନେ ପଡୁଛି। "ଆମେ ସେବକ ସାଧନାପନ୍ଥୀ, ଆମେ ଦୀକ୍ଷିତ ଅଭିନବ ମନ୍ତ୍ରେ, ଗାଅ ବନ୍ଧୁଗଣ ଗାଅ" ଅନ୍ୟ ସମୟରେ ମଧ୍ୟ ହାର୍‌ମୋନିୟମ୍ ବଜାଇ ଗାଇବାର, ଛାତ୍ରମାନଙ୍କୁ ଗୀତ ଶିଖାଇବାର ଦେଖିଛି ।

ସାହିତ୍ୟ ସଂଗୀତ ରସିକ ଥିଲେ ସେ । ଗୀତ ଲେଖନ୍ତି, ସ୍ୱର ଦିଅନ୍ତି, କବିତା ଲେଖନ୍ତି । ମୟୂରଭଞ୍ଜରୁ ସେ ସମୟରେ ପ୍ରକାଶିତ ହେଉଥିବା ବିଖ୍ୟାତ ସାହିତ୍ୟ ପତ୍ରିକା 'ଭଞ୍ଜ ପ୍ରଦୀପ'ରେ ତାଙ୍କର କବିତା, ପ୍ରବନ୍ଧମାନ ପ୍ରକାଶିତ ହେଉଥିଲା । ପରେ ୧୯୪୧-୪୨ରେ ମାୟାଧର ମାନସିଂହଙ୍କ ଦ୍ୱାରା ସଂପାଦିତ 'ଆରତି' ପତ୍ରିକାରେ ତାଙ୍କର କବିତା ପଢ଼ିଛି-ଛନ୍ଦାୟିତ, କୋମଳ, ରୋମାଣ୍ଟିକ୍ କବିତା ।

କୌଣସି ଛାତ୍ରଠାରେ ସାହିତ୍ୟିକ ପ୍ରତିଭାର ଉନ୍ମେଷ ଲକ୍ଷ୍ୟ କଲେ, ତାହାକୁ ସେ ଉତ୍ସାହିତ କରୁଥିଲେ। ତାଙ୍କ ସାଙ୍ଗକୁ ଥିଲେ ପୀତାମ୍ବର କର, ସପ୍ତମ, ଅଷ୍ଟମ, ନବମ ଶ୍ରେଣୀର ଇଂରାଜୀ ଶିକ୍ଷକ। ସେ ହିଁ ପ୍ରଥମେ ମୋତେ ଲେଖାଲେଖି କରିବାକୁ ଉତ୍ସାହିତ କରିଥିଲେ। ଆମେ ନବମ ଶ୍ରେଣୀରେ ପଢ଼ିଲା ବେଳେ ଅକାଳରେ ତାଙ୍କର ମୃତ୍ୟୁ ହୋଇଗଲା ।

କ୍ଷିତୀଶ ବାବୁ ଆମ ସ୍କୁଲ୍‌ର ପତ୍ରିକା 'ମହୋଦଧି'ର ସଂପାଦକ ଥିଲେ। ମୁଁ ନବମ କି ଦଶମ ଶ୍ରେଣୀରେ ପଢ଼ିଲା ବେଳେ ଗୋଟିଏ ଓଡ଼ିଆ କବିତା ଲେଖିଥିଲି । ତାହା ସେ କୌଣସି ଭାବରେ ପରିବର୍ତ୍ତନ ନ କରି ପ୍ରକାଶ କରିଥିଲେ। ସେତେବେଳକୁ ମୁଁ ବହୁ ବଙ୍ଗଳା ଉପନ୍ୟାସ ଓ ନାଟକ ପଢ଼ିସାରିଥିଲି। ବୁଝେଁ କି ନ ବୁଝେଁ ରବୀନ୍ଦ୍ରନାଥ ଠାକୁରଙ୍କର 'ଗୀତାଞ୍ଜଳି' ପଢ଼ିସାରିଥିଲି, ସାହସ କରି ଗୋଟିଏ ବଙ୍ଗଳା କବିତା ଲେଖିଲି। ତାହା ମଧ୍ୟ ସେ କିଛି ପରିବର୍ତ୍ତନ ନ କରି ପ୍ରକାଶ କଲେ। ମତେ ବଧାଇ ଦେଲେ। ଉତ୍ସାହିତ ହୋଇ ଆଉ ଗୋଟିଏ ବଙ୍ଗଳା କବିତା ଲେଖିଲି। କବିତାର ଶେଷ ଧାଡ଼ିଟି ଥିଲା - ଦୀନେର ସାକେତେ ତୁଇ ଦୀନେର ଦୁଆରେ, ପ୍ରେମେର ଭିଖାରୀ ହ ଓ ଆର ଏକବାରେ। ଆମ ଆମ ସ୍କୁଲ୍‌ର ପରମ ସ୍ନେହୀ ବଙ୍ଗଳା ଶିକ୍ଷକ ପଣ୍ଡିତ ଭୋଳାନାଥ ଗାଙ୍ଗୁଲି ସେଇ ଧାଡ଼ିରେ ଗୋଟିଏ ଶବ୍ଦ ପରିବର୍ତ୍ତନ କଲେ। ଦ୍ୱିତୀୟ 'ଦୀନେର" ଶବ୍ଦ ବଦଳାଇ

"ହ୍ୱୀନେର" କଲେ । ସେ ବି କ୍ଷିତୀଶ ବାବୁଙ୍କ ପରି ମତେ ବଡ଼ ଉତ୍ସାହିତ କଲେ । କ୍ଷିତୀଶ ବାବୁ କବିତାଟିର ଉଲ୍ଲସିତ ପ୍ରଶଂସା କଲେ । ତାଙ୍କର ବୋଧହୁଏ ଟିକିଏ ସନ୍ଦେହ ହେଲା- ରବୀନ୍ଦ୍ରନାଥଙ୍କ କିଛି ଧାଡ଼ି ସେହି କବିତାରେ ଅଛି କି ? ନିରପେକ୍ଷ, ବିବେକପରାୟଣ ସମ୍ପାଦକ ରୂପେ ସେ 'ଗୀତାଞ୍ଜଳି', 'ସଞ୍ଚୟିତା' ଇତ୍ୟାଦି ପଢ଼ିଲେ - ନିଶ୍ଚିତ ହେଲେ ଯେ ତା' ନୁହେଁ, କବିତାଟି ମୋର ମୌଳିକ ।

ସେ କ୍ଲାସ୍‌ରେ ପଢ଼ାନ୍ତି ଇଂରାଜୀ ଗଦ୍ୟ ଓ ପଦ୍ୟ - (ଦ୍ୱିତୀୟ ପତ୍ର) । ଚିତ୍ତାକର୍ଷକ ଭାବରେ ପଢ଼ାନ୍ତି । ସ୍ୱର ତାଙ୍କର ଗାଢ଼ ମଧୁର । କବିତାଟିଏ ପଢ଼ାଉଥିଲେ, ତାହା ପ୍ରଥମେ ଆବୃତ୍ତି କରନ୍ତି । ଆବୃତ୍ତିର ମାଧ୍ୟମରେ କବିତାର ମର୍ମ, ଯେପରି ଆମ ହୃଦୟକୁ ସଞ୍ଚାରିତ କରି ଦିଅନ୍ତି । କଠିନ ଅଂଶଗୁଡ଼ିକ ବୁଝାଇ ଦିଅନ୍ତି - ଆଗକୁ ଆମ ନିଜ ଭାଷାରେ ଲେଖିବାକୁ କହନ୍ତି । କେବେ କେବେ ନିଜେ ସରଳ ଭାଷାରେ ଭାବାର୍ଥ ଡାକି ଦିଅନ୍ତି । ତାଙ୍କର ଭାଷା ମୋତେ ଭଲ ଲାଗୁଥିଲା । ବିଶେଷତଃ ଗୋଟିଏ ଗୋଟିଏ 'ଫ୍ରେଜ୍' ତାଙ୍କର ଅଭୁଲା ରହିଯାଉଥିଲା । 'Nod' ନାମକ କବିତାର ଭାବାର୍ଥ ଦେବାକୁ ଯାଇ ସେ ଆରମ୍ଭ କରିଥିଲେ, "In the gathering gloom of the evening.......". ଏହି ପ୍ରାରମ୍ଭିକ ବାକ୍ୟାଂଶଟି ଆଜି ପର୍ଯ୍ୟନ୍ତ ମୋ ମନରେ ଲାଗି ରହିଛି । ପରବର୍ତ୍ତୀ କାଳରେ ଇଂରାଜୀ ଅଧ୍ୟାପକ ରୂପେ କେବେ କେବେ ତାହା ନିଜେ ବ୍ୟବହାର କରିବାକୁ ପ୍ରଲୋଭିତ ହୋଇଅଛି ।

ସେଇପରି ମନେ ପଡୁଛି, ଇଂରାଜୀ ଗଦ୍ୟ ସଞ୍ଚୟନରେ ଥାଏ, ରବି ଠାକୁରଙ୍କର ତିନୋଟି ଗଳ୍ପ - "ଦ ଚାଇଲ୍‌ଡ୍‌ସ ରିଟର୍ଣ୍ଣ", "ଦ କାବୁଲିବାଲା", "ଦ ପୋଷ୍ଟମାଷ୍ଟର" । ସେହି ମର୍ମସ୍ପର୍ଶୀ ଗଳ୍ପଗୁଡ଼ିକ କ୍ଷିତୀଶ ବାବୁ ଏପରି ସୁନ୍ଦର ଭାବରେ ପଢ଼ାଇଥିଲେ ଯେ ଦ ଚାଇଲ୍‌ଡସ ରିଟର୍ଣ୍ଣର ରାଇଚରଣ, ଦ କାବୁଲିବାଲାର କବୁଲିବାଲା ଓ ମିନି, ଏବଂ ପୋଷ୍ଟମାଷ୍ଟରର ରତନ ଆଜି ପର୍ଯ୍ୟନ୍ତ ଅଭୁଲା ରହିଛନ୍ତି । କ୍ଷିତୀଶ ବାବୁ ପଢ଼ାଇ ପଢ଼ାଇ ନିଜେ ଅଭିଭୂତ ହୋଇଯାଉଥିଲେ, ଆମକୁ ଅଭିଭୂତ କରି ଦେଉଥିଲେ । ସାହିତ୍ୟର ରସ ଉପଲବ୍ଧି କରିବା ପାଇଁ ଯେଉଁ ସହୃଦୟତା ଦରକାର ତା'ର ମୂଳଦୂଆ ସେ ଦେଇଥିଲେ ଆମ ଭିତରେ । ସାହିତ୍ୟ ରସରେ ପ୍ଲାବିତ କରିଦେଇଥିଲେ ଆମର ତରଳ ହୃଦୟଗୁଡ଼ିକୁ । ଆମର ସର୍ଜନା ଶକ୍ତିକୁ ଉଦ୍‌ବୁଦ୍ଧ କରୁଥିଲେ । ପାଠ ପଢ଼ାଇଲା

ବେଳେ ଆନୁଷଙ୍ଗିକ ବ୍ୟାକରଣଗତ ନୀତିନିୟମ ଦର୍ଶାଉଥିଲେ। କିନ୍ତୁ ରସବୋଧ ସୃଷ୍ଟି କରିବା ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା।

ଆଉ ଗୋଟିଏ ପିରିଅଡ଼ରେ ସେ ବ୍ୟାକରଣ ପଢ଼ାଉଥିଲେ। ନେସଫିଲ୍‌ଡ଼ ଗ୍ରାମାରର ଏ ମୁଣ୍ଡରୁ ସେ ମୁଣ୍ଡ ସେ ଯେପରି ଘୋଟି ବାଟି ଆମକୁ ପିଆଇ ଦେବାକୁ ଚେଷ୍ଟା କରିଥିଲେ। ବ୍ୟାକରଣ କ୍ଲାସ୍‌ରେ ସେ ବୁଝାନ୍ତି ଯେପରି, ପାଠ ଆଦାୟ ମଧ୍ୟ ସେହିପରି କରନ୍ତି। ବଡ଼ କଡ଼ା ସେତେବେଳେ ସେ। ଭୁଲ୍ ହେଲେ ଦଣ୍ଡ ଦିଅନ୍ତି। 'ଡିଟେନ' କରିଦିଅନ୍ତି ଛୁଟି ହେବାପରେ ଅଧଘଣ୍ଟାଏ। ମୋ ଭଳି ଭଲ ଛାତ୍ର ମଧ୍ୟ ବାଦ୍ ପଡ଼ନ୍ତି ନି। ସ୍ନେହ କଲେ ବି ମୋ ପ୍ରତି ପକ୍ଷପାତିତା ନଥିଲା।

ପାଠ ନ ପଢ଼ି କି ଖେଳରେ ମାତି ବାରମ୍ବାର ଫେଲ୍ ହେଉଥିବା ଛାତ୍ରମାନଙ୍କ ପ୍ରତି ସେ ଅତିରିକ୍ତ କଠୋର ନଥିଲେ। ହୃଦୟବାନ୍, କ୍ଷମାଶୀଳ ଥିଲେ ସେ। ଆମର ଯୋଉ ସହପାଠୀମାନେ ଗୁଣ୍ଡା ହୁଣ୍ଡା ବୋଲି ଜଣାଶୁଣା ସେମାନେ ତାଙ୍କ ପାଖରେ ଥିଲେ ମୂଷା ପରି। କେବଳ ମୂଷା ପରି ନୁହେଁ, ସମୟ ସମୟରେ ଥିଲେ ତାଙ୍କର ସାଥି।

ସେ ଭଲ ଛାତ୍ରଙ୍କୁ ଯେପରି ସ୍ନେହ କରୁଥିଲେ, ଭଲ ଖେଳାଳୀମାନଙ୍କୁ ମଧ୍ୟ ସେହିପରି ସ୍ନେହ କରୁଥିଲେ। ପ୍ରାୟ ପ୍ରତିଦିନ ସେ କଲେଜ ପଡ଼ିଆକୁ ଆସନ୍ତି। ସେଠି ମୋ ପରି ପାଠରେ ଭଲ ଛାତ୍ରମାନଙ୍କର ତାଙ୍କ ପାଖରେ ସ୍ଥାନ ନଥାଏ ବିଶେଷ - ଥାଏ ଭଲ ଖେଳାଳୀଙ୍କର। ତାଙ୍କରି ଖେଳ ଦେଖନ୍ତି। ତାଙ୍କରି ପାଖରେ ବସନ୍ତି। ଖେଳ ସରିଲେ ତାଙ୍କରି ସାଙ୍ଗରେ ଫେରନ୍ତି ଘରକୁ। ସେମାନଙ୍କ ମନ ଜୟ କରିଥା'ନ୍ତି। ସେମାନେ ବି ତାଙ୍କୁ ଖାଲି ଖାତିର୍ କରୁନଥାନ୍ତି, ବଡ଼ ସ୍ନେହ ଶ୍ରଦ୍ଧା କରୁଥାନ୍ତି, ବଡ଼ ଅନୁରକ୍ତ ଥା'ନ୍ତି ତାଙ୍କ ପ୍ରତି। ସେମାନଙ୍କୁ ସେ, ମୁଁ ଯେତେଦୂର୍ ଜାଣେ, ପ୍ରାୟ କିଛି ନ ନେଇ ଘଣ୍ଟା ଘଣ୍ଟା ପଢ଼ାନ୍ତି। ସାନ ଭାଇ ଭଳି ବ୍ୟବହାର କରନ୍ତି। ତରୁଣର ଉଦ୍ଦାମତା ସେ ବୁଝିଥିଲେ, କିଛିଟା ଉଚ୍ଛୃଙ୍ଖଳତାକୁ ସେ ସ୍ୱାଭାବିକ ବୋଲି ଧରି ନେଉଥିଲେ। ନିଜ ସ୍ନେହ, ସହୃଦୟତାରେ ସେମାନଙ୍କୁ ବାଟକୁ ଆଣିବାକୁ ଚେଷ୍ଟା କରୁଥିଲେ। ପିଲାଦିନୁ ଟିକିଏ 'ପ୍ୟୁରିଟାନ' ମୁଁ। ସମୟ ସମୟରେ ଆଶ୍ଚର୍ଯ୍ୟ ହୋଇଯାଉଥିଲି ତାଙ୍କର ସହିଷ୍ଣୁତା, କ୍ଷମାଶୀଳତା ଦେଖି।

ସବୁରି ଭିତରେ ମୋର ତାଙ୍କଠାରୁ ଥିଲା ଟିକିଏ ଦୂରତା - ମୁଁ ତାଙ୍କର ପ୍ରିୟ

ହୋଇଥାଏ ପାଠରେ, କିନ୍ତୁ ବ୍ୟକ୍ତିଗତ ଭାବରେ ଅତିରିକ୍ତ ପାଖ ହୋଇ ନଥାଏ। ତେବେ ଅନ୍ତରରେ ମୋର ତାଙ୍କ ପ୍ରତି ଥାଏ ଅତି ନିବିଡ଼ତା।

କ୍ଷୀତିଶ ବାବୁ ଆମକୁ ଭୂଗୋଳ ମଧ୍ୟ କିଛି କାଳ ପଢ଼ାଇଥିଲେ। ତାଙ୍କରି ହାତରେ ମୁଁ ପ୍ରଥମେ ଦେଖିଲି ଆମେରିକାର ନେସନାଲ୍ ଜିଓଗ୍ରାଫିକାଲ୍ ମାଗାଜିନ। ଆମର ଭୂଗୋଳ ପାଠ୍ୟକ୍ରମ ବର୍ହିଭୂତ ଅନେକ କଥା ସେହି ବହୁ ରଙ୍ଗ ବେରଙ୍ଗ ଚିତ୍ର ସମ୍ବଳିତ ପତ୍ରିକାରୁ ଆମକୁ ପଢ଼ି ସେ ଶୁଣାନ୍ତି। ବିଶେଷ ଦକ୍ଷତାର ସହିତ ସେ ଆମକୁ ପଢ଼ାଇଥିଲେ ଗାଣିତିକ ଭୂଗୋଳ (Mathematical Geography), ଯାହା ଆଇ.ଏ. ପରୀକ୍ଷା ପରେ ଯେତେବେଳେ ଅପ୍ରତ୍ୟାଶିତ ଭାବରେ ମତେ କିଛିଦିନ ପାଇଁ ବାଣପୁର ହାଇସ୍କୁଲ୍‌ରେ ଶିକ୍ଷକତା କରିବାକୁ ପଡ଼ିଲା, ମୁଁ ତାହା ଛାତ୍ରମାନଙ୍କୁ ଭଲ ଭାବରେ ପଢ଼ାଇ ପାରିଲି।

ସେ ବଙ୍ଗାଳୀ ଥିଲେ ମଧ୍ୟ ବଙ୍ଗାଳୀ-ଓଡ଼ିଆ ମଧ୍ୟରେ ପାତର ଅନ୍ତର କରୁନଥିଲେ। ଆମ କ୍ଲାସ୍‌ରେ ପାଞ୍ଚ ସାତଜଣ ବଙ୍ଗାଳୀ ଛାତ୍ର ଥାଆନ୍ତି। ସେମାନଙ୍କ ପ୍ରତି ସେ କୌଣସି ପକ୍ଷପାତିତା କରନ୍ତି ନାହିଁ। ଗ୍ରୀଷ୍ମାବକାଶ ବେଳେ ମଧ୍ୟେ ମଧ୍ୟେ ଗରମ ସମୁଦ୍ର କୂଳରେ ବଙ୍ଗଳାରୁ ଆଗତ ତରୁଣ ଛାତ୍ରଙ୍କ ସହିତ ଓଡ଼ିଆ ତରୁଣ ଛାତ୍ରଙ୍କର କାରଣ ଥାଉ ନ ଥାଉ ସଂଘର୍ଷ ଘଟେ। ଆମର ବଙ୍ଗାଳୀ ସାଂଗମାନେ ଓ କେତେକ ଓଡ଼ିଆ ଛାତ୍ର ମଧ୍ୟ ସମୟ ସମୟରେ ସେଥିରେ ସଂପୃକ୍ତ ହୋଇପଡ଼ନ୍ତି। କିନ୍ତୁ ଆମ ହେଡ଼ମାଷ୍ଟର ହରିବାବୁ ଓ କ୍ଷିତୀଶ ବାବୁଙ୍କ ଉଦାରତା ଓ ସୁକୌଶଳତା ହେତୁ ସେ ସବୁ ସଂଘର୍ଷର ଛାୟା ସ୍କୁଲ୍‌ରେ ପଡ଼େ ନାହିଁ।

ସ୍କୁଲ୍‌ରେ ନାଟକ ବା ନାଟକାଂଶ ପୁରସ୍କାର ବିତରଣୀ ସଭାରେ ଅଭିନୀତ ହେବାର ହେଲେ ସେ ଉତ୍ସାହର ସହିତ ଛାତ୍ରମାନଙ୍କୁ ଅଭିନୟରେ ତାଲିମ୍ ଦିଅନ୍ତି। ପୂଜାବକାଶରେ ପୁରୀରେ ପୁରୁଣା ଟାଉନ୍‌ହଲ୍ ସମ୍ମୁଖରେ ବଙ୍ଗଳା ଓ ଓଡ଼ିଆ ନାଟକମାନ ଅଭିନୀତ ହୁଏ। ସେଥିରେ ଆଗ୍ରହର ସହିତ ସେ ସହଯୋଗ କରୁଥିଲେ ଓ ସମୟ ସମୟରେ ବଙ୍ଗଳା ନାଟକମାନଙ୍କରେ ଅଭିନୟ ବି କରୁଥିଲେ।

ହାସ୍ୟରସର ତାଙ୍କଠି ଅଭାବ ନଥିଲା। ସମୟ ସମୟରେ ଦୃଶ୍ୟ ପ୍ରସଙ୍ଗ

ପଢ଼ିଲେ ନିଜେ ବର୍ଣ୍ଣନା ବି କରୁଥିଲେ ସେ । ହୋ ହୋ ହୋଇ ଉଚ୍ଚସ୍ୱରରେ ହସି ସ୍କୁଲ୍ କମ୍ପାଇ ଦିଅନ୍ତି । ତାଙ୍କର ଓ ପିତାମ୍ବର ବାବୁଙ୍କ ଉଦ୍ୟମରେ କିଛିକାଳ ଗୋଟିଏ ମାସିକିଆ ହାସ୍ୟରସାତ୍ମକ ପତ୍ରିକା 'ଲିଥୋ' ହୋଇ ବାହାରୁଥିଲା ।

ମୁଁ ତାଙ୍କୁ କେବେ ଅତିରିକ୍ତ ରାଗିବାର କି ଭାବପ୍ରବଣ ହେବାର ଦେଖିନାହିଁ । ଛାତ୍ରମାନଙ୍କର ସେ ସମୂହ ଉନ୍ନତି ପାଇଁ ସର୍ବଦା ଚେଷ୍ଟିତ ଥିଲେ । ଯଥାର୍ଥରେ ସେ ଥିଲେ ଛାତ୍ରମାନଙ୍କର "ଫ୍ରେଣ୍ଡ୍, ଫିଲୋସଫର ଓ ଗାଇଡ଼୍" ।

କେତେବର୍ଷ ପରେ ଦେଖାହୋଇଥିଲା ଇଂରାଜୀର ନୂତନ ବ୍ୟାକରଣ ବିଷୟକ ଏକ କର୍ମଶାଳାରେ । ତାହା ଅନୁଷ୍ଠିତ ହେଉଥିଲା ରାଧାନାଥ ଟ୍ରେନିଂ କଲେଜରେ । ସେତେବେଳେ ସେ ତାଙ୍କ ନିଜ ଜିଲ୍ଲା ବାଲେଶ୍ୱରରେ ଜିଲ୍ଲାସ୍କୁଲ୍‌ର ହେଡ୍‌ମାଷ୍ଟର ଥାନ୍ତି କି ଅବସର ଗ୍ରହଣ କରି ଏକ ମହିଳା ମହିଳାବିଦ୍ୟାଳୟରେ ଅଧ୍ୟକ୍ଷ ଥା'ନ୍ତି । ନେସଫିଲ୍‌ଡ଼୍ ବ୍ୟାକରଣର ଯେଉଁ ଛାପ ତାଙ୍କ ଯୋଗୁଁ ମୋ ମନରେ ସ୍କୁଲ୍ ବେଳେ ପଡ଼ିଥିଲା, ତା' ଫଳରେ ନୂତନ ବ୍ୟାକରଣ ନୀତି ଗ୍ରହଣ କରିବାର ମୋର ମାନସିକ ଅବସ୍ଥା ନଥିଲା । ତାଙ୍କର ତ ନଥିବା ସ୍ୱାଭାବିକ । ବହୁବର୍ଷ ପରେ ତାଙ୍କୁ ଦେଖି କୃତାର୍ଥ ହେଲି ।

ଆଉ କେତେକ ଆଦର୍ଶ ସ୍ଥାନୀୟ ଶିକ୍ଷକଙ୍କ କଥା ଆଜି ମନେ ପଡୁଛି । ଯଥା, ମୋର ସପ୍ତମ ଓ ଅଷ୍ଟମ ଶ୍ରେଣୀ ଇଂରାଜୀ ଶିକ୍ଷକ ପୀତାମ୍ବର କର । ସଂସ୍କୃତ ଶିକ୍ଷକ ପଣ୍ଡିତ ଫକୀର ମିଶ୍ର, ଗଣିତ ଶିକ୍ଷକ ଶେଖ୍ ତହିମୁଦ୍ଦିନ୍, ଇଂରାଜୀ ରଚ଼ନା ଶିକ୍ଷକ ଗଗନ ବିହାରୀ ରାୟ, ବଙ୍ଗଳା ଶିକ୍ଷକ ଭୋଳାନାଥ ଗାଙ୍ଗୁଲି, ଇତିହାସ ଶିକ୍ଷକ ଅପୂର୍ବ ସରକାର, ପ୍ରଭୃତି । ଶ୍ରେଣୀ କକ୍ଷରେ ଓ ଶ୍ରେଣୀ ବାହାରେ ସେମାନେ ଛାତ୍ରଙ୍କର ଉନ୍ନତି ପାଇଁ ସତ ଚେଷ୍ଟିତ ଥିଲେ । ନିଜର ସରଳ ଜୀବନଚ଼ର୍ଯ୍ୟା ତଥା ଛାତ୍ରବତ୍ସଳତା ପାଇଁ ସେମାନେ ଅବିସ୍ମରଣୀୟ ।

ହେଡ୍‌ମାଷ୍ଟର ହରିହର ମିଶ୍ର କ୍ଲାସ୍ ନେଉ ନଥିଲେ ମଧ୍ୟ ଅନୁଷ୍ଠାନର ଉନ୍ନତି ପାଇଁ, ଛାତ୍ରମାନଙ୍କର ସାମୂହିକ ଉନ୍ନତି ପାଇଁ ଉଦ୍ୟମ କରୁଥିଲେ । ପାଠ ଓ କ୍ରୀଡ଼ା ଉଭୟକୁ ସମାନ ସ୍ଥାନ ଦେଉଥିଲେ । ଛାତ୍ରମାନଙ୍କ ମଧ୍ୟରେ ସମୟାନୁବର୍ତ୍ତିତା ଓ ଶୃଙ୍ଖଳା ଜ୍ଞାନର ବିକାଶ ପାଇଁ ସେମାନଙ୍କୁ ଉଦ୍‌ବୁଦ୍ଧ କରୁଥିଲେ ।

ସରକାରୀ ଶିକ୍ଷା ପ୍ରଣାଳୀର ସଂକୀର୍ଣ୍ଣ ବେଷ୍ଟନୀ ଭିତରେ ଚାକିରିର,

ପରଧୀନତାର ଲୌହ ଶୃଙ୍ଖଳ ଭିତରେ ଥାଇ ଶିକ୍ଷକମାନେ ଯଥା ସମ୍ଭବ ଶିକ୍ଷାଦର୍ଶ ଅନୁସରଣ କରୁଥିଲେ।

ମୁଁ ପାଠ ଆରମ୍ଭ କଲାବେଳକୁ ସତ୍ୟବାଦୀ ବନବିଦ୍ୟାଳୟ ଏକ ସ୍ମୃତିରେ ପରିଣତ ହେଲାଣି। ସେଥିରେ ଯେଉଁ ପୂର୍ଣ୍ଣାଙ୍ଗ ଶିକ୍ଷାର ବ୍ୟବସ୍ଥା ଥିଲା ତାହା ପୁରୀ ଜିଲ୍ଲା ସ୍କୁଲ୍ କି କୌଣସି ସରକାରୀ ସ୍କୁଲ୍‌ରେ ନଥିଲା। ଛାତ୍ରମାନଙ୍କର ଆଧ୍ୟାତ୍ମିକ ଚେତନା, ସାମାଜିକ ଚେତନା, ବିଶେଷତଃ ରାଜନୈତିକ ଚେତନା ତଥା ସ୍ୱାଧୀନ ଚେତନାର ଅଭିବୃଦ୍ଧି ପାଇଁ କାର୍ଯ୍ୟକରିବାକୁ ଶିକ୍ଷକମାନେ ସୁଯୋଗ ପାଉ ନଥିଲେ। ଶିକ୍ଷଣୀୟ ଆଦର୍ଶକୁ ସଂପୂର୍ଣ୍ଣ ରୂପେ ଅନୁସରଣ କରିପାରୁନଥିଲେ।

ରେଭେନ୍‌ସା କଲେଜରେ ବହୁଶିକ୍ଷକଙ୍କ କଥା ମନକୁ ଆସୁଛି। ତେବେ ସ୍କୁଲ୍ ଶିକ୍ଷକମାନେ ଛାତ୍ରମାନଙ୍କର ଯେପରି ନିକଟ ହୁଅନ୍ତି, ସେପରି କ୍ୱଚିତ୍ ହୁଅନ୍ତି କଲେଜ ଅଧ୍ୟାପକମାନେ। ଅଧିକାଂଶ ସମୟରେ ସେମାନେ ଦୂର ଦେବତା। କେବେ କ୍ୱଚିତ୍ କେହି କେହି ଛାତ୍ରଙ୍କର ଘନିଷ୍ଠ ହୁଅନ୍ତି, ଛାତ୍ରଙ୍କର ସାମଗ୍ରିକ ଜୀବନ ସହିତ ସଂପୃକ୍ତ ହୁଅନ୍ତି।

ତଥାପି କେତେଜଣ ଅଧ୍ୟାପକଙ୍କୁ ଆଦର୍ଶ ସ୍ଥାନୀୟ ବୋଲି ମନେକରୁଥିଲୁ। ଗୋପବନ୍ଧୁଙ୍କ ବଡ଼ ପୁଅ ଦର୍ଶନ ଅଧ୍ୟାପକ ରତ୍ନାକର ପତିଙ୍କ ପାଣ୍ଡିତ୍ୟ ଓ ସରଳତା, ହୃଦୟବତ୍ତା, ନୀତିପରାୟଣତା, ବଦାନ୍ୟତା ତାଙ୍କୁ ସମସ୍ତଙ୍କର ଶ୍ରଦ୍ଧାଭାଜନ କରିଥିଲା। ସେହିପରି ହୃଦୟବାନ୍ ଥିଲେ ଇଂରାଜୀ ଅଧ୍ୟାପକ ସୁପଣ୍ଡିତ ଗିରିଜା ଶଙ୍କର ରାୟ। ଛାତ୍ରମାନଙ୍କ ପାଇଁ ତାଙ୍କ ଦ୍ୱାର ଓ ମନ ଉନ୍ମୁକ୍ତ ଥିଲା। ବହୁଛାତ୍ରଙ୍କୁ ସେ ବିନା ପାରିଶ୍ରମିକରେ ଘରେ ପଢ଼ାଉଥିଲେ। ବିପିନ୍ ବିହାରୀ ରାୟ ଦର୍ଶନ ଅଧ୍ୟାପକ ଥିଲେ ମଧ୍ୟ କଲେଜର ପ୍ରତ୍ୟେକ କୃତୀ ଛାତ୍ରର ଖବର ରଖୁଥିଲେ ଓ ପୁରୀ ଜିଲ୍ଲା ସ୍କୁଲ୍‌ର ଜନୈକ ଶିକ୍ଷକ ହରିହର ମିଶ୍ର ଯେପରି ଉତ୍କଳ ବ୍ରାହ୍ମଣ ସମିତିକୁ ତାଙ୍କର ସମଗ୍ର ପ୍ରୋଭିଡେଣ୍ଟ ଫଣ୍ଡ ଟଙ୍କା ୬,୭୦୦କୁ ଦାନ କରିଥିଲେ, ସେହିପରି ସେ (ଅଧ୍ୟାପକ ରାୟ) ଅନୁରୂପ ପରିମାଣ ଅର୍ଥ କାୟସ୍ଥ ବୋର୍ଡିଂ ହାଉସ୍ ଓ ଉତ୍କଳ ବ୍ରାହ୍ମଣ ସମିତିକୁ ଦାନ କରିଥିଲେ। ବହୁ ଦରିଦ୍ର ଛାତ୍ରଙ୍କୁ ସାହାଯ୍ୟ କରିଥିଲେ। ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ସମ୍ପର୍କୀୟ ଗବେଷଣାରେ ଯେପରି ଆଗ୍ରହୀ ଥିଲେ, ସେପରି ଆଗ୍ରହୀ ଥିଲେ କ୍ରୀଡ଼ାରେ। ମୋ ପରି ବହୁ ଛାତ୍ରଙ୍କୁ ଘଣ୍ଟା ଘଣ୍ଟା ଧରି ଘରେ ପଢ଼ାଉଥିଲେ।

ରସାୟନ ବିଭାଗର ମୁଖ୍ୟ ଡକ୍ଟର ବଳଭଦ୍ର ପ୍ରସାଦ ସୁଦକ୍ଷ ଅଧ୍ୟାପକ ଓ ଗବେଷକ ଥିଲେ। ସେ ଜୟପ୍ରକାଶ ନାରାୟଣଙ୍କ ବନ୍ଧୁ ଥିଲେ ଓ ଜାତୀୟବାଦୀ ମନୋଭାବପନ୍ନ ଥିଲେ। ଡକ୍ଟର ପରିଜା ଅଧକ୍ଷ ଓ କୁଳପତି ରୂପେ ବ୍ୟସ୍ତ ରହୁଥିଲେ ମଧ୍ୟ ଅଧ୍ୟାପନା ଓ ଗବେଷଣାରେ ଶେଷ ପର୍ଯ୍ୟନ୍ତ ଆଗ୍ରହୀ ଥିଲେ ଓ ପ୍ରତିଭାବାନ୍ ଛାତ୍ରଙ୍କୁ ସାହାଯ୍ୟ କରୁଥିଲେ। ଏହି ଅତି ବରିଷ୍ଠ ଆଦର୍ଶ ଅଧ୍ୟାପକଗଣଙ୍କ ଦୃଷ୍ଟାନ୍ତ ମୋ ସମୟର ବହୁ ତରୁଣ ଅଧ୍ୟାପକଙ୍କୁ ପ୍ରଭାବିତ କରିଥିଲା।

ତେବେ ପରାଧୀନତାର ଶୃଙ୍ଖଳ ହେତୁ ରେଭେନ୍‌ସା କଲେଜରେ ମଧ୍ୟ ପରିବେଶ ଅଧ୍ୟାପକ ଓ ଛାତ୍ରମାନଙ୍କ ମଧ୍ୟରେ ବଳିଷ୍ଠ ରାଜନୈତିକ ଚେତନା ଓ ସ୍ୱାଧୀନ ଚେତନାର ବିକାଶ ପାଇଁ ଅନୁକୂଳ ନଥିଲା।

୧୯୪୪ରେ ରେଭେନ୍‌ସା କଲେଜରୁ ବି.ଏ. (ଇଂରାଜୀ ଅନର୍ସ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ପରେ ଆଲାହାବାଦ ବିଶ୍ୱବିଦ୍ୟାଳୟ ଇଂରାଜୀ ବିଭାଗର ସ୍ନାତକୋତ୍ତର ଶ୍ରେଣୀରେ ଯୋଗ ଦେଲି। ସେହି ବିଭାଗର ମୁଖ୍ୟ ଥାଆନ୍ତି ସତୀଶ ଚନ୍ଦ୍ର ଦେବ। ପୃଥଳକାୟ, ସାମାନ୍ୟ ଅନୁଚ୍ଚ ପ୍ରଫେସର ଦେବଙ୍କର ଥିଲା ଏକ ଅନନ୍ୟ ବ୍ୟକ୍ତିତ୍ୱ। ମୁଖରେ ଥାଏ ଗାମ୍ଭୀର୍ଯ୍ୟ, କିନ୍ତୁ ତା'ରି ଅନ୍ତରାଳରେ ଥାଏ ଛାତ୍ରଙ୍କ ପାଇଁ ଅଗାଧ ସ୍ନେହ। ଶୃଙ୍ଖଳାର ପକ୍ଷପାତୀ ଥିଲେ ସେ; କିନ୍ତୁ ତରୁଣ ଛାତ୍ରଛାତ୍ରୀଙ୍କ ସାମୟିକ ବିଶୃଙ୍ଖଳତା ପ୍ରତି ଥିଲେ କ୍ଷମାଶୀଳ। ଥରେ ବିଶ୍ୱବିଦ୍ୟାଳୟର ଛାତ୍ରମାନେ କୌଣସି କାରଣରୁ କ୍ଷୁବ୍ଧ ହୋଇ ଗୋଟିଏ ସିନେମା ହଲ୍‌ରେ ଭଙ୍ଗାରୁଜା ଆରମ୍ଭ କରିଦେଲେ, ପରଦା କାଟି ଦେଲେ, ନିକଟସ୍ଥ ଦୋକାନମାନଙ୍କୁ ଛିନ୍‌ଛତ୍ର କରିଦେଲେ। ଜିନିଷପତ୍ର ଲୁଟ୍‌ପାଟ୍ କଲେ। ପ୍ରଫେସର ଦେବ ଖବର ପାଇ ସେମାନଙ୍କୁ ବାରଣ କରି ଘଉଡ଼ାଇ ଆଣିଲେ ବିଶ୍ୱବିଦ୍ୟାଳୟ ପରିସରକୁ। ସେତେବେଳେ ବିଶ୍ୱବିଦ୍ୟାଳୟ ପରିସରରେ କୁଳପତିଙ୍କ ଲିଖିତ ଅନୁମତି ବିନା ପୁଲିସ୍‌ଙ୍କ ପ୍ରବେଶ ନିଷିଧ ଥିଲା। ଛାତ୍ରମାନଙ୍କ ବିରୁଦ୍ଧରେ ପ୍ରଫେସର ଦେବ ଓ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ପୁଲିସ୍ କେସ୍ କରାଇ ଦେଲେ ନାହିଁ। କିନ୍ତୁ ଆପୋଷ ମାଧ୍ୟମରେ ସୂତ୍ର ବାହାର କଲେ। ପ୍ରଫେସର ଦେବଙ୍କ କଥାରେ ବିଶ୍ୱବିଦ୍ୟାଳୟର ପ୍ରତ୍ୟେକ ଛାତ୍ର ଟଙ୍କାଏ ଲେଖାଏଁ ଦେଲେ କ୍ଷତିପୂରଣ ପାଣ୍ଠି ପାଇଁ, ଯାହା କ୍ଷତିଗ୍ରସ୍ତ ହୋଇଥିବା ସିନେମା ମାଲିକ ଓ ଦୋକାନୀମାନଙ୍କୁ ଦିଆଗଲା।

ତାଙ୍କର ଅଗାଧ ପାଣ୍ଡିତ୍ୟ ଆମକୁ ମୁଗ୍ଧ କରି ଦେଉଥିଲା । ତତ୍‌ସହିତ ଥିଲା ଗଭୀର ଦେଶପ୍ରେମ, ଛାତ୍ରବତ୍ସଳତା । ଭାରତର କେଉଁଠାରେ ସ୍ୱାଧୀନତା ସଂଗ୍ରାମୀ ଛାତ୍ରମାନଙ୍କ ଉପରେ ପୁଲିସ୍ ଅତ୍ୟାଚାର ହେଲେ, ସେ ଖବରକାଗଜରେ ତା'ର ପ୍ରତିବାଦ କରୁଥିଲେ ଓ ତାଙ୍କ ନେତୃତ୍ୱରେ ବିଶ୍ୱବିଦ୍ୟାଳୟର ବହୁ ବରିଷ୍ଠ ତରୁଣ ଅଧ୍ୟାପକ ସେହି ପ୍ରତିବାଦ ପତ୍ରରେ ଦସ୍ତଖତ କରୁଥିଲେ, ଯଦିଚ ସେତେବେଳେ ବିଶ୍ୱବିଦ୍ୟାଳୟର ଚାନ୍‌ସଲର୍ ଥିଲେ ସେ ସମୟର ଯୁକ୍ତ ପ୍ରଦେଶର (ସେ ସମୟରେ ଉତ୍ତର ପ୍ରଦେଶର ନାମ ଥିଲା ଯୁକ୍ତ ପ୍ରଦେଶ)ଗଭର୍ଣ୍ଣର ଅତି କଠୋର ଦମନପ୍ରିୟ ଶାସକ ରୂପେ ପରିଚିତ ସାର୍ ମରିସ୍ ହାଲେଟ୍ ।

ସେହି ବିଶ୍ୱବିଦ୍ୟାଳୟର ଭାରତ ବିଖ୍ୟାତ ପ୍ରଫେସର ତାରାଚାନ୍ଦ, ପ୍ରଫେସର ବେଣୀପ୍ରସାଦ, ଅବସରପ୍ରାପ୍ତ ମହାମହୋପାଧ୍ୟାୟ ଉମେଶ ଝା ପ୍ରଭୃତିଙ୍କୁ ଦେଖିଲି, ସେମାନଙ୍କର ଅଗାଧ ପାଣ୍ଡିତ୍ୟ, ଅକୃତ୍ରିମ ସରଳତା ଓ ଦେଶପ୍ରେମ ମତେ ବିସ୍ମିତ କଲା । ଶିକ୍ଷକୀୟ ସ୍ୱାତନ୍ତ୍ର୍ୟ, ଶିକ୍ଷାନୁଷ୍ଠାନର ସ୍ୱାତନ୍ତ୍ର୍ୟ, ଏକ ସ୍ୱଚ୍ଛଳ ସ୍ୱାଧୀନ ପରିବେଶ ବିଶ୍ୱବିଦ୍ୟାଳୟରେ ଲକ୍ଷ୍ୟ କଲି, ଯାହା ଲକ୍ଷ୍ୟ କରି ନଥିଲି, ସରକାରଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ଶାସିତ ମୋର ପ୍ରିୟ ରେଭେନ୍‌ସା କଲେଜରେ । ଯଦିଓ ସେ ମୋର ଶିକ୍ଷକ ନଥିଲେ; କିନ୍ତୁ କଳ୍ପନା ଚକ୍ଷୁରେ ମୋ ପାଇଁ ଆଦର୍ଶ ଶିକ୍ଷକ ଥିଲେ ବଙ୍ଗଳାର ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ୍, ମେଘନାଦ ସାହା, ସତ୍ୟେନ ବୋଷ, ତ୍ରିଗୁଣା ସେନ୍ ଓ ପ୍ରିୟରଞ୍ଜନ ସେନ୍ ପ୍ରଭୃତି । ଦେଶପ୍ରେମ ଓ ପ୍ରଗାଢ଼ ପାଣ୍ଡିତ୍ୟର ସମନ୍ୱୟ ଘଟିଥିଲା ସେମାନଙ୍କ ଠାରେ ।

ମୋର ଆନୁଷ୍ଠାନିକ ଶିକ୍ଷକଙ୍କ କଥା ତ ଲେଖିଲି । କିନ୍ତୁ ମୋର ସ୍କୁଲ୍‌ରେ ପଢୁଥିବା ବେଳର ଗୃହ ଶିକ୍ଷକ ଦାମୋଦର ମିଶ୍ର (ବାରିଷ୍ଟର ବିଶ୍ୱନାଥ ମିଶ୍ରଙ୍କ ସହୋଦର) ମୋ ଦୃଷ୍ଟିରେ ଥିଲେ ଜଣେ ଆଦର୍ଶ ଶିକ୍ଷକ । ଜ୍ଞାନ ଥିଲା ଯେପରି, ଆମ ପ୍ରତି ସ୍ନେହ ଥିଲା ସେପରି । ବୟସର ବିରାଟ ବ୍ୟବଧାନ ସତ୍ତ୍ୱେ ସେ ଥିଲେ ବନ୍ଧୁ ପରି - ଆଉ ପାଠ ପଢ଼ାଇବା ସହିତ ଶୁଣାଉଥିଲେ ସ୍ୱାଧୀନତା ସଂଗ୍ରାମୀଙ୍କର କାହାଣୀ ।

ଗୃହରେ ଥିଲେ ମୋର ପ୍ରଥମ ଓ ପରମ ଆଦର୍ଶ ଶିକ୍ଷକ, ମୋର ନନା (ପିତା) ଗୋପୀନାଥ ଦାଶ । ଗୋପବନ୍ଧୁଙ୍କର ସହପାଠୀ ଓ ସହକର୍ମୀ ଥିଲେ ସେ

- ଥିଲେ ତାଙ୍କ ସହିତ ସତ୍ୟବାଦୀ ବନବିଦ୍ୟାଳୟର ଉଦ୍ୟୋକ୍ତା। ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ ପ୍ରଭୃତିଙ୍କର ପ୍ରିୟ ଗୋପୀ ଭାଇନା। ବନବିଦ୍ୟାଳୟର ଆଦର୍ଶ ଶିକ୍ଷା ପଦ୍ଧତିର କାହାଣୀ ତାଙ୍କଠାରୁ ଶୁଣିଲି। ଗୋପବନ୍ଧୁଙ୍କୁ ନ ଦେଖିଥିଲେ ବି ତାଙ୍କର ଶିକ୍ଷାଦର୍ଶ, ଜୀବନାଦର୍ଶ ମୁଗ୍ଧ ହୋଇ ଶୁଣିଥିଲି ତାଙ୍କରି ଠାରୁ। ବ୍ରିଟିଶ୍ ଶାସନ କାଳରେ ସେ ଡେପୁଟୀ ମାଜିଷ୍ଟ୍ରେଟ ଥିଲେ ମଧ୍ୟ ନିଗୂଢ଼ ଦେଶପ୍ରେମ ଓ ଜନସେବା ଆଦର୍ଶ ତାଙ୍କର ଜୀବନଚର୍ଯ୍ୟାକୁ ନିୟନ୍ତ୍ରିତ କରୁଥିଲା। ଶାସକୀୟ ମନୋବୃତ୍ତି ତାଙ୍କର ନଥିଲା। ମନୋବୃତ୍ତି ଥିଲା ତାଙ୍କର ଏକ ଶିକ୍ଷକର। ସେ ବାଲ୍ୟକାଳରୁ ମୋତେ ଓ ଭାଇମାନଙ୍କୁ ପଢ଼ାଉଥିଲେ ଇଂରାଜୀ, ମତେ ସଂସ୍କୃତ ପଢ଼ାଉଥିଲେ ବି.ଏ. ପର୍ଯ୍ୟନ୍ତ। ଶିକ୍ଷାର ପ୍ରସାର ପାଇଁ ଜୀବନସାରା ନାନାପ୍ରକାର ଉଦ୍ୟମ କରିଥିଲେ। ଏକାନ୍ତ ସଚ୍ଚୋଟ, ସରଳ, ନୀତିବାନ୍ ସେ। ତାଙ୍କର ଜୀବନାଦର୍ଶରେ ଆମକୁ ଉଦ୍‌ବୃଦ୍ଧ କରିଥିଲେ। ସେ ଥିଲେ ରକ୍ଷଣଶୀଳତା ଓ ଉଦାରତାର ସମନ୍ୱୟ। ନୈଷ୍ଠିକ ବ୍ରାହ୍ମଣ ହେଲେ ମଧ୍ୟ ସେ ବେଦ ସହିତ ବାଇବେଲ୍ ଓ କୋରାନ୍ ମଧ୍ୟ ପଢୁଥିଲେ ଓ ଆମକୁ ତାହା ପଢ଼ିବାକୁ ଉତ୍ସାହିତ କରୁଥିଲେ, ଭାରତୀୟ ଧାର୍ମିକ, ସାଂସ୍କୃତିକ ଐତିହ୍ୟର ସେ ଥିଲେ ନିରଳସ ପୂଜାରୀ। କିନ୍ତୁ ପାଶ୍ଚାତ୍ୟ ଧର୍ମ ଓ ଦର୍ଶନର, ଐତିହ୍ୟର ମଧ୍ୟ ସେ ଅନୁଶୀଳନ କରିଥିଲେ। ତାଙ୍କରି ଆଦର୍ଶ ଆବାଲ୍ୟରୁ ମତେ ଅନୁପ୍ରାଣିତ କରିଅଛି।

ଆଉ ମୋର ବୋଉ, ଆନୁଷ୍ଠାନିକ ଶିକ୍ଷା ତାଙ୍କର ବିଶେଷ ନଥିଲେ ମଧ୍ୟ ଥିଲେ ଜଣେ ଆଦର୍ଶ ମାତା, ଆଦର୍ଶ ଗୃହିଣୀ। ସରଳତା, ସ୍ୱାବଲମ୍ବନଶୀଳତାର ସେ ପ୍ରତୀକ ସ୍ୱରୂପ ଥିଲେ। ୧୯୪୨ରେ ଭାରତଛାଡ଼ ଆନ୍ଦୋଳନ ବେଳେ ଓ ସ୍ୱାଧୀନତା ପରବର୍ତ୍ତୀ ଛାତ୍ର ଆନ୍ଦୋଳନମାନଙ୍କରେ ସେ ମତେ ମୋର ବିବେକାନୁଯାୟୀ କାର୍ଯ୍ୟ କରିବାକୁ ସାହସ ଦେଇଥିଲେ।

ବନବିଦ୍ୟାଳୟର ମହାନ୍ ଶିକ୍ଷକ ପଣ୍ଡିତ ନୀଳକଣ୍ଠ ଆସୁଥିଲେ ଆମ ଘରକୁ। ଆସୁଥିଲେ ଉତ୍କଳର ଶ୍ରେଷ୍ଠ ଶିକ୍ଷକ, ଋଷି ପ୍ରାଣ ଆଚାର୍ଯ୍ୟହରିହର। ଉଦ୍‌ବୁଦ୍ଧ କରିଥିଲେ ତାଙ୍କର ମହାନ୍ ବାଣୀରେ, "ଭଲ ମଣିଷ ହୁଅ"। ଏହା ମୋ ହୃଦୟରେ ଶେଷ ପର୍ଯ୍ୟନ୍ତ ପ୍ରତିଧ୍ୱନିତ ହେଉଥିବ।



# ଏବେ ମଧ୍ୟ ମନେ ରଖିଛି

*ଚିତ୍ତରଂଜନ ଦାସ*

ଭାରି ବିଚିତ୍ର ଘଟଣାଟିଏ ପରି ଲାଗେ ଯେ, ନିଜର ପାଠପଢ଼ା ଦିନଗୁଡ଼ିକର କଥା ମନେ କରିବା ମାତ୍ରକେ ସବା ଅଗ ମୋର ଶିକ୍ଷକମାନେ ହିଁ ଦୃଷ୍ଟିଗୋଚର ହୋଇ ଆସନ୍ତି । ଆଗ ଶିକ୍ଷକମାନେ, ତା'ପରେ ଯାଇ ବିଦ୍ୟାଳୟର ଘରଗୁଡ଼ିକ । ସେହି ଘରଗୁଡ଼ିକ ପଛ, ଶିକ୍ଷକମାନେ ହେଉଛନ୍ତି ମୁଖ୍ୟ । ସେ କାଳର ଘରଗୁଡ଼ିକ ଏବକୁ ଆଦୌ ସେ ଦିନ ପରି ନଥିବ । ମାଟି ଘର ଓ ଛପର ଚାଳ ଥାନରେ ସୁଦୃଶ୍ୟ କୋଠାଘରମାନ ନିଶ୍ଚୟ ଠିଆ ହୋଇ ସାରିବଣି । ଏବଂ, ସର୍ବୋପରି, ସକାଳେ ଆମକୁ ପାଠ ପଢ଼ାଉଥିବା ଶିକ୍ଷକମାନେ ବର୍ତ୍ତମାନ ତ ଜଣେ ମଧ୍ୟ କେହି ନଥିବେ । ତଥାପି, ବିଦ୍ୟାଳୟର ଦୃଶ୍ୟପଟଟି ଚକ୍ଷୁ ସମକ୍ଷରେ ଉକୁଟି ଉଠିବାକ୍ଷଣି ଶିକ୍ଷକମାନେ ହିଁ ତତ୍କ୍ଷଣାତ୍ ଦିଶିଯାଆନ୍ତି । ସତେଅବା ଆମକୁ ବହି ଖଣ୍ଡେ ଧରି ପାଠ ପଢ଼ାଉଛନ୍ତି, କିମ୍ବା ହାତରେ ଖଣ୍ଡେ ଚକ୍ ଧରି କଳାପଟା ଉପରେ କ'ଣ ସବୁ ଲେଖି ଯାଉଛନ୍ତି, ଆମେ ବୁଝି ପାରୁନାହୁଁ ଏବଂ ଆମକୁ ବାରମ୍ବାର ବୁଝିପାରିବା ପର୍ଯ୍ୟନ୍ତ ବୁଝାଇବାରେ ଲାଗିଛନ୍ତି ଇତ୍ୟାଦି, ଇତ୍ୟାଦି ।

ସବୁ ଶିକ୍ଷକ ଯେ ଏକାପରି ମନେ ପଡ଼ନ୍ତି ସେ କଥା ନୁହେଁ । ହୁଏତ କାହାଙ୍କୁ ସ୍ମରଣ କରିବାକୁ ମନ କଲେ ଚିନ୍ତା କରିବା ମଧ୍ୟ ଆବଶ୍ୟକ ହୁଏ । ମାତ୍ର ଏପରି ଆଉ କେତେଜଣ ଅବଶ୍ୟ ରହିଥାଆନ୍ତି, ଯେଉଁମାନେ କି ଆପେ ଆପେ ଆସି ସାମନାରେ ଉଭା ହୋଇଯାଆନ୍ତି । ବର୍ତ୍ତମାନ ଭାବୁଛି, କେବଳ ମୋରି ବେଳକୁ ନୁହେଁ, ଗୋଟି ଗୋଟି ସବୁ ପିଲାଙ୍କ କ୍ଷେତ୍ରରେ ବି ସଚରାଚର ତାହା ହିଁ ଘଟିଥାଏ । ହଁ, ଖୁବ୍ ହେତୁରେ ଅଛି, ଆମର କୋଉ ଶିକ୍ଷକ ଅନ୍ୟ ସମସ୍ତଙ୍କଠାରୁ ଅଧିକ ଭଲ, ଏହି ବିଷୟରେ ସେତେବେଳେ ଆମ ପିଲାଙ୍କ ମଧ୍ୟରେ ସର୍ବଦା ନାନା ମତଭେଦ ମଧ୍ୟ ରହିଥିଲା । ନିଜର ପକ୍ଷ ସମର୍ଥନ କରି ଆମେ ନିଜ ନିଜର ବକ୍ତବ୍ୟଗୁଡ଼ିକୁ ପରସ୍ପର ଆଗରେ ପ୍ରକାଶ କରୁଥିଲୁ । ସେଥିରୁ ଝଗଡ଼ା କନ୍ଦିବାର କୌଣସି ପ୍ରଶ୍ନ ହିଁ ନଥିଲା ସିନା, କିନ୍ତୁ ନିଜ ନିଜର ନିର୍ବାଚନଗୁଡ଼ିକୁ ଆମେ ତଥାପି ଭୁଲ୍ ବୋଲି ମାନୁ ନଥିଲୁ ।

ସେହି ଧାରାରେ ପଛକୁ ପଛକୁ ଗଲେ ମୋର ଦାମ ମାଷ୍ଟ୍ରେଙ୍କ କଥା ନିଶ୍ଚୟ ମନେ ପଡ଼ିବ । ପୂରା ନାଆଁ ଶ୍ରୀଯୁକ୍ତ ଦାମୋଦର ନନ୍ଦ, ଆମ ଗାଁ ତତ୍କାଳିନ ନିମ୍ନ-

ପ୍ରାଥମିକ ବିଦ୍ୟାଳୟର ହେଡ୍ ପଣ୍ଡିତ। ଘର ପୁରୀ ନିକଟବର୍ତ୍ତୀ ସୁଦୂର ବ୍ରାହ୍ମଣ ଶାସନରେ। ଗାଆଁ ଭିତରେ ଗୋଟିଏ ପରିବାର ଛାଡ଼ି ଦେଇଥିବା ବଖରାଏ ଘରେ ରହନ୍ତି। ସ୍ୱପାକୀ, - ଆମେ କେତେଜଣ ପିଲା ରାତିରେ ତାଙ୍କ ପାଖରେ ବସି ପାଠ ପଢୁ। ସିଏ ଚୁଲୀ ପାଖେ ବସି ରୋଷେଇ କରନ୍ତି ଏବଂ ଆମକୁ ପାଠ ପଢ଼ାନ୍ତି। ଯୁଗପତ୍ ଭାବରେ ଗ୍ରାମର କଣେ ଦୁଇଜଣ ସେଠାରେ ବସି ତାଙ୍କ ସହିତ ଦୁଃଖସୁଖ ମଧ୍ୟ ହୁଅନ୍ତି। ଏକାବେଳକେ ଏତେ ଆଡ଼େ ମନ ଦେବା ଦ୍ୱାରା କେଉଁଆଡ଼େ କୌଣସି ବ୍ୟତିକ୍ରମ ହୋଇଯାଏ ବୋଲି କେହି ଅନୁଭବ କରନ୍ତି ନାହିଁ। ଆମ ସମୟରେ ଟିଉସନ୍ ସହିତ ଆମେ କଥାଟିକୁ ଆଦୌ ଏକାଠି ମିଶାଇ ପକାଇବା ନାହିଁ ଟି ! କାରଣ, ମୋର ପୂରା ମନେ ଅଛି, ମୁଁ ଓ ମୋ' ଶ୍ରେଣୀର ଆଉ ଜଣେ, - ଏପରି ଦୁହେଁ ବୃତ୍ତିପରୀକ୍ଷାକୁ ଯିବାର ସ୍ଥିର ହୋଇଥାଏ ଏବଂ ସାର୍ ବିଶେଷ ସମୟ ଦେଇ ଆମକୁ ସେଥିପାଇଁ ପ୍ରସ୍ତୁତ କରୁଥାଆନ୍ତି।

ମୋ' ବଡ଼ ଭାଇ ବିଚାର କରିଥାଆନ୍ତି ଯେ ତଳୁ ସବାଉପର ଯାଏ ଯେତେ ଯେତେ ଛାତ୍ରବୃତ୍ତିର ବ୍ୟବସ୍ଥା ରହିଛି, ମୁଁ ସେହି ସବୁଗୁଡ଼ିକୁ ଅଲବତ ପାଇବି। ଆମ ଗାଆଁର ଉଚ୍ଚପ୍ରାଥମିକ ସ୍ତରରେ ଅଲଗା ବିଦ୍ୟାଳୟ ନଥିବାରୁ ତାଙ୍କ ଶ୍ୱଶୁର ଘର ଗାଁରେ ମୁଁ ଚତୁର୍ଥ ପଞ୍ଚମ ଦୁଇବର୍ଷର ପାଠ ପଢ଼ିଥିଲି। ଉଚ୍ଚ ପ୍ରାଥମିକ ବୃତ୍ତି ନେଇ ଷଷ୍ଠ ଶ୍ରେଣୀକୁ ଯାଇ ପୁନର୍ବାର ଗାଆଁକୁ ଆସିଲି ଏବଂ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଥିଲି। ଷଷ୍ଠ ପରେ ସପ୍ତମ ହେଲା ବେଳକୁ ଭାଇଙ୍କ ତରଫରୁ ଭିନ୍ନ ପ୍ରସ୍ତାବଟିଏ ଆସିଥିଲା। ଗାଆଁ ମଧ୍ୟ-ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଆଉ କୁଆଡ଼େ ଚାଲି ଯାଇଥାନ୍ତି ଏବଂ ତାଙ୍କ ଜାଗାରେ ଆଉ କେହି ଆସି ପହଞ୍ଚିନଥାନ୍ତି। ଏସବୁ ସ୍ଥିତି ଦେଖି ଭାଇ ଅନ୍ୟ ଭଳି ଚିନ୍ତା ହିଁ କଲେ ଏବଂ ଘରେ ନିଷ୍ପତ୍ତି ହେଲା ଯେ, ନାଇଁ, ସପ୍ତମ ଶ୍ରେଣୀଟା ମୁଁ ଆଉ ଗାଁରେ ପଢ଼ିବି ନାହିଁ। ଭାଇ ମୋତେ କଟକ ସହରର ରାଣୀହାଟ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ଭର୍ତ୍ତି କରିଦେବେ ଏବଂ ମୁଁ ସେହିଠାରୁ ହିଁ ମଧ୍ୟ-ଇଂରାଜୀ ସ୍ତରର କେନ୍ଦ୍ର ପରୀକ୍ଷାରେ ବସିବି। ତେବେଯାଇ ମଧ୍ୟ-ଇଂରାଜୀ ଛାତ୍ରବୃତ୍ତିଟିକୁ ହାସଲ କରି ପାରିବି।

ଜୀବନରେ ପ୍ରଥମ ଥର ପାଇଁ ମୁଁ ଗାଆଁ ଛାଡ଼ି ସହରକୁ ଆସିବି। ସେଠି ବିଦ୍ୟାଳୟରେ ପୁଣି ଛାତ୍ରାବାସରେ ରହିବି। ଏହି ସବୁଯାକକୁ ଏକତ୍ର କରି ଭାବିଲା ବେଳକୁ ଖୁବ୍ କେମିତି କେମିତି ଲାଗୁଥାଏ। ନିର୍ଦ୍ଦିଷ୍ଟ ଦିନଟିରେ ବଡ଼ଭାଇ ମୋତେ ସାଂଗରେ ଧରି ରାଣୀହାଟ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ପହଞ୍ଚିଲେ। ବାରଣ୍ଡାରେ ଅଫିସ୍ ଘର ସାମନାରେ ବସିଥିବା ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ

ବାଞ୍ଛାନିଧି ଶତପଥୀଙ୍କ ସହିତ କଥାବାର୍ତ୍ତା ହେଲେ। ସେତେବେଳକୁ ମୋତେ ଭାରି ବାଲୁରା ବାଲୁରା ଲାଗୁଥାଏ। ପିଲାମାନେ ସାଧାରଣତଃ କୌଣସି ମଧ୍ୟ-ଇଂରାଜୀ ବିଦ୍ୟାଳୟର ଚତୁର୍ଥ ଅଥବା ଷଷ୍ଠ ଶ୍ରେଣୀରେ ନାମ ଲେଖାଇବା ସକାଶେ ହିଁ ଆସନ୍ତି। ଭାଇ ଯେ ମୋତେ ସେଠାରେ ସପ୍ତମ ଶ୍ରେଣୀରେ ଭର୍ତ୍ତି କରାଇବା ଲାଗି ଆସିଛନ୍ତି, ପ୍ରକୃତରେ ମୁଁ କେନ୍ଦ୍ର ପରୀକ୍ଷାରେ ଫେଲ୍ ହୋଇ ଏଠାକୁ ଆସିଛି କି ? ହଁ, ସର୍ବପ୍ରଥମେ ସେ ଭାଇଙ୍କୁ ସେହି ପ୍ରଶ୍ନଟିକୁ ହିଁ ପଚାରିଥିଲେ। ଭାଇ ପ୍ରକୃତ କଥାଟି କହିଦେବା ପରେ ନିଜ ମୁହଁର ମୁଦ୍ରାଗୁଡ଼ିକ ବଦଳାଇ ମୋ' ଆଡ଼କୁ ଚାହିଁ ଦେଇଥିଲେ। ସତେ ଅବା ସେତିକି ଦ୍ୱାରା ମୋତେ କେତେ ନା କେତେ ଭରଷା ଦେଲେ। ମୋ ମୁହଁରୁ ସିଏ ସ୍ୱୟଂ ବୁଝିପାରିବା ଭଳି କିଛି କୌଣସି ଭରଷା ପାଇ ଯାଇଥିଲେ କି ?

ଛାତ୍ରାବାସରେ ପୂରା ଚାରୋଟିଯାକ ଶ୍ରେଣୀର ପିଲା ରହୁଥିଲେ। ଗୋଟିଏ ବୋଲି ବଖରା ଏବଂ ସେଇଥିରେ ପ୍ରାୟ ବାର ଚଉଦଜଣ ଆମେ ସମସ୍ତେ। ଆମ ନିମନ୍ତେ ଦୈନିକ ଦୁଇ ପ୍ରଧାନ ବକ୍ତ ଭୋଜନର ରୋଷେଇବାସ ପାଖ ବଖୁରିଟିରେ ହୁଏ। ସକାଳ ଓ ଉପରବେଳାର ଜଳଖିଆ ବଜାରରୁ ନିଜେ ଯାଇ ଖାଇ ଆସିବାକୁ ପଡ଼ିଥାଏ। ଓଳିକୁ ଦୁଇ ପଇସା କରି ପ୍ରତ୍ୟେକଙ୍କୁ ମେସ୍‌ରୁ ନଗଦ ମିଳେ ଏବଂ ଆମେ ଦୋକାନକୁ ଯାଇ ଜଳଖିଆ କରି ଆସୁ। ଦୁଇ ପଇସାକୁ ଦୁଇଖଣ୍ଡ ବଡ଼ ବଡ଼ ପୁରୀ ଓ ତା' ସାଙ୍ଗକୁ ତରକାରୀ ଓ ଖଟା ମାଗଣା। ରସଗୋଲାଟିଏ ଖାଇବାକୁ ହେଲେ ଦୁଇଦିନ ପଇସାଏ ଲେଖେ ବଞ୍ଚାଇ ଦୁଇ ପଇସାରେ ବେଶ୍ କିଣି ଖାଇହୁଏ। ଖରାଦିନେ ସକାଳୁଆ ଇସ୍କୁଲ୍। ଆମେ ଗୋଟିଏ ଦୋକାନରୁ ସେତିକି ଖରଚ଼ରେ ଛତୁଆ ଏବଂ ଚିନି କିଣି ଆଣୁ। ସେଇଥିରେ ପେଟକୁ ଯଥେଷ୍ଟ ହୋଇଯାଏ।

ଚାରି ବଖରା ଆସ୍‌ବେଷ୍ଟସ୍ ଘରେ ଚାରୋଟି ଶ୍ରେଣୀ ହୁଏ। ଆଗକୁ ପଡ଼ିଆଟିଏ। ସେଇଟିରେ ପିଲାଏ ଫୁଟ୍‌ବଲ୍ ଖେଳନ୍ତି। ଗୋଟିଏ ନାଣ୍ଡି ପଣସ ଗଛ, ସେଇଟି ଏବେ ମଧ୍ୟ ଛିଡ଼ା ହୋଇ ରହିଛି। ବିଦ୍ୟାଳୟରେ ଚାରିଜଣ ଶିକ୍ଷକ, ପ୍ରଧାନ ଶିକ୍ଷକଙ୍କୁ ମିଶାଇ। ସେହି ବର୍ଷ ତଳ ଶ୍ରେଣୀଟିରେ ଅଧିକ ପିଲା ଆସି ଭର୍ତ୍ତି ହେବାରୁ ଆଉ ଜଣେ ସାର୍ ମଧ୍ୟ ରହିଥାଆନ୍ତି। ବାଉଁଶର ତଲେଇ ଉପରେ ଗୋବର ଲିପା ହୋଇ ଛପର ତଳେ ସେଥିପାଇଁ ଅସ୍ଥାୟୀ ଶ୍ରେଣୀଘର ଦୁଇବଖରା ଖଞ୍ଜି ଦିଆଯାଇଥାଏ। ରାତିରେ ସାନ ସାର୍ ବିଦ୍ୟାଳୟରେ ରହନ୍ତି।

ଅନ୍ୟମାନେ ସପରିବାର ପାଖ ସାହିମାନଙ୍କରେ। ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଶତପଥୀ ମଧ୍ୟ ବାହାରେ। ସିଏ ଏକ ମେସ୍‌ରେ ରହୁଥିଲେ। ପରିବାର ସୁଦୂର ବାରିପଦା ଆଡ଼େ କୌଣସି ସ୍ଥାନରେ, ମାତ୍ର, ଦୈନନ୍ଦିନ ସର୍ବାଧିକ ସମୟ ସିଏ ବିଦ୍ୟାଳୟରେ ହିଁ ଥାଆନ୍ତି। କେବଳ ଖାଇବାକୁ ଓ ରାତିରେ ଶୋଇବାକୁ ଯାହା ବାହାରକୁ ଯାଆନ୍ତି।

ସପ୍ତମ ଶ୍ରେଣୀରେ ଆମେ ପ୍ରାୟ କୋଡ଼ିଏ ସରିକି ପିଲା ଥାଉ - ମାତ୍ର ସ୍କୁଲ୍ ଛାତ୍ରାବାସରେ ଆମେ ତିନିଜଣ। ଆମକୁ ସ୍ୱତନ୍ତ୍ର ଭାବରେ ବୃତ୍ତି ପାଇଁ ପ୍ରସ୍ତୁତ କରାଯାଉଥିଲା। ପ୍ରଫୁଲ୍ଲ ଘର ବିରିବାଟୀରେ, ଗୁଣ ଛତ୍ରବକାର ଶଙ୍କରପୁରର ଏବଂ ମୁଁ ଦୂର ମଫସଲ ବାଗଲପୁର ଗାଆଁରୁ ଆସିଥାଏ। ସେତେବେଳେ କଟକ ସହରରେ ଅବସ୍ଥିତ ଗୋଟିଏ ମାତ୍ର ସରକାରୀ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ କଟକ ସବ୍‌ଡିଭିଜନ୍‌ର ସବୁ ପିଲା ସପ୍ତମ ଶ୍ରେଣୀର ଶେଷ ପରୀକ୍ଷା ଦେବାକୁ କଟକ ଆସୁଥିଲେ। ସେହି ସଭିଙ୍କ ମଧ୍ୟରୁ ସର୍ବୋତ୍ତମ ନମ୍ବର ରଖୁଥିବା ଏକ ନିର୍ଦ୍ଧାରିତ ସଂଖ୍ୟାର ପିଲାମାନେ  ବୃତ୍ତି ନିମନ୍ତେ ଯୋଗ୍ୟ ବୋଲି ଘୋଷିତ ହେଉଥିଲେ। ଅର୍ଥାତ୍, ବର୍ତ୍ତମାନ ପରି ସେତେବେଳେ ଅଲଗା ହୋଇ କୌଣସି ବୃତ୍ତି ପରୀକ୍ଷା ହେଉନଥିଲା। ଏବଂ, ଶ୍ରୀଯୁକ୍ତ ପ୍ରଧାନ ଶିକ୍ଷକ ଆମ ଏହି ତିନିଜଣଙ୍କର ବିଶେଷ ଦାୟିତ୍ୱରେ ରହିଥିଲେ।

ସିଏ ଏହି ବିଶେଷ ଦାୟିତ୍ୱ ନେଇଥିବାରୁ କାହାଣୀଟିକୁ ମୁଁ ପ୍ରକୃତରେ କେଉଁଠାରୁ ଆରମ୍ଭ କରିବି ଏବଂ କେଉଁଠାରେ ଶେଷ କରିବି ? କାରଣ, ସେହି ଗୋଟିଏ ବରଷର ଅବଧିଟିରେ କ'ଣ ଏପରି ବିଶେଷତ୍ୱ ସହିତ ଘଟିଥିଲା ଯେ, ଏବେ ମଧ୍ୟ ପଛକୁ ନିଜର ସ୍କୁଲ୍ - ଅଧ୍ୟୟନ କାଳଟି ଉପରେ ଦୃଷ୍ଟିପାତ କରିବା ମାତ୍ରକେ ହିଁ ସବାଆଗ ସେହି ଖାସ୍ ବରଷଟିର କଥା ମନେ ପଡ଼ିଯାଉଛି ? ଏବଂ, ଆହୁରି ଅଧିକ ଉଲ୍ଲେଖଯୋଗ୍ୟ ବିଷୟଟି ହେଉଛି ଯେ, ପ୍ରଧାନ ଶିକ୍ଷକ ଶ୍ରୀ ବାଞ୍ଛାନିଧି ଶତପଥୀ ହିଁ ସେହି ସ୍ମୃତି ଗାରଗୁଡ଼ିକ ମଧ୍ୟରେ ସର୍ବଦା ସବା ଆଗରେ ଆସି ଛିଡ଼ା ହୋଇଥିବା ଭଳି ଜଳଜଳ ଦିଶୁଛି ? ହଁ , ତାହାର ଚାରିବର୍ଷ ପରେ କଟକ ସହରର ଯେଉଁ ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ମୁଁ ଅନ୍ୟ ଚାଳିଶିଜଣ ଅନ୍ୟ ପିଲାଙ୍କ ସହିତ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେଇଥିଲି ଏବଂ ବୃତ୍ତି ପାଇଥିଲି, ସେଇଟି ମଧ୍ୟ ଏଥିରେ ଆଦୌ କୌଣସି ଆପତ୍ତି କରୁନାହିଁ। ଏବଂ, ଏହି କ୍ଷେତ୍ରରେ ଶ୍ରୀ ବାଞ୍ଛାନିଧି ଅନ୍ୟ କୌଣସି ଶିକ୍ଷକଙ୍କ ସହିତ ମୋଟେ ପ୍ରତିଦ୍ୱନ୍ଦିତା କରୁନାହାନ୍ତି, - ତଥାପି ସବାଆଗରେ ଛିଡ଼ା ହୋଇ ରହିଛନ୍ତି। କ'ଣ ପାଇଁ କେଜାଣି ?

ହଁ, ସବା ବଡ଼ କଥା ହେଉଛି, ପରୀକ୍ଷାରେ ଭଲ ଓ ଆହୁରି ଭଲ ଫଳ ଦେଖାଇପାରିବାକୁ ହେଲେ ପଢ଼ା ହେଉଥିବା ପାଠଗୁଡ଼ିକ ବିଷୟରେ ବିଶେଷ ଭାବରେ ପ୍ରବୀଣତା ହାସଲ କରିବାକୁ ହିଁ ବୁଝାଇଥାଏ। ସ୍ମରଣ ରଖିବା ଉଚିତ୍ ଯେ, ସେତେବେଳେ ଏବ ପରି ମିନିଙ୍ଗ୍ ବହି ବୋଲି କିଛି ନଥିଲା। ତଥାକଥିତ ଗାଇଡ଼ ଅର୍ଥାତ୍ ସହଚର ପୁସ୍ତକମାନେ ନଥିଲେ ଯେଉଁଗୁଡ଼ାକୁ କି ଘୋଟି ପିଇଦେଲେ ସବୁ ସମ୍ଭବ ହୋଇଯିବ। ତଥାପି, ଆମ ପ୍ରଧାନ ସାର୍ ଆମକୁ ସେହି ପାଠଗୁଡ଼ିକୁ ପିଆଇ ଦେବାକୁ ପ୍ରାୟ କୌଣସି ସମୟ ଦେଉନଥିଲେ। ଏପରି ବୁଝାମଣାଟିଏ ଥିଲା ଯେ, ସାର୍ ଯେତେବେଳେ ସଂକବେଳେ ଆମକୁ ସ୍ୱତନ୍ତ୍ର ଭାବରେ ପଢ଼ାଇବା ଲାଗି ଆସିବେ, ସେତେବେଳେ ଆମେ ତାଙ୍କୁ ଅବୁଝା ରହି ଯାଇଥିବା ପାଠଗୁଡ଼ିକୁ ପଚାରିବୁ ଏବଂ ସିଏ ଠିକେ ଠିକେ ଆମକୁ ଆବଶ୍ୟକତା ଅନୁସାରେ ବତାଇ ଦେଉଥିବେ। ପୂରା ମନେ ଅଛି, ସେଥିରେ କେବେହେଲେ ତାଙ୍କୁ ବା ଆମକୁ ବେଶୀ ସମୟ ଦେବାକୁ ପଡୁ ହିଁ ନଥିଲା। ବରଂ, ଅଧିକ ମନୋନିବେଶ ସହିତ ଆମେ ଓଡ଼ିଆରୁ ଇଂରାଜୀ ତଥା ଇଂରାଜୀରୁ ଓଡ଼ିଆ ଅନୁବାଦମାନ କରୁଥିଲୁ ଓ ସାର୍ ଆମ ସହିତ ଏକତ୍ର ବସି ସେଗୁଡ଼ିକର ସଦରମଫସଲ ବିଷୟରେ କେତେଆଡ଼େ ଆଲୋଚନାମାନ ଲମ୍ବାଇ ଦେଇ ପାରୁଥିଲେ। ଗୋଟିଏ ନୂଆ ଭାଗ ସହିତ ଆମକୁ ପ୍ରାୟ ଖୁବ୍ ସହଜ ଉତ୍ସାହ ସହିତ ପରିଚିତ କରାଉଥିଲେ।

ଆମ ପାଇଁ ତାଙ୍କର ନିୟମ ଥିଲା, ଆମେ ରାତି ଅନିଦ୍ରା ହୋଇ କେବେହେଲେ ପାଠ ପ୍ରସ୍ତୁତ କରିବୁ ନାହିଁ, ମୋଟେ କିଛି ଘୋଷି ପକାଇ ପାଠଟା ହୋଇଗଲା ବୋଲି ବିଚାରିବୁ ନାହିଁ, ଖେଳିବା ସମୟରେ ଅବଶ୍ୟ ଖେଳିବୁ, ଏବଂ ଆହୁରି କେତେ କ'ଣ। ଛୁଟିଦିନମାନଙ୍କରେ ପାଦରେ ଚାଲି ଚାଲି ଧବଳେଶ୍ୱର ଯାଉଥିଲୁ, - କେତେଥର ନରାଜ ବି ଯାଇଛୁ। ଅନ୍ୟ ସାର୍ କେହି ଥାଆନ୍ତୁ ବା ନ ଥାଆନ୍ତୁ ପଛକେ, ହେଡ୍‌ସାର୍ ଅବଶ୍ୟ ରହୁଥିଲେ। ବାଟରେ ଦୁନିଆ ଯାକର ଗପ, ନଦୀରେ ନୌକା ବିହାର। ଅଭିଭାବକବୃନ୍ଦ ଏଗୁଡ଼ିକରୁ ମର୍ମତଃ କିଛି ନବୁଝୁଥିଲେ ମଧ୍ୟ ପ୍ରଧାନଶିକ୍ଷକଙ୍କର କାର୍ଯ୍ୟଗୁଡ଼ିକ ବିଷୟରେ ସେମାନଙ୍କର ଅଗାଧ ବିଶ୍ୱାସ ରହିଥିଲା। ତେଣୁ ଆପତ୍ତି କରିବାର ପ୍ରଶ୍ନ ନଥିଲା। ପିଲାମାନଙ୍କ ପରି ସେମାନଙ୍କୁ ମଧ୍ୟ ଉତ୍ତମରୂପେ ଜଣାଥିଲା ଯେ ଏଜାତୀୟ ବହୁତ ବହୁତ କାର୍ଯ୍ୟକ୍ରମ କେବଳ ପ୍ରଧାନ ଶିକ୍ଷକ ଶ୍ରୀ ବାଞ୍ଛାନିଧି ଶତପଥୀଙ୍କର ମଥାରୁ ହିଁ

ବାହାରିଛି । ପାଠ କହୁଛି, ଯେଉଁଠି ପଛରେ ହୃଦୟଟାଏ ଛିଡ଼ାହୋଇ ମଥାଦ୍ୱାରା କେତେ କ'ଣ କାମ କରାଇନିଏ, ସେଠାରେ କେବଳ ଚାରିଟା ବର୍ଷର ସମୟଗାର ଭିତରେ ଇସ୍କୁଲ୍‌କୁ ଆସୁଥିବା ପିଲାଙ୍କର ବିଚ଼ାର ଆଦୌ କରାଯାଏ ନାହିଁ। ସେମାନଙ୍କର ପୂରା ଜୀବନର ପ୍ରଚ୍ଛଦଟିକୁ ଆଗରେ ଅର୍ଥାତ୍ ଯାବତୀୟ ଶିକ୍ଷାଦାନର ଭିତ୍ତି ସ୍ୱରୂପ ତଥାପି ଯାହାକିଛି କରାହୁଏ । ଶନିବାରକୁ ଶନିବାର ଉପର ଦୁଇଶ୍ରେଣୀର ପିଲାମାନେ ପ୍ରବନ୍ଧ ଲେଖୁଥିଲେ। ସେହି ପ୍ରତିଯୋଗିତାର ପ୍ରଥମ ତିନିଜଣ ପିଲାଙ୍କର ନାମ ଲିପିବଦ୍ଧ କରି ଶ୍ରେଣୀଗୃହର କାନ୍ଥରେ ଝୁଲାଇ ଦିଆ ଯାଉଥିଲା । ସେହିପରି ପ୍ରତ୍ୟେକ ସପ୍ତାହରେ ବକ୍ତୃତା ପ୍ରତିଯୋଗିତା । ସେହି ସାନ ହତାଟି ଭିତରେ ତଥାକଥିତ ନିର୍ଦ୍ଧାରିତ ପାଠଟିଏ ପଢ଼ିବା ପାଇଁ ଆସୁଥିବା ଆମ ସମସ୍ତଙ୍କୁ କେତେ ନା କେତେ ବିସ୍ତାର ମଧ୍ୟକୁ ପ୍ରାୟ ହାତ ଧରି ନେଇ ନିଆ ଯାଉଥିଲା ।

ଛାତ୍ରାବାସରେ ଥିବା ସପ୍ତମ ଶ୍ରେଣୀରେ ତିନିଜଣ ବାଉଁଶତାଟିର ସେହି ନିର୍ଦ୍ଦିଷ୍ଟ ଶ୍ରେଣୀ ଘରଟିରେ ରାତିକୁ ଅଲଗା ହୋଇ ବସୁଥିଲୁ । ମଝିରେ ଲଣ୍ଠନଟିଏ ଜଳେ ଏବଂ ଆମେ କର୍ମରତ ରହିଥାଉ। ପ୍ରଧାନ ସାର୍ ଆମକୁ ପଢ଼ାଇବା ସକାଶେ ସେହିଠାକୁ ହିଁ ଆସନ୍ତି । ପଢ଼ା ନିଅନ୍ତି, ପଢ଼ା ଦିଅନ୍ତି । ଅବଶ୍ୟ ସିଏ ସବୁଦିନ ଆସନ୍ତି ନାହିଁ। ଦିନେ ଦିନେ ନାଗା ହୋଇଯାଏ ଏବଂ ଅମୁକ ଦିନ ଆସିବେ ଅଥବା ଆସିବେ ନାହିଁ ବୋଲି ଆଗରୁ କିଛି ଠିକଣା ନଥାଏ। ଆପଣାକୁ ତେଣୁ ମଝିରେ ମଝିରେ ଖୁବ୍ ସ୍ୱାଧୀନ ଲାଗେ। ତିନିଙ୍କ ମଧ୍ୟରୁ ଜଣେ କାହାରି ଆଗ୍ରହଟାଏ ପ୍ରବଳ ହୋଇଯାଏ ଏବଂ ସିଏ ଅବଶିଷ୍ଟ ଦୁଇଜଣଙ୍କୁ ମଧ୍ୟ ଅନାୟାସରେ ଚହଲାଇ ନେଇଯାଏ। ଗୀତ ବୋଲାଯାଏ, ଗପସପଟାଏ ଏପରି ହୁଏତ ଜୁଟିଯାଏ, ଯେଉଁଥି ନିମନ୍ତେ ବସିବା ଥାନରୁ ବାହାରି ଆସି ଅଭିନୟ କରିବା ବି ଆରମ୍ଭ ହୋଇଥାଏ, - ଏବଂ ଥରେ ଥରେ ନୃତ୍ୟର କିଛି ବିଶେଷ ପ୍ରଦର୍ଶନ ଦ୍ୱାରା ପରସ୍ପରର ଆପ୍ୟାୟନ ବି କରାଯାଏ। ସେତେବେଳେ ପିନ୍ଧିଥିବା ସାର୍ଟମାନେ ବି ଆଉ ଦେହରେ ରହିପାରନ୍ତି ନାହିଁ ଏବଂ ପରିହିତ ଅଧା ପ୍ୟାଣ୍ଟ୍‌ଟା ମଧ୍ୟ ମୁଣ୍ଡମାନଙ୍କରେ ଠେକା ହୋଇ ଗଣ୍ଠି ପଡ଼ିଥାନ୍ତି। ଏମିତି ଖୁବ୍ କେତେଦିନ ଏପରି ହୋଇଛି ଯେ ସାର୍ ଆସି ବାହାରୁ ଝରକାବାଟେ ସେହି ଦୃଶ୍ୟଟିକୁ ଦେଖି କେତେବେଳେ ଯେ ଚାଲିଗଲେଣି, ସେ କଥାଟି ଆଦୌ ଜାଣି ହୋଇନାହିଁ । ଆମର ଉକ୍ତ ପର୍ବଟିରେ ବ୍ୟାଘାତ ଆଣି ସେହି ଖବରଟି ଆମକୁ ମିଳିଯାଏ ଏବଂ ସାର୍

ଅଫିସ୍ ବାରଣ୍ଡାରେ ବସି ଆମକୁ ଡାକୁଛନ୍ତି ବୋଲି ବାର୍ତ୍ତାଟିଏ ପାଇ ଆମେ ନିରୀହ ଜୀବ ତିନୋଟି ତାଙ୍କ ସାମନାରେ ଯାଇ ପହଞ୍ଚୁ । ସେଠି ଅନ୍ଧାର; - କେବଳ ତାଙ୍କ ଚଷମାତଳୁ ଆଖିଦୁଇଟି ହିଁ ଜୁଳୁ ଜୁଳୁ ହୋଇ ଦିଶି ଯାଉଥାଏ । ତା'ପରେ ବାକ୍ୟର ମାଧ୍ୟମରେ କ୍ରୋଧମାନଙ୍କର ବର୍ଷଣ ହୁଏ । ତରଳ ଓ ସହଜ ବୟସର ଆମେ କଇଁ କଇଁ ହୋଇ କାନ୍ଦିବା ପର୍ଯ୍ୟନ୍ତ । କ୍ରମେ କ'ଣ କେଉଁଠି ଧୋଇ ହୋଇ ଆସୁଥିବା ଭଳି ଲାଗେ । ସାର୍ ଆମକୁ ପାଖକୁ ଟାଣିନିଅନ୍ତି ଏବଂ ଅଭୟ ଦେଇ କହନ୍ତି : ସବୁ ଏହିପରି ଭାବରେ ଧୋଇହୋଇ ଯାଉଥାଉରେ ! ତେଣୁ ମୋର ଆଉ ଚିନ୍ତା କରିବାର ମୋଟେ କିଛି ନାହିଁ । ତା'ପରେ ଚାରିହେଁ ଦୀର୍ଘ ବାଟ ପଦବ୍ରଜ କରି କଟକଚଣ୍ଡୀ ଯାଏ ଯାଉ । ସେଠାରେ ସାର୍ ଭୋଗ ଲାଗି କରନ୍ତି । ପ୍ରସାଦ ଖାଇ ଖାଇ ଆମେ ପୁନର୍ବାର ସ୍କୁଲ୍‌କୁ ଫେରୁ । ରାତି ବହୁତ ହୋଇଯାଇଥାଏ । ସେ ତାଙ୍କ ରହିବା ଥାନକୁ ଯାଆନ୍ତି । ଏକ ଅଭାବନୀୟ ପାରସ୍ପରିକତା ଏକ ଦ୍ୱିପାକ୍ଷିକ ସଂହତିବୋଧକୁ ସତେଅବା ଦୃଢ଼ କରିଦେଇଥାଏ । ଏଭଳି ସେହି ଗୋଟିଏ ବର୍ଷ ଭିତରେ ବହୁବାର ଘଟିଥିଲା ।

ସେଦିନର ମଧ୍ୟ-ଇଂରାଜୀ ବିଦ୍ୟାଳୟଟି ପ୍ରାୟ ପଚାଶ ବର୍ଷ ହେବ ଏକ ଉଚ୍ଚ-ଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇସାରିଛି । ଏହି ପ୍ରଯ୍ୟସଟିରେ ସର୍ବପ୍ରଥମ ପ୍ରଚେଷ୍ଟା ଏବଂ ପରିଚର୍ଯ୍ୟାରେ ଆମ ସେକାଳର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ବାଞ୍ଛନିଧି ଶତପଥୀଙ୍କର ହିଁ ରହିଛି । ଉଚ୍ଚ-ଇଂରାଜୀଟିର ପ୍ରଥମ ପ୍ରଧାନ ଶିକ୍ଷକ ରୂପେ ବିଦ୍ୟାଳୟର ହତା ଭିତରେ ସେହି ପୁରୁଣା ପଣସଗଛଟି ପାଖରେ ତାଙ୍କର ପୂର୍ଣ୍ଣାବୟବ ମର୍ମର ମୂର୍ତ୍ତିଟି ତାହାର ସାକ୍ଷ୍ୟ ହିଁ ପ୍ରଦାନ କରୁଛି । ସଂସାରରୁ ବିଦାୟ ନେଇ ଯିବା ପର୍ଯ୍ୟନ୍ତ ତାଙ୍କ ସହିତ ବହୁବାର ସାକ୍ଷାତ ହୋଇଛି । ପ୍ରାତଃଭ୍ରମଣ କାଳରେ ସେ ଆମ ଘରେ ଆସି ଅଚାନକ ପହଞ୍ଚି ଯାଇଛନ୍ତି ଓ ଠିଆ ଠିଆ କେତେ କଥାବାର୍ତ୍ତା ପଡ଼ିଛି । ସିଏ ତାଙ୍କ ଜୀବନର ବହୁ ବହୁ ସଂଘର୍ଷର କଥା କହିଛନ୍ତି । ପୂରା ହସହସ ଓ ଅସୂୟାମୁକ୍ତ ମୁଦ୍ରାରେ ସବୁକିଛି କହିଛନ୍ତି ।

ବର୍ତ୍ତମାନ ଭାବୁଛି, ସାର୍‌ଙ୍କୁ ସେହି ପ୍ରଥମ ଉନ୍ମୋଚନର ବର୍ଷଗୁଡ଼ିକରେ ଶିକ୍ଷକ ରୂପେ ପାଇଥିଲି ବୋଲି ସମ୍ଭବତଃ ପରବର୍ତ୍ତୀ କାଳରେ ମୁଁ କେବଳ ଭଲ ଶିକ୍ଷକମାନଙ୍କୁ ହିଁ ପାଇଛି । ଦେଶରେ, ବିଦେଶରେ, ବିଦ୍ୟାଳୟରେ ଓ ବିଶ୍ୱବିଦ୍ୟାଳୟରେ ଆଦୌ କୌଣସି ବ୍ୟତିକ୍ରମ ଘଟିନାହିଁ । ପ୍ରକୃତରେ ଏହା ଏକ ମହାଭାଗ୍ୟର କଥା !



# ଚିରସ୍ମରଣୀୟ ଆଦର୍ଶ ଓ ମୋ ଶିକ୍ଷକ ଜୀବନ

**ନରେନ୍ଦ୍ର ନାଥ ମିଶ୍ର**

(୧)

## ଶିକ୍ଷା, ଶିକ୍ଷକ ଓ ସୃଜନଶୀଳତା

ପରାଧୀନତାର ଅନ୍ଧକାର ଦୂର କରିବା ପାଇଁ ଦୁଇଜଣ ମହାନ୍ ଗୁରୁ, କବି ଓ କର୍ମୀ ଭାରତରେ ଜନ୍ମ ହୋଇଥିଲେ। କବିଗୁରୁ ରବୀନ୍ଦ୍ରନାଥ ଓ ମହାତ୍ମାଗାନ୍ଧି- ଉଭୟେ ଥିଲେ ଲୋକ ଶିକ୍ଷକ। ମହାତ୍ମା ଶିକ୍ଷକଙ୍କୁ ମା' ଶିକ୍ଷକ ହେବା ପାଇଁ କହିଥିଲେ। ମା' ପରି ଶିକ୍ଷକ ସ୍ନେହ ଭରା ହୃଦୟରେ ଶିଶୁକୁ ସୁସ୍ଥ ଭାବରେ ବଞ୍ଚିବା, କର୍ମ କୁଶଳତା ଲାଭ କରିବାର ଶିକ୍ଷା ଦେବେ। ଖାଲି ଅକ୍ଷର ବା ଅଙ୍କ ଶିକ୍ଷା ଯଥାର୍ଥ ଶିକ୍ଷା ନୁହେଁ। ସାବରମତିରୁ ଜନ୍ମଲାଭ କରି ମୌଳିକ ଶିକ୍ଷାର ଏଇ ଆଦର୍ଶ ସାରା ଭାରତରେ ପ୍ରସାରିତ ହୋଇଥିଲା। ଶାନ୍ତିନିକେତନ ଆଶ୍ରମ ବିଦ୍ୟାଳୟ ସ୍ଥାପନ ପାଇଁ ଅଙ୍ଗୀକାର କରି ରବୀନ୍ଦ୍ରନାଥ ଲେଖିଥିଲେ- "ବିଶ୍ୱ ପ୍ରକୃତି ମଧ୍ୟରେ ଯେଉଁ ଶିକ୍ଷକ "ବହୁଧା ଶକ୍ତି ଯୋଗାଡ୍" ରୂପ, ରସ, ଗନ୍ଧ, ବର୍ଣ୍ଣ ପ୍ରବାହରେ ମଣିଷର ଜୀବନକୁ ସରସ ଫଳବାନ୍ କରି ଗଢୁଅଛି ସେଥିରୁ ଛିନ୍ନ କରି ଇସ୍କୁଲ୍ ମାଷ୍ଟରଙ୍କ ବେତ 'ବିରସ ଶିକ୍ଷା' ଶିଶୁମାନଙ୍କୁ ଗିଳେଇ ଦେବାକୁ ଚାହେଁ। ମୁଁ ସ୍ଥିର କଲି ଶିଶୁମାନଙ୍କୁ ଶିକ୍ଷା ମାଧ୍ୟମରେ ପ୍ରାଣରସ ପ୍ରବାହିତ କରିବା ପ୍ରୟୋଜନ।" (ରବୀନ୍ଦ୍ର ରଚ଼ନାବଳୀ, ୧୧ ଖଣ୍ଡ, ପୃ:୬୪୭)

ଏଇ 'ପ୍ରାଣରସ'କୁ ଆଜିର ବିଜ୍ଞାନ ଓ ଦର୍ଶନ ଭାଷାରେ କୁହାଯାଇପାରେ ସୃଜନଶୀଳତା। ନିଜର ସମସ୍ତ ଅଂଗ, ଶିରା ପ୍ରଶିରାର ଅନୁଭବକୁ ଏକତ୍ର କରି ସମସ୍ତ ପ୍ରତିକୂଳତା ଅତିକ୍ରମ କରି ମାନବ ପ୍ରଜାତି ମାତୃଗର୍ଭରୁ ଅର୍ଜନ କରେ ସୃଜନଶୀଳତା। ମାତୃଗର୍ଭର ସର୍ବୋତ୍ତମ ନିରାପଦ ଏକ ବିଶ୍ୱର ଆୟତନ ମଧ୍ୟରେ ଶହେରୁ କମ୍ ଦିନ ଗୋଟିଏ ଅଣୁକାୟ ଜୀବନିକା ହୋଇଥାଏ ଏକ ମହାନ୍ ସୃଜନ ଶକ୍ତି ସମ୍ପନ୍ନ ଶିଳ୍ପୀ। ସେ ନିଜକୁ ନିଜେ ଗଢ଼େ। ପ୍ରଥମେ ଗଢ଼ି ଉଠେ ମେଧା ପିଣ୍ଡ-ବ୍ରେନ୍। ତାହା ସାହାଯ୍ୟରେ ମାଆଠାରୁ ମିଳୁଥିବା ପୋଷଣ ଶକ୍ତି ଘେନି ସେ ଯେଉଁ ଦେହ ଗଢ଼େ ସେଥିରେ ଥାଏ ପରିପୂର୍ଣ୍ଣ ସମତା ଓ ସମନ୍ୱୟ

ଯାହା ପାଇଁ ମନୁଷ୍ୟ ପ୍ରଜାତି ସମଗ୍ର ପ୍ରାଣୀ ଜଗତରେ ଶକ୍ତିମାନ ଓ ବୁଦ୍ଧିମାନ ପ୍ରାଣୀର ଗୌରବ ଲାଭ କରିଥାଏ ।

ଜନ୍ମ ପରେ ଏଇ ସୃଜନଶୀଳ ଶକ୍ତି ତାକୁ ମାତୃସ୍ତନରେ ପୋଷଣ ପାଇଁ ପ୍ରେରିତ କରେ, ମାତୃଗର୍ଭର ଅନ୍ଧକାର ମଧ୍ୟରୁ ଆସି ଆଲୋକିତ ଜଗତଦୃଶ୍ୟ ଦେଖାଏ, ମାଆ ମୁହଁରୁ ମଧୁର ଧ୍ୱନି ଶୁଣି ଭାଷା ଶିଖେ, ଦୃଶ୍ୟମାନ ବସ୍ତୁର ରୂପ ଓ ଗୁଣର କଳନା କରେ। ଏହି ସୃଜନଶକ୍ତି ହିଁ ମାନବର ସମସ୍ତ ସାଧନା ଓ ସିଦ୍ଧିର ମୂଳଧାରା। ମାନବର ବିକଶିତ ଶୁଦ୍ଧ ଅନ୍ତରରେ ସଂଚ଼ିତ ଉତ୍ସାହ ଓ ଉଦ୍ଦୀପନା ଆଜୀବନ ମଣିଷକୁ ସୃଜନଶୀଳ କରି ରଖେ । ସୃଜନଶୀଳତା କେବଳ ମାନବ ମନର ଉନ୍ନତ କ୍ରିୟାରେ ନୁହେଁ, ତା'ର ସମସ୍ତ ଦେହ ପିଣ୍ଡର ଶିରା ପ୍ରଶିରାରେ ଅନୁଭବ ସଞ୍ଚାର କରେ। ଏହି ସୃଜନ ଅନୁଭବ ପ୍ରତିଫଳିତ ହୁଏ ମାନବର ସମସ୍ତ ମହତ୍ କର୍ମ ଓ ଭାବନାରେ । କଳା, ବିଜ୍ଞାନ, ଦର୍ଶନ, ସାହିତ୍ୟ, ଯନ୍ତ୍ର ଶକ୍ତି ମାନବ ପ୍ରଗତିର ସକଳ ଦିଗର ବିକାଶ ମୂଳରେ ଥାଏ ସୃଜନଶୀଳ ମନର ଦାନ। ଶିଶୁର ସୃଜନଶୀଳ ମନ ସର୍ବଦା ସଜୀବ, ମୁକ୍ତ ଓ ଚଞ୍ଚଳ। ବେଳେବେଳେ ଘରେ ବଡ଼ମାନେ କହନ୍ତି ପିଲାଟା ବଡ଼ ଦୁଷ୍ଟ। ସେଥିପାଇଁ ସ୍କୁଲ୍ ଘରେ ଆକଟ କରିବାକୁ ଛାଡ଼ିଦିଅନ୍ତି, ଶିଶୁର ମନକୁ ବୁଝିବାକୁ ଚେଷ୍ଟା ନ କରି ଦୈହିକ ଶାସ୍ତି ଦିଅନ୍ତି। ବିଦ୍ୟାଳୟ ଆଳୟର ମର୍ଯ୍ୟାଦା ହରାଇ ବେତ୍ରହସ୍ତ ନିର୍ଯ୍ୟାତନାର ଖୁଆଡ଼ ହୋଇଥାଏ। ସେଥିରେ ସମାଜ, ରାଷ୍ଟ୍ର ଓ ସମଗ୍ର ବିଶ୍ୱମାନବତାର ଅଧୋଗତି ଅନିବାର୍ଯ୍ୟ ହେବା ସ୍ୱାଭାବିକ। ଆଦର୍ଶ ଶିକ୍ଷକଙ୍କୁ ଖୋଜିବାକୁ ହେଲେ ଯିବାକୁ ହେବ ଉପନିଷଦ ଯୁଗକୁ। ତୈତ୍ତରୀୟ ଉପନିଷଦରେ ଋଷି ଶିଷ୍ୟଙ୍କୁ କହୁଛନ୍ତି- "ସହ ନା ଭବତୁ। ସହ ନୌ ଭୁନକ୍ତୁ। ସହବୀର୍ଯ୍ୟଂ କରବାବହୈ।" ଅର୍ଥାତ୍ ସଙ୍ଗରେ ବାସ କର। ସଙ୍ଗରେ ଭୋଗ (ଭୋଜନ) କର। ସମୂହ ଶକ୍ତିରେ କାର୍ଯ୍ୟ ସାଧନ କର। ସୃଜନଶୀଳତା ଚରମ ଦୁର୍ଦ୍ଦିନରେ ଭରସା ଦିଏ, ନିରାଶକୁ ସାହସ ଦିଏ। ଶିଶୁକୁ ସ୍ନେହ କରିବା ସୃଜନଶୀଳତାର ଧର୍ମ। ଶିଶୁ ହିଁ ହେଉଛି ଯଥାର୍ଥରେ କଳ୍ପିତ ଈଶ୍ୱରଙ୍କ ମୂର୍ତ୍ତି ପ୍ରତିମା। ସୃଜନଶୀଳ ବ୍ୟକ୍ତି କେବେ ନିଜ ମାଆଙ୍କୁ, ମାତୃଭାଷାକୁ ଭୁଲି ପାରନ୍ତି ନାହିଁ। ମାତୃଭାଷାର ଉତ୍ସରୁ ଉତ୍ସାରିତ ସ୍ରୋତରେ ଅବଗାହନ ସବୁ ମହାମନା ବ୍ୟକ୍ତିଙ୍କ ପାଇଁ ହୋଇଥାଏ ମହାନ୍ ଶକ୍ତି। ସେମାନଙ୍କର ସମସ୍ତ କ୍ରିୟା ମାନବ ଜୀବନର ପୋଷଣରେ, ପ୍ରକୃତିର ସୁରକ୍ଷାରେ; ଭାଷା ମାନବ ହୃଦୟକୁ ରସସିକ୍ତ

କରିବାରେ, ଆଉ ଭାବ ଉଚ୍ଚ ଗିରି, ଗଭୀର ସାଗର, ବିଶାଳ ନଭ ମଣ୍ଡଳରେ ଚିରକାଳ ବାଧାହୀନ ଗତି ଲାଭ କରି ସତେ ଅବା ରକ୍ଷା କରେ ସ୍ଥାନ-କାଳର ଚିରନ୍ତନ ସ୍ଥିତି, ଯାହା ଅବାଧରେ ସକଳ ବସ୍ତୁ ଓ ଘଟଣାର ସ୍ଥିତି ନିରୂପଣ କରିପାରେ।

(୨)

## ବାଲ୍ୟସ୍ମୃତି - ପ୍ରାଥମିକ ଶିକ୍ଷା ଓ ଶିକ୍ଷକ

ଦ୍ୱିତୀୟ ଶୈଶବର ବାଲୁକା ବେଳାରେ ଠିଆ ହୋଇ ଆନନ୍ଦମୟୀ ଶ୍ୟାମଭୂମିର ସ୍ୱପ୍ନ ଦେଖିଲେ ଆନନ୍ଦ ଓ ଆଶଙ୍କା ମନକୁ ଆଚ୍ଛନ୍ନ କରିଥାଏ। ନିଜ ପିଲାଦିନ କଥା କହିଲେ କହିବା ଲୋକକୁ ଯେତେ ସୁଖ ଲାଗେ, ଶୁଣିବା ଲୋକକୁ ହୁଏ ତ ତାହା ବିରକ୍ତିକର ଲାଗିପାରେ। ସେ ଭାବୁଥିବ ବୁଢ଼ା ବନେଇ ଚୁନେଇ କହୁଛି। ନିଜ ଅନ୍ତରରେ କହିବା ଲୋକ ଭାବେ ମୁଁ ଯାହା କହୁଛି - ସେ ସବୁ ସତ ତ ? ତଥାପି ଅଭୁଲା ସ୍ମୃତିରୁ ଅପ୍ରାସଙ୍ଗିକ ନ ହେଲା ଭଳି କିଛି ଲେଖୁଛି। ମୋ ଜନ୍ମସ୍ଥାନ ଗିଲୀଦା, ଗୋଟିଏ ସାନ ଗ୍ରାମ। ଦୁଇ ଘର ଛାଡ଼ି ସମସ୍ତେ ବ୍ରାହ୍ମଣ। ଦାନୁଆ ବ୍ରାହ୍ମଣ (ପୂଜକ ବ୍ରାହ୍ମଣ)ଙ୍କ ଚଉପାଢ଼ିରେ ପିଲାଦିନରୁ ପୂଜା ବିଧି ଓ ମନ୍ତ୍ର ଶିଖା ଯାଏ। ସଂସ୍କୃତ ଟୋଲ୍‌ରେ କିଛିଦିନ ପଢ଼ିବା ପରେ କେହି ଆଗକୁ ଯା'ନ୍ତି ନାହିଁ। ମୋ ଦଦେଇ ସୋମନାଥ ମିଶ୍ରଙ୍କ ବଡ଼ ପୁଅ ଜଣେ କଂଗ୍ରେସ କର୍ମୀ ଥିଲେ। ତାଙ୍କରି ଉଦ୍ୟମରେ ଆମ ଗାଁରେ ନିମ୍ନ ପ୍ରାଥମିକ ସ୍କୁଲ୍ ଖୋଲିଥିଲା। ଏଥିରେ ପ୍ରଥମ ଶିକ୍ଷକ ସମୁଦ୍ର କୂଳବର୍ତ୍ତୀ ତାଳପଦା ଗ୍ରାମ ମହୀନ୍ଦ୍ର କବି ଆମ ଘରେ ରହିଥିଲେ। ମୋ ନାନୀ, ବଡ଼ ଭାଇ ଓ ମଝିଆଁ ଭାଇ ତାଙ୍କଠାରୁ ପାଠ ପଢୁଥିଲେ। ମୁଁ ଥିଲି ଶେଜ ଶୋଇବାପିଲା। ମୁଁ ସବା ସାନ। ମୋ ନାନୀ ସମସ୍ତଙ୍କ ଭିତରେ ବଡ଼ ଥିଲେ। ବଡ଼ ଭାଇ ମୋ ଠାରୁ ପନ୍ଦର ବର୍ଷ ଓ ତାଙ୍କ ତଳ ଭାଇ ମୋ ଠାରୁ ଦଶ ବର୍ଷ ବଡ଼ ଥିଲା। ଆମ ଘରେ ମୋର କେହି ସାଙ୍ଗ ନଥିଲେ। ମୁଁ ଟିକିଏ ବଡ଼ ହେବା ପରେ ମୋର ସାଙ୍ଗ ଥିଲେ ପିତାମାତାଙ୍କ ଏକ ମାତ୍ର ଅଲିଅଳ ପୁଅ ଗଙ୍ଗାଧର। ତାଙ୍କ ପିତା ହରିହର ପଣ୍ଡା ଥିଲାବାଲା। ତେବେ ତାଙ୍କର ଗୋଟିଏ ଦୁଃଖ ଥିଲା - ଅଧା ବୟସ ପର୍ଯ୍ୟନ୍ତ ସେ ଥିଲେ ନିଃସନ୍ତାନ। ଗାଁ ମଝି ବରଗଛ ମୂଳରେ ଚାଳିଆ ଘରେ ମହାଦେବଙ୍କ ଅବସ୍ଥାନ। ସିଏ କୁଆଡ଼େ ଏହି ମହାଦେବଙ୍କ ପାଇଁ ପକ୍କା ମନ୍ଦିର ଗଢ଼ି ମାନସିକ କରି ପୁଅଟିଏ ପାଇଥିଲେ। ଯଥା

ସମୟରେ ପୁଅକୁ ସ୍କୁଲ୍‌କୁ ଛାଡ଼ିଲେ । ସେତେବେଳକୁ ମହୀନ୍ଦ୍ର ମାଷ୍ଟ୍ରେ ଆମ ଗାଆଁ ଛାଡ଼ି ନିଜ ଗାଁ ତାଳପଦା ଉଚ୍ଚ ପ୍ରାଥମିକ ସ୍କୁଲ୍‌କୁ ଚାଲି ଯାଇଥିଲେ । ଜଣେ ଭର୍ଣ୍ଣାକୁଲାର ପଢ଼ି ଅବଧାନିଆ ମାଷ୍ଟ୍ର ସ୍କୁଲ୍ ଚଳାଉଥିଲେ । ଅଳ୍ପ କେତେଦିନ ସ୍କୁଲ୍‌ରେ ବସିବା ପରେ ଗଙ୍ଗାଧର ଦିନେ କାନ୍ଦି କାନ୍ଦି ସ୍କୁଲ୍‌ରୁ ଫେରିଲେ । ଶିକ୍ଷକଙ୍କ ବେତ ମାଡ଼ ତାଙ୍କୁ ଖଣ୍ଡିଆ ଖାବରା କରିଥିଲା । ମାଆ କାନ୍ଦିଲେ । ମୁହଁକୁ ଭାତ ଗଲା ନାହିଁ । ପିତା କ୍ରୋଧରେ ଅଗ୍ନିଶର୍ମା ହୋଇ ଶିକ୍ଷକଙ୍କୁ ମାରପିଟ୍ କରିବାକୁ କହିଲେ । ଅଳ୍ପ କିଛିଦିନ ପରେ ଆମ ସ୍କୁଲ୍ ଛାଡ଼ି ଶିକ୍ଷକ ଚାଲିଗଲେ । ଗଙ୍ଗାଧର ହେଲେ ଚାହାଳି ଚୋର ।

ଆମ ଗାଁର ଯଦୁନାଥ ଦାଶ ମଧ୍ୟ-ଇଂରାଜୀ ସ୍କୁଲ୍‌ରୁ କୃତିତ୍ୱ ଲାଭ କରି ଶିକ୍ଷକ ଟ୍ରେନିଂ ସ୍କୁଲ୍‌ରୁ ପାଶ୍ କରିଥା'ନ୍ତି । ତାଙ୍କର ସଦା ପ୍ରସନ୍ନ ମୁହଁ ଚାହିଁଲେ ମନେ ହେଉଥିଲା ଏ ଜଣେ ସ୍ନେହଶୀଳ, ଦୃଷ୍ଟିଶୀଳ ବ୍ୟକ୍ତି । କାହାକୁ ଦୁଃଖ ଦେବା ଯେପରିକି ତାଙ୍କ ଜାତକରେ ନଥିଲା । ମୁଁ ସେ ପର୍ଯ୍ୟନ୍ତ ସ୍କୁଲ୍‌କୁ ଯାଇ ନଥିଲି । ଘରେ ଥାଇ ଲେଖା ପଢ଼ା ଆରମ୍ଭ କରି ଦେଇଥିଲି । ମାଆ ବାପା ଭାଇ ଭଉଣୀ ସମସ୍ତଙ୍କୁ ମୁଁ ମୋ ପଢ଼ାରେ ଲଗାଇଥିଲି । ମାଆ ନିରକ୍ଷର ଥିଲା । ତେବେ ସମସ୍ତଙ୍କଠାରୁ ବେଶି ପଢୁଥିଲା । ଘରେ ପୁରାଣ ପଣ୍ଡା ବ୍ରାହ୍ମଣ ପୋଥି ପଢୁଥିଲେ । ମାଆ ସବୁ କାମ ଛାଡ଼ି ଶ୍ରୋତା ହୋଇ ବସୁଥିଲା । ସେ କଲ୍ୟାଣୀ ଗ୍ରାମର ମକ୍‌ଦମ ଘର ଝିଅ । ଚାଲି ଚଳଣୀ ରନ୍ଧା ବଢ଼ା ସବୁ କାମରେ ତା'ର ସୁଗୁଣ ପ୍ରକାଶ ପାଉଥିଲା । ଅଜା ଜଣେ ବଡ଼ କବିରାଜ ଥିଲେ । ମାଆ ଚେରମୂଳି ଯୋଗାଡ଼ କରି ନାନା ରୋଗ ଭଲ କରି ଦେଉଥିଲା । ମୁଖେ ମୁଖେ ସାଧାସିଧା ହିସାବ କରିପାରୁଥିଲା । ଆମ ଘରେ ଗୋଟିଏ ଛୋଟ ତେଜରାତି ଦୋକାନ ସେ ଚଳାଇଥିଲା । ପାଞ୍ଚ ଛଅ ବର୍ଷ ପର୍ଯ୍ୟନ୍ତ ମୋତେ କେବେ ପାଖରୁ ଛାଡୁ ନଥିଲା । ତା' ପାଖରୁ ଗପ ଓ ଗୀତ ଶୁଣିବାକୁ ପିଲାଏ ଆସି ରୁଣ୍ଡ ହେଉଥିଲେ । ମୁଁ ମୋର କୌତୁହଳ ମେଣ୍ଟାଇବାକୁ ତାକୁ କେତେ କ'ଣ ପଚାରେ । ସେ ଜାଣିଥିଲେ କହେ, ନୋହିଲେ ମୋତେ କହେ, ତୋ ପେଟରେ ଏଇଦିନୁ ବଙ୍କା ଅକ୍ଷର ପଶିଲାଣି । ତୋତେ କୌଣସି କଥା ଅଜଣା ରହିବ ନାହିଁ । ଗଙ୍ଗାଧରଙ୍କ ମାଆ ଗୌରୀ ମାଉସୀ ମୋତେ ଖୁବ୍ ସ୍ନେହ ଆଦର କରୁଥିଲେ । ମୋ ମାଆଙ୍କୁ ଖୁବ୍ ନିଜର କରି ରଖିଥିଲେ । ତାଙ୍କ କଥାରେ ଏଥର ମାଆ ମୋତେ ସ୍କୁଲ୍ ଯିବାକୁ ଛାଡ଼ିଲା ।

ଦିନେ ମାଷ୍ଟ୍ରେ ଆମ ଘରକୁ ଆସି ବାପାଙ୍କୁ ଓ ମୋତେ ସ୍କୁଲ୍‌କୁ ଘେନିଗଲେ ।

ବାପା ସାଙ୍ଗରେ ସିଧା (ଚାଉଳ ଡାଲି ପରିବା ଆଦି) ଓ ନୂଆ ସିଲଟ୍ ଖଡ଼ି ଘେନି ଯାଇଥିଲେ। ସ୍କୁଲ୍‌ରେ ମୋର ନାମ ଲେଖା ହେଲା ଶିଶୁ ଶ୍ରେଣୀରେ। ତେବେ ମାଷ୍ଟ୍ରେ ପ୍ରଥମ ଶ୍ରେଣୀ ପାଠ ପଢ଼ାଇଲେ। ଫଳରେ ସ୍କୁଲ୍‌ର ପଢ଼ା ସମୟ ଶେଷ ହେବାର ବର୍ଷକ ପୂର୍ବରୁ ମୋର ପାଠ ପଢ଼ା ଶେଷ ହୋଇଗଲା। ମୋତେ ପ୍ରାଥମିକ ବୃତ୍ତି ପରୀକ୍ଷା ପାଇଁ ମାଷ୍ଟ୍ରେ ସମସ୍ତ ବିଷୟ ରିଭିଜନ କରାଇଥିଲେ। ତାଙ୍କ ଯତ୍ନ ଓ ସ୍ନେହକୁ ପାଥେୟ କରି ମୁଁ ନିମ୍ନ ପ୍ରାଥମିକ ବୃତ୍ତି ଲାଭ କରିଥିଲି। ମୋର ବୃତ୍ତି ଲାଭକୁ ସେ ନିଜର ଶିକ୍ଷକ ଜୀବନର ପ୍ରଥମ ସଫଳତା ବୋଲି ମନେକରୁଥିଲେ।

ଅବସ୍ଥା କ୍ରମେ ନିମ୍ନ ପ୍ରାଥମିକ ପଢ଼ା ସାରି ମୋତେ ଗାଁ ଛାଡ଼ିବାକୁ ପଡ଼ିଥିଲା। ତାଳପଦା ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଆମ ଘରକୁ ଆସି ମୋତେ ଘେନି ଗଲେ। ମୋ ମାମୁଁ ପୁଅ ବି ସେଇଠି ପଢ଼ିଲା। କିଛିଦିନ ମାମୁଁ ଘରେ ରହି ଆମେ ଦୁହେଁ ତାଳପଦା ସ୍କୁଲ୍‌କୁ ଗଲାପରେ ତାକୁ ଜ୍ୱର ହେଲା। ତାକୁ ହୋମିଓପାଥି ଔଷଧ ଖୁଆଏଁ। କଲ୍ୟାଣୀର ଜଣେ ହୋମିଓପାଥି ପ୍ରାକ୍‌ଟସନାରଙ୍କ ଖୁବ୍ ନାମଯଶ ଥିଲା। କେହି ତାକୁ ରଖିପାରିଲେ ନାହିଁ। ମୋର ଆଉ ମାମୁଁ ଘରେ ରହିବା ପାଇଁ ସୁଖ ଲାଗିଲା ନାହିଁ। ଘରେ ବସିଲି। ସବୁକଥା ଜାଣି ମହୀନ୍ଦ୍ର ମାଷ୍ଟ୍ରେ ତାଳପଦାରେ ରହି ପଢ଼ିବା ବ୍ୟବସ୍ଥା କରିଦେଲେ। ସେ ଦିନ ସ୍କୁଲ୍ ଛୁଟିହେବା ପରେ ରାଜୁମାଷ୍ଟ୍ରେ ମୋତେ ଘରକୁ ଡାକି ନେଲେ। ସେ ଦାଶ ଘର ଗାଁ ମକଦମ ଥିଲେ। ସେମାନେ ବିତ୍ତଶାଳୀ ଓ ଅଭିଜାତ ପରିବାରର ହୋଇଥିଲେ ବି ରାଜକିଶୋର ଦାସ ସ୍କୁଲ୍‌ରେ ଶିକ୍ଷକତା କରୁଥିଲେ, ଗାଆଁରେ ଲୋକଙ୍କ ହାନୀଲାଭ ବୁଝୁଥିଲେ। ତାଙ୍କର ଦୀର୍ଘକାୟ, ଗୌରବର୍ଣ୍ଣ ଶରୀର ଓ ପ୍ରସନ୍ନ ମୁହଁରେ ଜଣେ ମହତ ବ୍ୟକ୍ତିଙ୍କ ପରିଚ୍ୟ ମିଳୁଥିଲା। ସେ ମୋତେ ସ୍ତ୍ରୀଙ୍କ ପାଖରେ ଛାଡ଼ି କହିଲେ ଏଇ ପିଲାଟିକୁ ତୁମ ପୁଅ ଭଳି ପାଳିବ। ସେ ବାପା ମା'ଙ୍କୁ ଛାଡ଼ି ଆସିଛି। ସେଥିପାଇଁ ତା' ମନରେ ଯେମିତି ଆଦୌ ଦୁଃଖ ନ ରହେ। ମୋତେ ଯିଏ ସେ ଦିନ ଆଦରି ନେଲେ ପ୍ରକୃତ ମାଆ ପରି ସେ ମୋତେ ସ୍ନେହ କରୁଥିଲେ। ମୋ ଜୀବନରେ ଏପରି ସୁଖ ଦିନ କେବେ ଆସିବ ମୁଁ ଭାବୁ ନଥିଲି। ସେଠାରେ ମୋତେ ସ୍ନେହ ସଂଗେ ମିଳୁଥିଲା ଅଖଣ୍ଡ ସ୍ୱାଧୀନତା ଯାହା ଆମ ନିଜ ଘରେ ମିଳୁ ନଥିଲା। ମା' ବାପା, ବଡ଼ ଭାଇ, ଭଉଣୀ କେହି ନା କେହି ଜଗି ରଖି ଆକଟ କରୁଥିଲେ।

ତାଳପଦା ସମୁଦ୍ର କୂଳ ଗାଁ, ପାଖରେ ନୂଆ ନଈ (କୋଷ୍ଟ କ୍ୟାନେଲ୍)

ସମୁଦ୍ର କୂଳରେ ଗୋଟିଏ ପଙ୍ଗା ଲୁଣ କାରଖାନା ଥିଲା। ନୂଆ ନଈର ଜୁଆର ଭଟ୍ଟା, ସମୁଦ୍ର କୂଳର କଇଁସାରି ନଟା ଓ ବର୍ଦ୍ଧନା ଘାସର ବିରାଟ ବେଳାରେ ମଇଁଷି ଓ ଗୋରୁ ଗୋଠ, ସ୍ଥାନେ ସ୍ଥାନେ ହରିଣୀ ଦଳ ବୁଲୁଥିଲେ। ଲାଲ୍ କଙ୍କଡ଼ା ବେଳାଭୂମିକୁ ଚିତ୍ରିତ କରୁଥିଲେ। ଖେଳ ଶିକ୍ଷକ ଆମକୁ ସମୁଦ୍ର କୂଳକୁ ବୁଲାଇ ନେଉଥିଲେ। ଛୁଟି ଦିନରେ ପିଲାମାନେ ସମୁଦ୍ର କୂଳକୁ ଖେଳିବାକୁ କେବେ କେବେ ଚାଲିଯାଉଥିଲେ। ମୋତେ ମନେ ହେଉଥିଲା ସତେ ଯେପରି ପ୍ରକୃତିର ସ୍ୱପ୍ନ ରାଜ୍ୟରେ ଅଛି। ମାସରେ ଥରେ ଦି'ଥର ରାଜୁ ମାଷ୍ଟ୍ରେ ମୋତେ ଆମ ଘରକୁ ପଠାଇ ଦେଉଥିଲେ ମା'କୁ ଦେଖି ଆସିବା ପାଇଁ। ସଙ୍ଗରେ ଜଣେ ଲୋକ ସମୁଦ୍ର ମାଛ, ନଡ଼ିଆ ଆଦି ଧରି ଯାଉଥିଲା। ଘରେ ଏସବୁ ଖିଆ ଯାଇପାରୁ ନଥିଲା। ନାନୀ ଶ୍ୱଶୁର ଘରକୁ ପଠାହେଉଥିଲା।

ସ୍କୁଲ୍‌ର ପ୍ରଧାନ ଶିକ୍ଷକଙ୍କ ପୁଅ ଅନିରୁଦ୍ଧ ମୋ ସଙ୍ଗରେ ପଢୁଥିଲା। ସେ ମୋତେ ଅନେକ ସମୟରେ ଘରକୁ ଡାକି ନେଉଥିଲା। ମାଷ୍ଟ୍ରଙ୍କ ଘରେ ମୋତେ ଖୁବ୍ ସ୍ନେହ ଆଦର କରୁଥିଲେ।

ଅନିରୁଦ୍ଧ ଭଲ ପଢୁଥିଲା। ସେ ଓ ମୁଁ ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷା ପାଇଁ ନିର୍ବାଚିତ ହୋଇଥିଲୁଁ। ଗୋପାଳପୁର ଛୋଟ ଗାଁଟିଏ। ସେଠାରେ ବାଲେଶ୍ୱର ବାସୁଦେବପୁର ଓ ବାହାନଗା ତାଳପଦା ମାଟି ସଡ଼କ ଛକରେ ଖୁବ୍ ବଡ଼ ଅନାବାଦୀ ପଡ଼ିଆ ଥିଲା। ସେତେବେଳେ ସୋରରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ଥିଲା। ଗୋପାଳପୁରରେ ଅବଶ୍ୟ ଉଚ୍ଚପ୍ରାଥମିକ ବିଦ୍ୟାଳୟ ଥିଲା। ଗୋପାଳପୁରରେ ଖୋଲା ଯାଇଥିବା ନୂଆ ମଧ୍ୟ-ଇଂରାଜୀ ସ୍କୁଲରେ ମୋତେ ଦିଆଗଲା। ମୁଁ ତା'ର ଯଥୋଚିତ ଉତ୍ତର ଦେଇ ଷଷ୍ଠ ଶ୍ରେଣୀରେ ପଢ଼ିଲି। ଯେଉଁମାନେ ଇଂରେଜୀ ଜାଣୁନଥିଲେ ସେମାନେ ଉଚ୍ଚ ପ୍ରାଥମକି ପାଶ୍ କରି ବି ପୁଣି ଚତୁର୍ଥ ଶ୍ରେଣୀରେ ପଢୁଥିଲେ। ନୂଆ ସ୍କୁଲ୍‌ର ଖ୍ୟାତି ପାଇଁ ଶିକ୍ଷକମାନେ ଖୁବ୍ ଯତ୍ନରେ ପଢ଼ାଉଥିଲେ। ହେଡ୍‌ମାଷ୍ଟର ବଡ଼ ସଦାଶୟ ଲୋକ ଥିଲେ। ମଧ୍ୟ-ଇଂରାଜୀ ପରୀକ୍ଷା ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ରେ ହୋଇଥିଲା। ପରୀକ୍ଷାର୍ଥୀ ପିଲା ଓ କିଛି ଶିକ୍ଷକଙ୍କୁ ସେ ବାଲେଶ୍ୱରରେ ନିଜ ଘରେ ପ୍ରାୟ ଦଶ ପନ୍ଦର ଦିନ ରଖି ପଢ଼ିବାର ବ୍ୟବସ୍ଥା କରିଥିଲେ। ସେଥିପାଇଁ ପିଲାମାନେ ପରୀକ୍ଷାରେ ଭଲ ଫଳ ପାଇଥିଲେ।

(୩)

## ଉଚ୍ଚ ଇଂରାଜୀ ବିଦ୍ୟାଳୟର ଶିକ୍ଷା ଓ ଶିକ୍ଷକ

ମୁଁ ମଧ୍ୟ-ଇଂରାଜୀ' ପଢ଼ିସାରି ଅବସ୍ଥା ଚକ୍ରରେ ବାରିପଦା ହାଇସ୍କୁଲ୍‌ରେ ପଢ଼ିଲି। ସେତେବେଳେ ବାରିପଦା ହାଇସ୍କୁଲ୍‌ର ଖୁବ୍ ଖ୍ୟାତି ଥିଲା। ଉଚ୍ଚ ଶିକ୍ଷିତ ବହୁ ଖ୍ୟାତନାମା ଶିକ୍ଷକ ଥିଲେ। ରାୟ୍ ବାହାଦୁର ବିଶ୍ୱନାଥ ମିଶ୍ର ପ୍ରଧାନ ଶିକ୍ଷକ ଥିଲେ। ମୁଁ ପଢ଼ିବା ବେଳେ ସେଠାକୁ ଦୁଇଜଣ ଖ୍ୟାତିମାନ ନୂଆ ଶିକ୍ଷକ ଆସି ଯୋଗ ଦେଇଥିଲେ। ସେମାନେ ସଂସ୍କୃତ ପଢ଼ାଉଥିଲେ। ଜଣେ ସୁପଣ୍ଡିତ ପ୍ରହଲ୍ଲାଦ ପ୍ରଧାନ ଓ ଅନ୍ୟ ଜଣକ କୁଞ୍ଜବିହାରୀ ଦାଶ। କୁଞ୍ଜବିହାରୀ ଅଷ୍ଟମ ଶ୍ରେଣୀରେ ମୋତେ ସଂସ୍କୃତ ପଢ଼ାଉଥିଲେ। ସେ ୧୯୪୨ ସେପ୍‌ଟେମ୍ବର ମାସରେ ସ୍କୁଲ୍‌ରେ ଯୋଗ ଦେଇଥିଲେ। ମାତ୍ର ଚାରି ମାସ ସେ ଥିଲେ। ତାଙ୍କର ସଂସ୍କୃତ ପଢ଼ାଇବା ଧାରା ଆମ ପାଇଁ ସଂପୂର୍ଣ୍ଣ ନୂଆ, ମାତ୍ର ଅତୀବ ଶିକ୍ଷଣୀୟ ଥିଲା। ତାଙ୍କ ଶ୍ରେଣୀରେ ସଂସ୍କୃତ ଆଉ ଗୋଟିଏ ନୀରସ ଘୋଷା ପାଠ ନଥିଲା। ଲୋକ ସାହିତ୍ୟରୁ ଆରମ୍ଭ କରି ସଂସ୍କୃତ ସାହିତ୍ୟର ବିକାଶ ଧାରା ପର୍ଯ୍ୟନ୍ତ ସବୁ କଥା ଆମକୁ ନୂଆ ଲାଗୁଥାଏ। ଆମ ପଢ଼ା ଆଉ ନୀରସ ବ୍ୟାକରଣ, ହିତୋପଦେଶ, ଚାଣକ୍ୟ ନୀତି ଶ୍ଳୋକ ମଧ୍ୟରେ ସୀମାବଦ୍ଧ ହୋଇ ରହିଲା ନାହିଁ। ସବୁ ପୁରାଣ କବି ଓ ମହାକବିଙ୍କ ପ୍ରସଙ୍ଗ ଚର୍ଚ୍ଚା ହେଲା। ସେମାନଙ୍କ ନିର୍ବାଚିତ ଶ୍ଳୋକ ଶୁଣାଉଥିଲେ। କୁଞ୍ଜବିହାରୀ କଲିକତା ବିଶ୍ୱବିଦ୍ୟାଳୟର ଆଧୁନିକ ଭାରତୀୟ ଭାଷା ସାହିତ୍ୟ ବିଭାଗରୁ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଓଡ଼ିଆରେ ଏମ୍.ଏ. ପାଶ୍ କରିଥିଲେ। ସେ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣ ପଦକ ଲାଭ କରିଥିଲେ। ବି.ଏ. ଶ୍ରେଣୀରେ ରେଭେନ୍‌ସା କଲେଜରେ ସଂସ୍କୃତ ଓ ଇତିହାସ ତାଙ୍କର ପାଠ୍ୟ ବିଷୟ ଥିଲା। ପ୍ରାଇଭେଟ୍ ଭାବେ କଲିକତା ବିଶ୍ୱବିଦ୍ୟାଳୟ ସଂସ୍କୃତ ଏମ୍.ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ। କୁଞ୍ଜବିହାରୀଙ୍କ ସୃଜନ ପ୍ରତିଭା ଅସାମାନ୍ୟ ଥିଲା। ସେ ଲୋକ ଗୀତ, ଲୋକ କଥାକୁ ଲୋକ ମୁଖରୁ ସଂଗ୍ରହ କରି ଅନବିଦ୍ୟ ସ୍ୱାଭାବିକ ସରଳ ସରସତାକୁ ଅମ୍ଳାନ ରଖି ଲୋକସାହିତ୍ୟକୁ ଲିଖିତ ରୂପ ଦେବାକୁ ପ୍ରୟାସ କରିଥିଲେ। ଆମକୁ ଜଣେ ଜଣେ ଛାତ୍ର ବୋଲି ସେ ବିଚାରୁ ନଥିଲେ। ତାଙ୍କ ଦୃଷ୍ଟିରେ ଆମେ ଚିର ସୃଷ୍ଟିଶୀଳ ଲୋକ ସମାଜର ଅଙ୍ଗ। ମାତା, ପିତା, ଗୁରୁଜନ, ନିଜ ଗ୍ରାମବାସୀ କେହି ନିରକ୍ଷର ଥିଲେ ବି ସେମାନଙ୍କୁ ଅଶିକ୍ଷିତ ବୋଲି ଯେପରି ଆମେ ନ ବିଚାରୁ, ଆଉ ସେମାନଙ୍କ ମୁଖର ଗୀତ, ଗପ, ଢଗ ଢମାଳୀ ଶୁଣି

ସେସବୁକୁ ଲିପିବଦ୍ଧ କରିବାକୁ ଅତି ଉତ୍ସାହ ଭରା ଉପଦେଶ ଦେଉଥିଲେ। କୁଞ୍ଜବିହାରୀ ନିଜେ ଜଣେ ପ୍ରତିଭାବାନ୍ କବି ଓ ଲେଖକ ଥିଲେ. ବି.ଏ. ଶ୍ରେଣୀ ଛାତ୍ର ସମୟରୁ ସେ କବିତା ଲେଖି ସ୍ୱନାମଧନ୍ୟ 'ସହକାର' ପତ୍ରିକାରେ ପ୍ରକାଶ କରିଥିଲେ। ସେ ଆମକୁ ପାଠ୍ୟ ସଂସ୍କୃତ ଶ୍ଳୋକକୁ ଘେନି ଓଡ଼ିଶାରେ ମାତ୍ରାବୃତ୍ତ ଛନ୍ଦରେ କବିତା ଲେଖିବାକୁ ଶିଖାଉଥିଲେ, ତାଙ୍କ ରଚିତ ଶିଶୁଙ୍କ ପାଇଁ ଲେଖା କବିତା ଶୁଣାଇ ଆମକୁ ମୁଗ୍ଧ କରୁଥିଲେ। କୁଞ୍ଜବିହାରୀ ନିଜେ ଉଚ୍ଚ ଇଂରାଜୀ ସ୍କୁଲ୍‌ରେ ପଢୁଥିବା ବେଳେ ଓଡ଼ିଆ ସାହିତ୍ୟର ମହାନ୍ କବି, ବିଦଗ୍ଧ ମନୀଷୀ ମାୟାଧର ମାନସିଂହଙ୍କ ଛାତ୍ର ଥିଲେ। ସେ ନିଜେ ଗୁରୁଙ୍କ ଆଦର୍ଶ ପ୍ରଭାବରେ କବିତା ଲେଖା ଅଭ୍ୟାସ କରିଥିଲେ। ସେଇ ସମୟରେ ମୁଁ 'ଅତିଥି ପୂଜା' କବିତା ଲେଖି ମୋ ଗୁରୁଙ୍କ ପ୍ରଶଂସା ପାଇଥିଲି। ସେଥିରେ ଗୋଟିଏ ଶ୍ଳୋକରେ ଅନୁବାଦ ଦୃଷ୍ଟାନ୍ତ ହେଉଛି -

"ଉତ୍ତମସ୍ୟାପି ବର୍ଣ୍ଣସ୍ୟ ନୀଚୋଽପି ଗୃହମାଗତଃ
ପୂଜନୀୟୋଽ ଯଥଯୋଗ୍ୟ ସର୍ବଦେବମୟୋଽତିଥିଃ"
"କୋଟି ଜଗତର ଦେବତା ଅତିଥି ନାହିଁ ତା'ର ଜାତି ଶୀଳ ବିଚାର।
ସାନ ବଡ଼ ଭାବ ଭୁଲିରେ ସହଜେ କର ଯଥାଯୋଗ୍ୟ ପୂଜା ତାହାର।"

କବିତାର ଅନୁବାଦ ଆକ୍ଷରିକ ହୋଇ ନଥିଲେ ବି ତାହାର ଭାବ ସୁନ୍ଦର ଭାବରେ ପ୍ରକାଶ ପାଇଛି ବୋଲି ମୁଁ ପ୍ରଶଂସିତ ହୋଇଥିଲି। କୁଞ୍ଜ ବିହାରୀ ନିଜ ଛାତ୍ରମାନଙ୍କୁ ଉଚ୍ଚ ଚରିତ୍ରଗଠନ ପାଇଁ ନିଜ କବିତା ଶୁଣାଇଥିଲେ।

ସିଂହ ଶିଶୁ ଉଠିବିରେ
ମନ୍ଦଗୁଣ ଗୋଟିକି ଗୋଟି ଖଣ୍ଡାଧାରେ କାଟିବିରେ।

ବା

ନମସ୍କାର ନିଅ ହେ ପ୍ରଭୁ ନମସ୍କାର ନିଅ
ମନଟି ମୋର ଫୁଲଟି ପରି ଫୁଟାଇ ଦିଅ ଦିଅ।

କେବଳ ଶ୍ରେଣୀଗୃହ ଭିତରେ ଶିକ୍ଷା ଛାତ୍ରମାନଙ୍କୁ ଉଚ୍ଚ ମନର ଅଧିକାରୀ କରିପାରିବ ନାହିଁ। ସେମାନେ ମହାନ୍ ବିଚିତ୍ର ପ୍ରକୃତିର ସୌନ୍ଦର୍ଯ୍ୟ ଜଗତରୁ ଆନନ୍ଦ ଓ ଅନୁଭବ ଆହରଣ କରିବା ପ୍ରୟୋଜନ। ସେ ଏଥିପାଇଁ ମୟୁରଭଞ୍ଜ ରାଜ୍ୟର ଶିକ୍ଷା ବିଭାଗକୁ ପ୍ରସ୍ତାବ ଦେଇ ବିଫଳ ହେବାରୁ ଭଗ୍ନ ମନସ୍କ ହୋଇଥିଲେ। ସ୍ୱଇଚ୍ଛାରେ ସ୍କୁଲ୍ ଶିକ୍ଷକତା ତ୍ୟାଗ କରିଥିଲେ।

**ସ୍ମୃତିରେ ଶିକ୍ଷକ**

ବାରିପଦା ହାଇସ୍କୁଲ୍ ଶିକ୍ଷକଙ୍କ ମଧ୍ୟରେ ଅନେକ ଥିଲେ ଯେପରି ବିଦ୍ୱାନ ସେଇପରି ଛାତ୍ର ବତ୍ସଳ। ଇତିହାସ ଶିକ୍ଷକ କାଶିନାଥ ସାର୍ ସତ୍ୟବାଦୀ ବନବିଦ୍ୟାଳୟ୍ ଛାତ୍ର। କର୍ତ୍ତବ୍ୟନିଷ୍ଠ। ପ୍ରଥମ ଥର ପାଇଁ ଇଂଲଣ୍ଡ ଇତିହାସ ବଦଳରେ ସଂକ୍ଷିପ୍ତ ବିଶ୍ୱ ଇତିହାସ ଆମକୁ ପଢ଼ାଗଲା। ଓଡ଼ିଆରେ କୌଣସି ବହି ନଥିଲା। ସାର୍ ଇଂରାଜୀ ବହି ଖଣ୍ଡିଏ ହାତରେ ଧରି ଓଡ଼ିଆରେ ଅତି ପ୍ରାଞ୍ଜଳ ସ୍ୱାଭାବିକ ରୀତିରେ ପଢ଼ାଉଥିଲେ। ସେ କହିଲାବେଳେ ଅନେକ ନୋଟ୍ ଲେଖୁଥିଲେ। ମୁଁ ଏକ ଧ୍ୟାନରେ ତାଙ୍କ କଥା ଶୁଣି ଯାଉଥିଲି। ପରୀକ୍ଷାରେ ଇତିହାସରେ ମୋର କେବେ କମ୍ ନମ୍ବର ରହୁନଥିଲା। ସହର ଠାରୁ ଦୂରରେ ପ୍ରଦୀପ ନିବାସ ଓ ସ୍ୱରୂପ ନିବାସ ନାମରେ ଦୁଇଟି ହଷ୍ଟେଲ୍ ନୂଆ ତିଆରି ହୋଇଥିଲା। ସେ ହଷ୍ଟେଲ୍‌ରେ ଶେଷ ବର୍ଷ ରହିଥିଲି। ସେଠାରେ ଥରେ ମୋତେ ମେଲେରିଆ ଜ୍ୱର ହେଲା। ହଷ୍ଟେଲ୍‌ରେ ମୋର ସହପାଠୀମାନେ ମୋର ଖୁବ୍ ଯତ୍ନ କରୁଥିଲେ, ଡାକ୍ତରଖାନାରେ ମୋତେ ଜଗାରଖା କରି ଯତ୍ନ ନେଉଥିଲେ। ମୋତେ ଦେଖିବାକୁ ଆସିଥିଲେ ସଂସ୍କୃତ ପଣ୍ଡିତ ହରିହର ସାର୍। ତାଙ୍କୁ ଖୁବ୍ କଡ଼ା ବୋଲି ସମସ୍ତେ ଡରନ୍ତି। ମାତ୍ର ସେ ଛାତ୍ରମାନଙ୍କୁ କିପରି ସ୍ନେହ କରୁଥିଲେ ଜାଣିଲି ଯେତେବେଳେ ସେ ମୋତେ ଆଦେଶ ଦେଲେ ସଂପୂର୍ଣ୍ଣ ସ୍ୱାସ୍ଥ୍ୟ ପାଇବା ପର୍ଯ୍ୟନ୍ତ ତାଙ୍କ ବସାକୁ ଯାଇ ଖିର ପିଇବା ପାଇଁ। ତାଙ୍କ ଆଦେଶ ଓ ସ୍ନେହ ଏଡ଼ିଯିବା ମୋ ପକ୍ଷରେ ଅସମ୍ଭବ ଥିଲା। ଶେଷ ବର୍ଷ ଟେଷ୍ଟ ପରୀକ୍ଷାରେ ମୋର ଇଂରେଜୀରେ କମ୍ ନମ୍ବର ଥିଲା। ଇଂରେଜୀ ସାର୍ ମୋତେ ତାଙ୍କ ବସାକୁ ଯାଇ ବେଶ କିଛିଦିନ ଇଂରେଜୀ ପଢ଼ିବାକୁ ଆଦେଶ ଦେଇଥିଲେ। ଟିଉସନ ପାଇଁ ସାର୍‌ଙ୍କୁ ଦେବା ଭଳି ମୋର ପଇସା ନଥିଲା। ସାର୍ ନିଜ ତରଫରୁ କହିଲେ ତୁ ଯଦି ମୋ ଋଣ ଶୁଝିବାକୁ ଚାହୁଁ ପାଠ ପଢ଼ି ବଡ଼ ମଣିଷ ହେଲେ ସବୁ ଶୁଝା ହୋଇଯିବ। ସେ ଦିନ ମୋ ଆଖିରୁ ଦୁଇ ଟୋପା ଲୁହ ଖସିପଡ଼ିଲା। ଆନନ୍ଦରେ ନା ଦୁଃଖରେ ! ଯେଉଁଦିନ ସାର୍‌ଙ୍କ ଘରେ ମାଂସ ତିଆରି ହେଉଥିଲା ସାର୍ ମୋତେ ନଖୁଆଇ ଛାଡୁ ନଥିଲେ।

(୪)

**ମହାବିଦ୍ୟାଳୟର ଅଧ୍ୟାପକଗଣ**

୧୯୪୬ ଜୁଲାଇ ମାସରେ ବାଲେଶ୍ୱର କଲେଜରେ ଆଇ.ଏ. ପଢ଼ିଲି। ନୂଆ କଲେଜ, ଜିଲ୍ଲା ସ୍କୁଲ୍‌ରେ ସକାଳେ ହେଉଥିଲା। ବାଲେଶ୍ୱରରେ ଭଡ଼ାଘରେ

କଲେଜର ଗୋଟିଏ ମେସ୍ ଥିଲା । ତତ୍ତ୍ୱାବଧାରକ ଥିଲେ ଓଡ଼ିଆ ଅଧ୍ୟାପକ ବୈକୁଣ୍ଠନାଥ ପଟ୍ଟନାୟକ । ଏଇ ମେସ୍ ଅଦୂରରେ ତାଳପଦାର ଯାହାଙ୍କ ଘରେ ମୁଁ ଉଚ୍ଚପ୍ରାଥମିକ ପଢୁଥିଲି ସେ ରାଜୁମାଷ୍ଟ୍ରଙ୍କ ଗୋଟିଏ ବସାଘର ଥିଲା । ସେ ସେଇ ଘରଟି ଆମକୁ ରହିବାକୁ ଛାଡ଼ି ଦେଇଥିଲେ । ମୁଁ ଆମ ପାଖ ଗାଆଁର ଓ ବାରିପଦାର ତିନିଜଣ ସାଙ୍ଗକୁ ଘେନି ସେଠାରେ ରହିଥିଲି । ଆମେ ସମସ୍ତେ ରନ୍ଧାବଢ଼ା ସବୁ କାମ ନିଜେ କରୁଥିଲୁଁ । ସକାଳୁ ଭ୍ରମଣ ବେଳେ ବୈକୁଣ୍ଠ ସାର୍‌ଙ୍କ ସଂଗେ ଆମର ଦେଖାହେଉଥିଲା, ଆମେ ସବୁ ଏପରି ସ୍ୱାବଲମ୍ବୀ ହୋଇ ରହିଛୁ ଜାଣି ଆମକୁ ଖୁବ୍ ସ୍ନେହ କରୁଥିଲେ ।

ବାଲେଶ୍ୱର କଲେଜରେ ମୋ ଛାତ୍ର ଜୀବନରେ କିଶୋରୀ ମୋହନ ଦ୍ୱିବେଦୀ, ଗିରିଜାଶଙ୍କର ରାୟ, ଘନଶ୍ୟାମ ଦାଶ ଓ ଭି.ବି.ଜନ ଅଧ୍ୟକ୍ଷ ଥିଲେ । ସେମାନଙ୍କ ଅଧ୍ୟାପନା ଆମ ପାଇଁ ମୂଲ୍ୟବାନ ଜ୍ଞାନଗର୍ଭକ ଥିଲା । ଘନଶ୍ୟାମ ଦାଶ ଅଧ୍ୟକ୍ଷ ଥିଲା ବେଳେ ବାଲେଶ୍ୱର କଲେଜ ଫକୀର ମୋହନ କଲେଜ ରୂପେ ନାମିତ ହୋଇଥିଲା । ବାଲେଶ୍ୱର କଲେଜରେ କୁଞ୍ଜବିହାରୀ ଦାଶ ୧୯୪୭ ଜୁଲାଇ ମାସରେ ଯୋଗ ଦେଲେ । ଫକୀରମୋହନ ସାହିତ୍ୟ ପରିଷଦକୁ ଏକ ଆଦର୍ଶ ସାହିତ୍ୟ ସଂସ୍କୃତି ଅନୁଷ୍ଠାନରେ ପରିଣତ କରିବାରେ କୁଞ୍ଜବିହାରୀଙ୍କ ଦାନ ଥିଲା ଅତୁଳନୀୟ । ସେ ପରିଷଦର ପ୍ରଥମ ସଭାପତି । ଫକୀରମୋହନଙ୍କ ଶାନ୍ତି କାନନର ପୁନରୁଦ୍ଧାର, ବାଲେଶ୍ୱର କଲେଜର ଫକୀରମୋହନ କଲେଜ ରୂପେ ପ୍ରତିଷ୍ଠା, ସାହିତ୍ୟ ଓ ସଂଗୀତ ସମ୍ମିଳନୀ ଆଦି ବହୁମୁଖୀ କର୍ମଧାରାର ସଫଳ ରୂପାୟନ ପାଇଁ ସେ ବାଲେଶ୍ୱରବାସୀ, ମହାବିଦ୍ୟାଳୟର ଛାତ୍ର ଓ ଅଧ୍ୟାପକମାନଙ୍କ ମଧ୍ୟରେ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି କରିଥିଲେ । ନିୟମିତ ଭାବରେ ଅଧ୍ୟାପକ ଓ ଛାତ୍ରମାନେ ନାନା ଭାବରେ ସାହିତ୍ୟ ରଚନା କରି ପରିଷଦର ସଭାରେ ପାଠ କରୁଥିଲେ । ଚର୍ଚ୍ଚା କରୁଥିଲେ । ମୋ ଭଳି ନବୀନ ଲେଖକଙ୍କ ପାଇଁ ଆତ୍ମପ୍ରକାଶର ଏହା ଥିଲା ବଡ଼ ସୁଯୋଗ ।

ବାରିପଦାରେ ଉଚ୍ଚ-ଇଂରାଜୀ ବିଦ୍ୟାଳୟରେ ଯେଉଁ ମହାମନା କବି ଓ ଗୁରୁଙ୍କ ସହିତ ସଂପର୍କର ଏକ କ୍ଷୀଣ ସୂତ୍ର ଗ୍ରଥିତ ହୋଇଥିଲା, ମହାବିଦ୍ୟାଳରେ ତାଙ୍କ ସହିତ ମୋର ସଂପର୍କ ଅଧିକ ଘନିଷ୍ଠ ହୋଇଥିଲା । ଫକୀର ମୋହନ ସାହିତ୍ୟ ପରିଷଦର ସାପ୍ତାହିକ ସାହିତ୍ୟ ସଭାରେ କ୍ଷୁଦ୍ରଗଳ୍ପ, କବିତା ଓ ଅନ୍ୟାନ୍ୟ ଲଘୁ ରଚନା ଅନେକ ପଢୁଥିଲେ । ମାତ୍ର ଜ୍ଞାନଗର୍ଭକ ପ୍ରବନ୍ଧ ପାଠକ

କମ୍ ଥିଲେ । ସାହିତ୍ୟ ସଭାଗୁଡ଼ିକରେ ସଭାପତିଙ୍କ ବ୍ୟତୀତ ଇଂରାଜୀ ଅଧ୍ୟାପକ, ସାହିତ୍ୟ ପ୍ରେମୀ, ପ୍ରଜ୍ଞାଦୀପ୍ତ ଶ୍ରୀଯୁକ୍ତ ତ୍ରିଲୋଚ଼ନ ମିଶ୍ର ନିୟମିତ ଯୋଗ ଦେଉଥିଲେ । ସେ ଲେଖୁଥିଲେ ଗଳ୍ପ । କୁଞ୍ଜବିହାରୀଙ୍କ ପ୍ରକାଶିତ କବିତାର ଛନ୍ଦ ପ୍ରସଙ୍ଗରେ ସେ ଗୋଟିଏ ଉଚ୍ଚକୋଟୀର ପ୍ରବନ୍ଧ ଲେଖିଥିଲେ । ତାହା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଫକୀରମୋହନ ସାହିତ୍ୟ ପରିଷଦର ସ୍ୱର୍ଣ୍ଣ ଜୟନ୍ତୀ ସ୍ମରଣିକାରେ ସେ ମୋ ପରି ଜଣେ ଛାତ୍ରଙ୍କୁ ସ୍ମରଣ କରି ଲେଖିଛନ୍ତି - "ପ୍ରବନ୍ଧ ଲେଖକମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ ଦୁଇଜଣ - ସର୍ବଶ୍ରୀ ନରେନ୍ଦ୍ର ନାଥ ମିଶ୍ର ଓ ଅଖିଳକୁମାର ପଣ୍ଡା (୪୮-୫୦ ମସିହାରେ ଯଥାକ୍ରମେ ଇତିହାସ ଓ ଅର୍ଥନୀତି ସମ୍ମାନ ଶ୍ରେଣୀର ଛାତ୍ର) ଏମାନେ ସାମୟିକ ଘଟଣା ପ୍ରବାହ ଓ ରାଜନୀତି ସଂପର୍କିତ ପ୍ରବନ୍ଧ ଲେଖନ୍ତି । ନରେନ୍ଦ୍ର ବାବୁ ଶାନ୍ତିନିକେତନରେ ଅଧ୍ୟାପକ ଥାଇ ଗବେଷକ ଓ ସାହିତ୍ୟିକ ଭାବରେ ଖ୍ୟାତି ଲାଭ କରନ୍ତି । ଅଖିଳ ବାବୁ ବିଚ଼ାରପତି ପଦ ଅଳଙ୍କୃତ କରନ୍ତି । (ସୁବର୍ଣ୍ଣଶ୍ରୀ - ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା - ୧୯୯୮ ପୃ:୧୪)

ଛାତ୍ରଥିବା ସମୟରେ ମୋ ପ୍ରବନ୍ଧ କେବଳ କଲେଜ ପତ୍ରିକାରେ ନୁହେଁ 'ସହକାର' ଭଳି ସ୍ୱନାମଧନ୍ୟ ପତ୍ରିକାରେ ପ୍ରକାଶ ପାଇଥିଲା । 'ବିଶ୍ୱ ସମସ୍ୟା ସମାଧାନର ଐତିହାସିକ ବିଚ଼ାର କୋଣ" ପ୍ରବନ୍ଧଟି ସହକାର, ଅଗଷ୍ଟ ୧୯୪୯ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ସେଇ ପ୍ରବନ୍ଧଟିରେ ଥିଲା ତରୁଣ ଜୀବନ ସ୍ୱପ୍ନ ଓ ସାଧନାର ପ୍ରମୂର୍ତ୍ତ ବାଣୀ । ସାରା ଜୀବନ ଏହି ଆଦର୍ଶ ପାଳନ କରିବାକୁ ଶ୍ରେୟ ମଣିଛି । ସେଇ ପ୍ରବନ୍ଧଟିର କେତେକ ପଂକ୍ତି ଉଦ୍ଧାର କରୁଛି । 'ବିଶ୍ୱର ଅଧୁନାତନ ଜଟିଳ ସମସ୍ୟାଗୁଡ଼ିକର ସମାଧାନ ପଥରେ ଜାତୀୟତା, ସ୍ୱଦେଶ ପ୍ରେମ, ଅତୀତ ଇତିହାସରେ ଗୌରବ - ଏ ସବୁ ଗୋଟିଏ ଗୋଟିଏ ବିରାଟ ପ୍ରତିବନ୍ଧକ ଭାବରେ ଦଣ୍ଡାୟମାନ । ସଭ୍ୟତାର ମୂଳରେ ବ୍ୟକ୍ତି ଓ ସମାଜର ଉନ୍ନତି ନିହିତ ଥିଲା । ଏଥିପାଇଁ ତ ଗାନ୍ଧିଜୀ ରାମରାଜ୍ୟର ପରିକଳ୍ପନାରେ ବ୍ୟକ୍ତିକୁ ନିମ୍ନତମ 'ଏକକ' ବୋଲି ଧରିଥିଲେ ଓ ଏକାଦଶ ବ୍ରତ ପାଳନ ଦ୍ୱାରା ବ୍ୟକ୍ତିର ଉନ୍ନତି ଚାହୁଁଥିଲେ । ଏ ନିୟମର ସାର୍ଥକତା, ମାନବ ସଭ୍ୟତା ସହ ଏ ସତ୍ୟର ଯୋଗ ଚିରନ୍ତନ । ଆଜି ଯଦି ଏ ନିୟମକୁ ଭାଙ୍ଗି ଦେଶ, ଜାତି, ଜାତୀୟ ପତାକା ଓ ଜାତୀୟ ଇତିହାସ ଘେନି ମାନବ ବ୍ୟସ୍ତ ରହିବ ଓ ବ୍ୟକ୍ତିତ୍ୱର ବିକାଶ କଥା ଭୁଲିଯିବ, ତେବେ ତା'ର ପତନ ଓ ଧ୍ୱଂସ ସୁନିଶ୍ଚିତ ।"

ମହାବିଦ୍ୟାଳୟରେ ଶିକ୍ଷାର ଏକ ଅଂଗ ଥିଲା ଶିକ୍ଷାମୂଳକ ଭ୍ରମଣ। କୁଞ୍ଜବିହାରୀ ଓ ମନ୍ମଥଦାସ ଏଇ ଦୁଇ ଅଧ୍ୟାପକ ଗୋଟିଏ ଦଳ ଛାତ୍ରଙ୍କୁ ସିଂହଳ ଘେନି ଯାଇଥିଲେ। କୁଞ୍ଜବିହାରୀଙ୍କ ପ୍ରଥମ ଭ୍ରମଣ କାହାଣୀ "ଲଙ୍କାଯାତ୍ରୀ" ଓଡ଼ିଆ ଭ୍ରମଣ ସାହିତ୍ୟରେ ଉଚ୍ଚସ୍ଥାନ ପାଇଥିଲା। ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାସ ଉତ୍ତର ଭାରତ ଭ୍ରମଣରେ ଓ ଅଧ୍ୟାପକ ତ୍ରିଲୋଚନ ମିଶ୍ର ଶାନ୍ତିନିକେତନ ଓ କଲିକତା ଭ୍ରମଣରେ ଛାତ୍ରଙ୍କୁ ଘେନି ଯାଇଥିଲେ। ଏଇ ଦୁଇଟି ଦଳରେ ମୁଁ ଯୋଗ ଦେଇଥିଲି।

୧୯୫୦ ଜାନୁଆରି ୪ ତାରିଖରେ କୁଞ୍ଜବିହାରୀ ବିଶ୍ୱଭାରତୀରେ "ଭାରତ ବିଦ୍ୟା ଓ ସ୍ନାତକୋତ୍ତର ଗବେଷଣା" ପ୍ରଫେସର ପଦରେ ଯୋଗ ଦେଇଥିଲେ। ମୁଁ ରେଭେନ୍‌ସା କଲେଜରେ ଇତିହାସ ଏମ୍.ଏ. ଓ ଆଇନ୍ କ୍ଲାସ୍‌ରେ ଯୋଗ ଦେଇଥାଏ। ବିଶ୍ୱଭାରତୀରେ ଗବେଷଣା କର୍ମୀ ପଦଟିଏ ଖାଲି ଥିଲା। ଏଇ ପଦରେ ଥାଇ କଲିକତା ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ପରୀକ୍ଷା ଦିଆଯାଇପାରୁଥିଲା। ମୋର ଆରାଧ୍ୟଗୁରୁ କୁଞ୍ଜବିହାରୀଙ୍କ ପରାମର୍ଶରେ ରେଭେନ୍‌ସା ଛାଡ଼ି ୧୯୫୦ ନଭେମ୍ବର ୧୪ ତାରିଖରେ ଶାନ୍ତିନିକେତନରେ ନୂତନ କର୍ମରେ ଯୋଗ ଦେଲି। ୧୯୫୧ରେ ବିଶ୍ୱଭାରତୀ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ରୂପେ ପ୍ରତିଷ୍ଠିତ ହେଲା। ମୁଁ ଓଡ଼ିଆ ସାହିତ୍ୟରେ ଏମ୍.ଏ. ପରେ ଗବେଷଣା ବୃତ୍ତି ପାଇ ତିନିବର୍ଷ ଚର୍ଚ୍ଚା ନିବନ୍ଧ (ପିଏଚ୍‌ଡ଼ି ଥେସିସ) ରଚନା କରିଥିଲି। ମୋର ପ୍ରଥମ ଅଧ୍ୟାପକ ଜୀବନ ଆରମ୍ଭ ହୋଇଥିଲା କେନ୍ଦୁଝର ବିଜ୍ଞାନ କଲେଜରେ (୧୯୫୭)। ଓଡ଼ିଆ ଶିକ୍ଷାସେବାରେ ମନୋନିତ ହୋଇ ୧୯୫୯ ଜୁଲାଇରେ ଫକୀର ମୋହନ କଲେଜରେ ଯୋଗ ଦେଇଥିଲି। ୧୯୬୦ ଏପ୍ରିଲ୍‌ରେ - ବିଶ୍ୱଭାରତୀ ସ୍ନାତକୋତ୍ତର ବିଭାଗରେ ଅଧ୍ୟାପକ ଭାବରେ ଯୋଗ ଦେଲି। ମୋ ଜୀବନର ପ୍ରଥମ ବିଦ୍ଧାଣୀ କୁଞ୍ଜବିହାରୀଙ୍କ ସାନ୍ନିଧ୍ୟ, ଭାରତ ଆତ୍ମାର ଜୀବନ୍ତ ପୀଠ ବିଶ୍ୱକବିଙ୍କ ସ୍ୱପ୍ନର ତୀର୍ଥରେ ଯୌବନ, ପ୍ରୌଢ଼ ଆଉ ବାର୍ଦ୍ଧକ୍ୟର ଏକାଂଶ ବିତାଇବା ହିଁ ଥିଲା ମୋ ଜୀବନର ସାର୍ଥକତା। ତଥାପି ସେ ଦିନ ମୁଁ ଥିଲି ପ୍ରବାସୀ - ଯେମିତି ପ୍ରତି ମୂହୁର୍ତ୍ତରେ ମନ ଭିତରେ ଧ୍ୱନିତ ହେଉଥିଲା "ଭୁଲି ଓ ନା ଏଇ ଘରଛାଡ଼ାରେ"। ଆଜି ଘରକୁ ଫେରିଛି - ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦେଇଛି "ବରିଷ୍ଠ ସାହିତ୍ୟିକ ସମାନ ୨୦୦୧", ଉତ୍କଳ ପାଠକ ସଂସଦ ଦେଇଛି, "୨୦୦୬ ବ୍ରଜମୋହନ ସ୍ମୃତି ସମ୍ମାନ", ଉତ୍କଳ ସାହିତ୍ୟ ସମାଜ ଦେଇଛି "ଗୋପୀନାଥ ନନ୍ଦ ପ୍ରବନ୍ଧ ଓ ସମାଲୋଚନା ସମ୍ମାନ - ୨୦୦୨"। ଓଡ଼ିଆ ଗବେଷଣା ପରିଷଦ କଟକରେ "କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା

ସମ୍ମାନ" ଶାନ୍ତିନିକେତନ ରହଣୀ କାଳରେ ପାଇଥିଲି । ଏଇ ସମ୍ମାନରେ ଯେଉଁ ପରି ମୋର କୃତି ଓ କୀର୍ତ୍ତି ରଚନା କରାହୋଇଛି, ସେଥିରେ ଅହଂକାର ବଢ଼ିପାରେ, ନିରହଂକାର ନିର୍ଲିପ୍ତ ସାଧନାର ପଥ ସୁଗମ ହେବ କି ନାହିଁ କିଏ କହିବ ? କହିବ ଭବିଷ୍ୟତ । ମୋର ଛାତ୍ର ଜୀବନରେ ଜଣେ ମହାମାନବ ନୀରବ ନିଷ୍କଳ ପ୍ରାର୍ଥନା ଆସନରୁ ସାରା ବିଶ୍ୱର ମାନବ ପ୍ରାଣରେ ଢେଉ ଖେଳାଇ ଦେଉଥିଲେ ଆଶାର, ଆଲୋକରେ ନିଜକୁ ସର୍ବଶକ୍ତିମାନ ମନେ କରୁଥିବା ସମ୍ରାଟଙ୍କ ସାମ୍ରାଜ୍ୟକୁ ଦୋହଲାଇ ଦେଉଥିଲେ ଅନ୍ୟାୟ ଓ ଅନୀତି ପଥରେ ଭ୍ରଷ୍ଟ ନ ହେବା ପାଇଁ । ସେ ଥିଲେ ମହାତ୍ମାଗାନ୍ଧି ।

ରବୀନ୍ଦ୍ର ଭାଷାରେ - "ଆମେ ଜାଣିଥିଲୁ ମଣିଷ ମଣିଷଠାରୁ ଶିଖିପାରେ; ଯେମିତି ଜଳଦ୍ୱାରା ଜଳାଶୟ ପୂର୍ଣ୍ଣ ହୁଏ, ଶିଖାରୁ ଶିଖା ଜଳି ଉଠେ, ପ୍ରାଣ ଦ୍ୱାରା ପ୍ରାଣ ସଂଚାରିତ ହୋଇଥାଏ ।" ଆମ ସମାଜ ବ୍ୟବସ୍ଥାରେ ଆମେ ସେଇ ଗୁରୁଙ୍କୁ ଖୋଜୁଛୁଁ ଯିଏ ଆମ ଜୀବନକୁ ଗତିଦାନ କରିବେ; ଆମ ଶିକ୍ଷା ବ୍ୟବସ୍ଥାରେ ଆମେ ସେଇ ଗୁରୁଙ୍କୁ ଖୋଜୁଅଛୁ ଯିଏ ଆମ ଚିତ୍ତର ଗତିପଥକୁ ବାଧାମୁକ୍ତ କରିବେ । ଯେପରି ହେଉ ସବୁ ଦିଗରୁ ଆମେ ମଣିଷ ଚାହୁଁ; ଏହା ପରିବର୍ତ୍ତେ ପ୍ରଣାଳୀର ବଟିକା ଗିଳାଇ କେହି କବିରାଜ ଆମକୁ ରକ୍ଷା କରି ପାରିବେ ନାହିଁ ।" (ରବୀନ୍ଦ୍ର ରଚନାବଳୀ - ଜନ୍ମଶତ ବାର୍ଷିକ ସଂସ୍କରଣ - ଏକାଦଶ ଖଣ୍ଡ (ପ୍ରବନ୍ଧ) ପୃ.୬୨୬ ।

ଆଜି ଯୁଗ ବଦଳିଛି । ସାଧନାର ସୀମା ବଢ଼ିଛି । ଦ୍ରୁତ କ୍ଷୟଶୀଳ କାଗଜର ଯୁଗ ଶେଷ ହେବାକୁ ବସିଛି । ଅଳ୍ପ ବିନିମୟରେ ପୁସ୍ତକର ଯାନରେ ବସି ଯୁଗ, ସ୍ଥାନର ଦୂରତା ଲଂଘନର ଦିନ ହୁଏତ ଗଣିତ୍ର (କମ୍ପ୍ୟୁଟର) ଓ ଇଣ୍ଟରନେଟ୍ ପୂରଣ କରିବ । ମାତ୍ର ମାନବର ଅହମିକା ଶୂନ୍ୟ ନିର୍ମଳ ଆତ୍ମାର ବାଣୀରେ ଗୁରୁଙ୍କ ନିରହଂକାର ଅନାସକ୍ତ ଦାନ ଓ ବିନୀତ ଶିଷ୍ୟଙ୍କ ଆହରଣର ଦିନ କେବେ ଶେଷ ହେବ ନାହିଁ । ଯେତେଦିନ ରୋଗ, ସେତେଦିନ ଧନ୍ୱନ୍ତରୀ ଶିଷ୍ୟଙ୍କ ପ୍ରୟୋଜନ, ଯେତେଦିନ ଅଜ୍ଞାନ ଅନ୍ଧକାର, ସେତେଦିନ ସରସ୍ୱତୀଙ୍କ ବରପୁତ୍ରଙ୍କ ପ୍ରୟୋଜନ; ଶିଖିବାର ଆନନ୍ଦ ଓ ଆଗ୍ରହ ଥିଲେ ଶିଷ୍ୟ ଶିଖିବେ, ଗୁରୁଚିତ୍ତ ଗତିଶୀଳ ବିଶ୍ୱର ଆନନ୍ଦ ଓ ଆଲୋକ ପଥରେ ଅଗ୍ରଗତିର ଅଲିଭା ଶିଖା ଜାଳିଚାଲିବେ - ଏହାହିଁ ଅତ୍ୟୁଚ୍ଚ ଅଭିଳାଷୀ ମାନବର ମାନସ ଧର୍ମ ହେଉ - ଏହାହିଁ କାମ୍ୟ ।



# ଗୁରୁ ସାକ୍ଷାତ୍ ପରଂବ୍ରହ୍ମ

ହେମଚନ୍ଦ୍ର ଆଚାର୍ଯ୍ୟ

ମଣିଷର ଗୋଠ, ସମାଜ। କାଳ ସଂଗେ ତାଳଦେଇ ଚାଲିଛି, ଚାଲୁଛି ଓ ଚାଲୁଥିବ ଅକଳନା ଦିନତକ। ସମାଜର ଏଇ ନିୟତ ଚାଲିଲେ ଅନିୟମ ନ ଆସୁ ଅସଂକ୍ଷମ ନ ପଶୁ, ଥାଏ ଇଚ୍ଛା ସମାଜବାସୀଙ୍କର। ସର୍ବତୋଭାବେ ସୁନିୟନ୍ତ୍ରଣ ଲକ୍ଷ୍ୟ ରଖି ଯେଉଁ ସମାଜସେବୀ ବଞ୍ଚିରହେ, ସେ ହିଁ କଥିତ ହୁଏ ଗୁରୁ, ଶିକ୍ଷକ ବା ଦ୍ରଷ୍ଟା ନାମରେ। ସମାଜକୁ ପ୍ରବେଶ ପୂର୍ବରୁ ମଣିଷ ଶିଶୁକୁ ତାଲିମ୍ ଦେଇ ତିଆରି କରେ। ସମାଜ ଉପଯୋଗୀ ସଭ୍ୟ ସୃଜନରେ ଯାର ସାର୍ଥକତା ବେଶୀ ସେ ସମାଜବାସୀଙ୍କର ପୂଜ୍ୟ, ନମସ୍ୟ, ପ୍ରଣିପାତ୍ୟ, ସାମାଜିକ ଜୀବନ-ଜଂଜାଳରେ ସେ ନିଜର ସ୍ୱରୂପରେ ଦେଖିପାରେ ତା'ର ଦ୍ରଷ୍ଟା, ତା'ର ଗୁରୁର ସ୍ପଷ୍ଟ ରୂପ। ବୁଝିପାରେ ତା'ର ମୁଁ ତ୍ୱ ଭିତରେ ଗୁରୁ ପ୍ରତ୍ୟକ୍ଷଭାବେ ନିଜକୁ କିପରି ସ୍ଥାନିତ କରିଥା'ନ୍ତି।

ଜୀବନର ପାଞ୍ଚବର୍ଷ ବୟସ ବେଳକୁ ବାପାଙ୍କ କାଖରେ ପାଖ ଗାଁ ପ୍ରାଥମିକ ସ୍କୁଲ୍‌କୁ ଗଲି। ତା' ପରଦିନ ଆସିଥାନ୍ତି, ସ୍କୁଲ୍ ପରିଦର୍ଶକ ହିସାବରେ ପ୍ରାତଃ ସ୍ମରଣୀୟ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମହାରଣା। ସେ ଥିଲେ ପୁଣ୍ୟଶ୍ଳୋକ ଶ୍ରୀ ଚନ୍ଦ୍ରମୋହନ ମହାରଣା ଶିକ୍ଷାବିତ୍‌ଙ୍କ ପୁଅ, ଖ୍ୟାତନାମା ଗୋପବନ୍ଧୁ ଚୌଧୁରିଙ୍କ ଜାମାତା ତଥା ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣାଙ୍କ ସ୍ୱାମୀ। ସେ ଆମ ସ୍କୁଲ୍‌ର ସମୁଦାୟ ଛାତ୍ରଙ୍କୁ (ପ୍ରାୟ ୫୦୦) ଥରକେ ପରୀକ୍ଷା କରୁଥାନ୍ତି। ତାଙ୍କର ପ୍ରଶ୍ନ ଥାଏ, ତୁମକୁ କିଏ ଭଲ ଲାଗନ୍ତି ? ବାପା ନା ମାଆ, ଭାତ ନା ରୁଟି ? ଶାଗ ସବଜୀ ନା ମାଛ ମାଂସ ? ଶେଷରେ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରଶ୍ନ, କେଉଁ ଆଜ୍ଞା ? ସବୁପ୍ରଶ୍ନର ଏକାଧିକ ଉତ୍ତର ଥିଲା ବେଳେ ଶେଷ ପ୍ରଶ୍ନ, "କେଉଁ ଆଜ୍ଞା ଭଲ ଲାଗନ୍ତି"ର ଉତ୍ତର ଥିଲା ଏକ। ଆମ ପ୍ରଥମ ଶ୍ରେଣୀ ଆଜ୍ଞା। 'କାହିଁକି ?'ର ଉତ୍ତର ଥିଲା, ସେ କାହାକୁ ପିଟନ୍ତି ନାହିଁ। କାହାକୁ ଗାଳି ଦିଅନ୍ତି ନାହିଁ, କ୍ଲାସ୍‌ରେ ନାଟକ କରାନ୍ତି ପଢ଼ା ବହିର ବିଷୟ ବସ୍ତୁଉପରେ। ଗୁଡ଼ାଏ ଉତ୍ତର। ଏବେ ବି

ମନେ ପଡ଼େ ମୁଁ କେତେ ଅଭିଭୂତ ହୋଇପଡ଼ିଥିଲି ଏକା ସଂଗେ ଏତେଗୁଡ଼ିଏ ଉତ୍ତର ଶୁଣି । ପରେ ଏହି ଆଜ୍ଞା ସ୍କୁଲ୍ ବାରଣ୍ଡାରୁ ଗାଁ ମଝିର ମନ୍ଦିର ବାରଣ୍ଡାକୁ ନେଲେ ତାଙ୍କର ସେ ନାଟକ ଅନୁଶୀଳନ । ଏବେ ବି ମନେ ପଡ଼େ ସେଠାରେ ଅଭିନୀତ ତାଙ୍କର ଭକ୍ତ ପ୍ରହଲ୍ଲାଦ ନାଟକ । ମନେପଡ଼େ, ଗ୍ରାମବାସୀ କେତେ ମୁଗ୍ଧପ୍ରାଣରେ ଗ୍ରହଣ କରିନେଲେ ସେ ନାଟ୍ୟକଳା । କ୍ରମେ ଗାଁଟିରେ ନାଟ୍ୟକଳାର ଖ୍ୟାତି କେତେଦିନ ଯାଏଁ ଖେଳି ରହିଲା । ନାଟକରେ ଅଂଶଗ୍ରହଣ କରିଥିବା ପିଲେ ପରବର୍ତ୍ତୀ ଜୀବନରେ, ଅଭିନେତା, ନାଟ୍ୟକାର ତଥା ନିର୍ଦ୍ଦେଶକ ହୋଇ ଜୀବନର ଶେଷକାଳ ପର୍ଯ୍ୟନ୍ତ ସୁଖ୍ୟାତି ପାଇଲେ । ମନେ ହେଲା ଯେମିତି ପ୍ରତିଭାମାନେ ପ୍ରଦୀପ ଅବସ୍ଥାରେ ବି ଚାହିଁ ବସିଥିଲେ ଅନୁକୂଳ ପାଗଯୋଗକୁ । ଏ ଆଜ୍ଞା, ଅନ୍ୟ ସ୍କୁଲ୍‌କୁ ଯାଇ ସରକାରୀ ଚାକିରିରେ ଥାଇ ବି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ କାରାବରଣ କଲେ । ନିର୍ଦ୍ଦିଷ୍ଟ ସମୟ ପରେ କାରାମୁକ୍ତ ହେଲେ ସତ, ମାତ୍ର ଆଜ୍ଞା ତାଙ୍କର ଶିକ୍ଷକତା କରିଥିବା ଗ୍ରାମବାସୀଙ୍କ ହୃଦ୍‌କାରାଗାରରେ ଏବେ ବି ସତେଜ ଅଛନ୍ତି । ପୂରା ଅଂଚଳରେ "ଫୁଲଶର ମାଷ୍ଟ୍ରେ" (ନାଁ ଫୁଲଶର ପଧାନ) ନାଁରେ ପରିଚିତ ।

ବ୍ୟତୀତ ହୋଇଥିବା ବିଦ୍ୟାର୍ଥୀ ଜୀବନକୁ ଫେରି ଚାହିଁଲେ ଅବିଜ୍ଞାପିତ ହେଲେ ବି ବହୁ ବିଜ୍ଞ ବ୍ୟକ୍ତିଙ୍କର ରୂପ, ମନ-ମନ୍ଦିରରେ ଦେଦୀପ୍ୟମାନ ମନେ ହୁଅନ୍ତି । ମାଧ୍ୟମିକ ଶିକ୍ଷା କାଳରେ ମଧ୍ୟମ ବୟସର ଜଣେ ଶିଷ୍ୟ ସର୍ବସ୍ୱ ଶିକ୍ଷକ ଆଜ୍ଞା ମନେ ପଡ଼ନ୍ତି । ଏବେ ବି ଆଖିରେ ଦିଶିଯାଏ ତାଙ୍କର ଆଣ୍ଠୁ ଲୁଚ଼ା ଖଦୀ ଧୋତି ପିନ୍ଧା ଦେହରେ ଛୋଟ ଗାମୁଛା ପକାଇ ଠିଆ ଠିଆ ପଢ଼ାଇବାର ଦୃଶ୍ୟ । ସୋହେଲା ମିଡ଼ିଲ୍ ସ୍କୁଲ୍‌ର ଲମ୍ବା ବାରଣ୍ଡା । ଦୁଇ ପାଖରେ ଦୁଇଧାଡ଼ି ଛାତ୍ର, ସାମନାରେ ଦୁଇଧାଡ଼ି ଲଣ୍ଠନ, ଛାତ୍ରାବାସର ସମୁଦାୟ ପିଲା, ଗଣିତରେ ୯୬ ଜଣ । ଚତୁର୍ଥରୁ ସପ୍ତମ ଶ୍ରେଣୀତକ ପିଲା ଏକସଂଗେ ସଂଧ୍ୟା ୭ଟାରୁ ପଢୁଥାଉଁ ବସି ବସି । ଆଜ୍ଞା ଠିଆ ଠିଆ ପଢ଼ାଇବାରେ ଲାଗିଥାନ୍ତି - ବସିବାର ନାଁ ନାହିଁ । ଆଜିର ଏ ଟ୍ୟୁସନ୍ ଯୁଗରେ ତାଙ୍କର ସେ ନିର୍ଲୋଭ ତଥା ନିରଳସ ପାଠପଢ଼ା ଲୋକେ ବିଶ୍ୱାସ କରିବା କଷ୍ଟକର ମନେହୁଏ । ଚାରୋଟି କ୍ଲାସ୍‌ର ସମଗ୍ର ପାଠ୍ୟ ବସ୍ତୁର ପାଠନ କିପରି ସମ୍ଭବ ହୋଇଥିଲା ଆମେ ପଢୁଥିବା ଲୋକ ହିଁ ଜାଣୁ । ଛାତ୍ରାବାସରେ ରହି ଦେହ ଅସୁସ୍ଥ ହେଲେ ଅନ୍ତେଃବାସୀର ରହଣି ହୁଏ ଆଜ୍ଞାଙ୍କର

ବସାଘରେ (ସୁପରିଟେଣ୍ଡେଣ୍ଟଙ୍କ କ୍ୱାଟର୍ସରେ)। ତାଙ୍କ ସ୍ତ୍ରୀ ସେ ଛୁଆର ପଥ୍ୟ ପାଚନାଦି ବ୍ୟବସ୍ଥା କରନ୍ତି ନିଃସଙ୍କୋଚରେ ତାଙ୍କ ନିଜ ଖର୍ଚ୍ଚରେ। ନିକଟସ୍ଥ ଗାଁରୁ ଅଭିଭାବକ ବଳଦ ଗାଡ଼ି ଧରି ଅସୁସ୍ଥ ଛାତ୍ରକୁ ନେବାକୁ ଆସିଲେ ଗାଡ଼ି ଫେରାଇ ଦେଇ ତାଙ୍କ ଘରେ ରହି ଆରାମ ନିଏ ସେ ଛାତ୍ର, କେତେବେଳେ କେଉଁ ବେରାମ୍ ଛାତ୍ର କହିବାର ଶୁଣାଯାଏ ଯେ ଘରକୁ ଗଲେ ଅସୁସ୍ଥତା ସତ୍ତ୍ୱେ ଗୋରୁ ଜଗିବାକୁ ପଡ଼ିପାରେ। ସରକାରୀ କର୍ମଚାରୀ ଖଦୀ ଲୁଗାପିନ୍ଧିବା ଦୋଷଣୀୟ ମନେ ହେଉଥିଲେ ବି ଆଜ୍ଞା କାହାକୁ ନଡ଼ରି ରୀତିମତ ଖଦୀ ଲୁଗା ବ୍ୟବହାର କରନ୍ତି ଓ ଖଦୀ ଲୁଗା କିପରି ତନ୍ତ ଲୁଗାଠାରୁ ଶୀତ ଦିନେ ଗରମ ଓ ଖରାଦିନେ ଥଣ୍ଡା ବୁଝାନ୍ତି।

ଏ ଆଜ୍ଞା ଶ୍ରୀ ଖଡି ତ୍ରିପାଠୀ, ପ୍ରଚଳିତ ବିଲାତୀ ଶିକ୍ଷା ପଦ୍ଧତିରେ ସନ୍ତୁଷ୍ଟ ନଥିବାର ଜଣା ପଡୁଥାଏ। ତାଙ୍କ ମନରେ ଏକ ବିକଳ୍ପ ଶିକ୍ଷା ପ୍ରଣାଳୀ ଚିନ୍ତା ଉଙ୍କି ମାରୁଥିବା ଜଣାପଡୁଥାଏ। ସ୍ୱତଃ ସେ ବିଶ୍ୱକବିଙ୍କ ବିଶ୍ୱଭାରତୀର ପାଠ୍ୟଧାରା, ମହାତ୍ମାଗାନ୍ଧିଙ୍କର ମୌଳିକ ଶିକ୍ଷା ପ୍ରଣାଳୀ ତଥା ଗୋପବନ୍ଧୁଙ୍କର ବନବିଦ୍ୟାଳୟରେ ପ୍ରଚଳିତ ହେଉଥିବା ଶିକ୍ଷା ପ୍ରଣାଳୀକଥା ଆମ ଆଗରେ ବାଢ଼ି ଆତ୍ମସନ୍ତୋଷ ପ୍ରକାଶ କରୁଥିଲେ। ତାଙ୍କ ହାତରେ ହେଉଥିଲେ ସେତେବେଳର ପ୍ରଚଳିତ 'ମେକେଲସାହେବ'ଙ୍କ ଶିକ୍ଷାପ୍ରଣାଳୀକୁ ସେ କେତେବେଳୁ ବନ୍ଦ କରିଦେଇଥାନ୍ତେ। ସେତେବେଳେ ତ ତାହା ଦରକାର ଥିଲା। କିନ୍ତୁ ବିକଳ୍ପ ପାଠ୍ୟ ଚିନ୍ତା ପାଇଁ କାହାରି ଅବକାଶ ନଥିଲା ବୋଧହୁଏ, ସାହସ ବି ନଥିଲା। ତାଙ୍କ ଠାରୁ ଗୋପବନ୍ଧୁ, ଗୋଦାବରୀଶ, ନୀଳକଣ୍ଠ ଆଦିଙ୍କ ନାମ ଓ ଖ୍ୟାତି ଶୁଣିବାକୁ କେତେ ଭଲ ଲାଗୁଥିଲା, ଆଜି କହିହେବ ନାହିଁ। ସେ ଆଜ୍ଞା ବେଶୀ ଦିନ ନ ରହି ତାଙ୍କ ନିଜ ଅଞ୍ଚଳକୁ ଗଲେ, ଆମେ ରହିଗଲୁଁ ତାଙ୍କର ଛାତ୍ର ପ୍ରୀତି ଓ ଶିକ୍ଷା ପ୍ରଣାଳୀ ସନ୍ଧାନୀ ଗୁଣ ଗାଇ ଗାଇ। ତାଙ୍କ ଗଲା ପରେ ଆମେ ଜାଣିଲୁ ଯେ ବନବିଦ୍ୟାଳୟର ଛାତ୍ର ଥିଲେ ସେ। ସେ ମହାନୁଭବ କେବେଠାରୁ ମହାମଞ୍ଚରୁ ଅପସୃତ ହୋଇ ସାରିଥିବେ, ହେଲେ ଏବେ ବି ଅଗଣିତ ଛାତ୍ରଙ୍କର ହୃଦ-ପଟରେ ସଦ୍ୟାଙ୍କିତ ତାଙ୍କର ଦିବ୍ୟ ମୂର୍ତ୍ତି ଅଲିଭା ରହିଛି।

ମୋର ସଂକ୍ଷିପ୍ତ ବିଦ୍ୟାର୍ଥୀ ଜୀବନ, ପ୍ରାଥମିକରୁ ପ୍ରବେଶିକା ପର୍ଯ୍ୟନ୍ତ, ତା'ପରେ ସୁପ୍ରସାରିତ ସାମାଜିକ ଜୀବନ। ପରବର୍ତ୍ତୀ ଜୀବନରେ ଅନେକ ସୁଖ

ଦୁଃଖ, ଉଠାଣି ଗଡ଼ାଣି ରାସ୍ତାରେ ମହାନୁଭବ ଗୁରୁତ୍ରୟଙ୍କର ସାକ୍ଷାତ ପାଇଛି ମାନସିକ ସ୍ତରରେ, ଉପଦେଶ ପାଇଛି ସାନ୍ତ୍ୱନା ପାଇଛି, ଏବେ ବି ନିଜକୁ ନିରୀକ୍ଷଣ କଲେ ମୁଁ ସ୍ପଷ୍ଟ ରୂପେ ମୋର ଗୁରୁବର୍ଗଙ୍କୁ ଦେଖେଁ ଅତି ସ୍ପଷ୍ଟ ରୂପରେ । ମୋତେ ଶୁଭେ ସେ ଦେବାତ୍ମା ପୁରୁଷମାନଙ୍କର ଶାନ୍ତ ସରଳ ବାଣୀ । "ମୁଁ ତୋ ଭିତରେ ଅଛି । ମୋର ସାହାଯ୍ୟ ତୋ ପାଇଁ ସର୍ବଦା ଉନ୍ମୁକ୍ତ ରହିଛି ।"

୧୯୪୦ ଦଶକର ସମୟ । ମୋର ହାଇସ୍କୁଲ୍ ପ୍ରବେଶ ହୋଇ ସାରିଥାଏ । ଦ୍ୱିତୀୟ ମହାଯୁଦ୍ଧ ଆରବ୍ଧ ହୋଇ ପୃଥିବୀର ବାତାବରଣକୁ ବିକ୍ଷୁବ୍ଧ ରଖିଥାଏ । ନୂତନ ଅଥଚ ବିସ୍ମୟକର ଘଟଣାବଳୀର ପ୍ରଚାର ଲୋକଙ୍କର ଆତଙ୍କ ବଢ଼ାଇଦେଇଥାଏ । ସମ୍ୟକ୍ ସଂବାଦ ଶ୍ରବଣ ଇଚ୍ଛା ଅତି ପ୍ରବଳ ଥିଲେ ହେଁ ସମ୍ବାଦପତ୍ର ଅପର୍ଯ୍ୟାପ୍ତ ଥିବାରୁ ଛାତ୍ର ସମାଜର କୁତୁହଳ ସନ୍ତୋଷ ଲାଭ କରୁ ନଥାଏ । ଏଣେ ମହାତ୍ମାଗାନ୍ଧି, ପଣ୍ଡିତ ନେହେରୁ, ନେତାଜୀ ସୁବାଷ ବୋଷ ଆଦିଙ୍କର ସ୍ୱାଧୀନତା ସଂଗ୍ରାମଜନିତ ଲୋକପ୍ରିୟତା ବଢ଼ି ଚାଲିଥାଏ । ଆନ୍ତର୍ଦ୍ଦେଶୀୟ ସମ୍ବାଦ ସହ ଜାତୀୟ ସଂବାଦ ଶ୍ରବଣର ଗୁରୁତ୍ୱ ବଢ଼ି ଚାଲିଥାଏ । ଆମ ଶିକ୍ଷାନୁଷ୍ଠାନର ଶିକ୍ଷକ ଛାତ୍ର ନିର୍ବିଶେଷରେ ସମସ୍ତଙ୍କର ସଂବାଦଶ୍ରବଣ କ୍ଷୁଧାକୁ ଅନୁଭବ କରି ମହାନୁଭବ ଶିକ୍ଷକ ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମ୍ମା 'ମଧୁଚକ୍ର' ନାଁରେ ଏକ ପ୍ରାଚୀର ପତ୍ର ଲେଖି ସ୍କୁଲ୍ର ମୁଖ୍ୟ କାଛରେ ପ୍ରକାଶ କଲେ । ତାହାଥିଲା ଏକ ସହଜ ପ୍ରଚେଷ୍ଟା । ଏକ ବର୍ଗଗଜ କାଗଜରେ ଭରପୂର ଲେଖା ଯାହାକି ପଢ଼ିବାକୁ ଅନ୍ୟୂନ ପାଞ୍ଚ ଛଅ ଘଣ୍ଟା ସମୟ ଲାଗୁଥିଲା । ଅନାହୂତ ଭାବେ ଛାତ୍ର ଶିକ୍ଷକଙ୍କର ପ୍ରାଚୀରପତ୍ର ପଠନରେ ଅସମ୍ଭବ ଭିଡ଼ ପ୍ରମାଣ କରୁଥାଏ ପ୍ରାଚୀର ପତ୍ରର ଅନତିକ୍ରମଣୀୟ ଆବଶ୍ୟକତା । ପର୍ଯ୍ୟାପ୍ତ ପ୍ରଚେଷ୍ଟା ସହ ଏତେ କାଗଜ ଖର୍ଚ୍ଚ କରି ସେ, ଅନୁଷ୍ଠାନର ଯେ କେତେ ଉପକାର କଲେ ଏବେ ତା'ର ଚିନ୍ତା କରାଯାଇପାରିବ ନାହିଁ । ଏ ମହାଶୟ ଏକ ମୁଖ୍ୟ ଛାତ୍ରାବାସର ସୁପରିଟେଣ୍ଡେଟ୍ ହିସାବରେ ଛାତ୍ରାବାସର ଖାଲି ଜମିରେ ପରିବା ଚାଷ କରାଇ, ମେସ୍ ଖର୍ଚ୍ଚ କମିବାରେ ସାହାଯ୍ୟ କରି, ତଥା ଛାତ୍ରାବାସର ପ୍ରାୟ କୋଡ଼ିଏ ଡିସିମିଲ ଜମିରେ ଔଷଧ ଗଛ ଲଗାଇ ସେଗୁଡ଼ିକର ବ୍ୟବହାର ଓ ପରିଚୟ କରାଇ ଛାତ୍ରମହଲର ହୃଦୟ ଜୟ କରିଥାନ୍ତି । ଛାତ୍ରାବାସର ଗୋଟିଏ କୋଠରୀକୁ ଉପାସନା ମନ୍ଦିର ରୂପେ ରଖି କିଶୋର ବୟସର ଅନ୍ତେଃବାସୀଙ୍କୁ ଧର୍ମ ମାର୍ଗରେ

ଆକୃଷ୍ଟ କରି ଏକ ଆଦର୍ଶ ଶିକ୍ଷକତାର ନିଦର୍ଶନ ଦେଖାଇଥିଲେ । ଛାତ୍ରାବାସରେ ତର୍କ ସଭା, ଗୀତ ପ୍ରତିଯୋଗିତା, ପ୍ରଖ୍ୟାତ କବି ଓ ମନୀଷୀମାନଙ୍କର ଜନ୍ମଦିନ ପାଳନ କରାଇ ବିଶେଷ ସଭାମାନଙ୍କର ବକ୍ତୃତା ପ୍ରତିଯୋଗିତା ଯୋଗେ ଅନେକ ନବ ପ୍ରତିଭାର ଉନ୍ମେଷ କରାଉଥିଲେ । ତାଙ୍କର ଶିକ୍ଷକ ରୂପେ ଛାତ୍ର ସମାଜକୁ ଦାନ ସର୍ବଦା ଶ୍ଲାଘ୍ୟ ମନେ ହୁଏ ।

ବିଶେଷ ମନେ ହୁଏ ତାଙ୍କର ବ୍ୟକ୍ତିଗତ ଆଦର୍ଶ ଆର୍ଷ ଜୀବନ । ବ୍ୟକ୍ତିଗତ ଜୀବନ ତାଙ୍କର ସୁଖମୟ ନଥିଲା । ବଡ଼ପୁଅ ଓ ଏକମାତ୍ର ଝିଅର ଅକାଳ ମୃତ୍ୟୁ ଦୁର୍ବିସହ ହେଲେ ହେଁ ସେ କେବେ ବିଚ଼ଳିତ ନ ଥିଲେ । ଉପର୍ଯୁକ୍ତ ସନ୍ତାନ ହାନି ହେତୁ ପତ୍ନୀଙ୍କର ମାନସିକ ଅବ୍ୟବସ୍ଥାରେ ସେ ବିବ୍ରତ ପ୍ରାୟ, ତଥାପି ମନରେ ଦୁଃଖ ନାହିଁ । ତାଙ୍କର ସେ ମାନସିକ ଧୈର୍ଯ୍ୟ ଓ ସ୍ଥୈର୍ଯ୍ୟ ସମସ୍ତ ଛାତ୍ରଙ୍କୁ ପରବର୍ତ୍ତୀ ଜୀବନରେ ଦୁଃଖ ଭିତରେ ବି ଜୀଇଁବାର କଳା ଶିଖାଉଥିଲା । ମନରେ ଦୁଃଖ ଥାଇ ବି ଅନ୍ତରରେ କୋହ କି ଆଖିରେ ଲୁହ ନଥିଲା । ସଦା ପ୍ରଶାନ୍ତ ପ୍ରସନ୍ନ ମୂର୍ତ୍ତି ଯାହା ଜନ୍ମାନ୍ତର ଧରି ଭୁଲି ହେବ ନାହିଁ ।

୧୯୪୨ ସାଲ୍, ଭାରତଛାଡ଼ ଆନ୍ଦୋଳନ ଗମ୍ଭୀରଭାବେ ଦେଶସାରା ବ୍ୟାପି ଚାଲିଥାଏ । ମହାତ୍ମାଗାନ୍ଧିଙ୍କୁ ଜେଲ୍‌ରେ ଭରି ଦିଆଯାଇଥାଏ । ବରଗଡ଼ ଜର୍କ ହାଇସ୍କୁଲ୍‌ର ସମସ୍ତ ଛାତ୍ର ବରଗଡ଼ ସହର ସାରା ଶୋଭାଯାତ୍ରା କରି କହି ଚାଲିଥାନ୍ତି ମହାତ୍ମାଗାନ୍ଧିଙ୍କ ସଂଗେ ଛାତ୍ରସମାଜକୁ ବି ଜେଲ୍ ଦିଅ । ପ୍ରମୁଖ ଛାତ୍ର ନେତା ଶ୍ରୀ ବିନୋଦବିହାରୀ ଦାଶ, ଶ୍ରୀ ଗଣନାଥ ପ୍ରଧାନ, ଘନଶ୍ୟାମ ପୁରୋହିତ, ଯୁଗଳ କିଶୋର ମିଶ୍ର, ଜଗନ୍ନାଥ ପଟ୍ଟନାୟକଙ୍କୁ ଜେଲ୍‌କୁ ନିଆଗଲା । ଏମାନେ ଯିବାବେଳେ ଛାତ୍ରାବାସର ଭିତରକୁ ପଶିଆସିବାର ତ୍ରୁଟି କଲା ପୋଲିସ୍ । ପୂର୍ବଦିନ ଥିଲା ବରଗଡ଼ ସାପ୍ତାହିକ ହାଟପାଳି । ପ୍ରାୟ ସବ୍‌ଡିଭିଜନର ସମଗ୍ର ଅଞ୍ଚଳରେ ଲୋକ ଜମା ହୋଇଥିବାରୁ ଛାତ୍ର ଶୋଭାଯାତ୍ରା ଦେଖି ପୋଲିସ୍‌ର ଦମନ ଆଶଙ୍କା ସର୍ବତ୍ର ପ୍ରଚ଼ାରିତ ହୋଇଥିଲା । ଛାତ୍ରମାନେ ବି ଆଶଙ୍କା କରୁଥିଲେ ଯେ ହେଡ୍‌ମାଷ୍ଟର ଆଜ୍ଞା ବି କଡ଼ା କାର୍ଯ୍ୟାନୁଷ୍ଠାନ ନେବେ । ମାତ୍ର ସମସ୍ତେ ଆଶ୍ଚର୍ଯ୍ୟଚ଼କିତ ହୋଇଗଲେ ଯେ ହେଡ୍‌ମାନଷ୍ଟର ମହାଶୟ ଓଲଟା କହିଲେ ତାଙ୍କର ବିନାନୁମତିରେ ଛାତ୍ରବାସକୁ ପୋଲିସ୍‌ର ପ୍ରବେଶ ଅତି ଅନ୍ୟାୟ ଥିଲା । ସମସ୍ତ ଛାତ୍ର ସମାଜ ସହ ସବ୍‌ଡିଭିଜନର ସାରା ଛାତ୍ରଙ୍କ ଅଭିଭାବକ ବୃନ୍ଦ

ହେଡ୍‌ମାଷ୍ଟରଙ୍କ ଛାତ୍ର ପ୍ରୀତିରେ କୃତକୃତ୍ୟ ହୋଇପଡ଼ିଲେ। ଲୋକେ କୁହାକୁହି ହେଲେ "ହେଡ୍‌ମାଷ୍ଟର ଶ୍ରୀ ହାରାଚାନ୍ଦ ନାୟକ ଆଜ୍ଞା ଜଣେ ଗୁରୁ ଯେ କି ଗୁରୁବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱର ଶ୍ରେଣୀରେ ଯିବେ। ପରବର୍ତ୍ତୀ ହେଡ୍‌ମାଷ୍ଟର ଶ୍ରୀ ଜଗନ୍ନାଥ ମିଶ୍ରଂକର କାର୍ଯ୍ୟକାଳ ସର୍ବଦା ଛାତ୍ର ପ୍ରୀତିକର ଥିଲା। ସେ ସ୍କୁଲ ଓ ଛାତ୍ରାବାସମାନଂକରେ ପ୍ରତିବର୍ଷ ନାଟକାଭିନୟ କରାଇ ସର୍ବଦା ଛାତ୍ରଜଗତକୁ ଆନନ୍ଦମୟ ରଖିବାର ଚେଷ୍ଟା କରୁଥିଲେ। ସେ ନିଜ ଚେଷ୍ଟାରେ ପାଞ୍ଚଏକର ବିଶିଷ୍ଟ ବିରାଟ ସ୍କୁଲ୍ ହତା ପରିସରକୁ ପକ୍କାବାଡ଼ ବନ୍ଦୀ କରାଇ ଓ ଏକ ନୂତନ ଛାତ୍ରାବାସ ତଥା ଟାଉନ୍ ହଲ୍ ନିର୍ମାଣ କରାଇ ବରଗଡ଼ ପାଇଁ ଦୀର୍ଘଜୀବୀ ରହିଛନ୍ତି। ତାଙ୍କର ଛାତ୍ର ବତ୍ସଳତା ଏବେ ବି କାହାଣୀ ହୋଇ ରହିଛି। ପାଠ୍ୟକଳା ସରିଯାଏ, ହେଲେ ପାଠ୍ୟକଳାର କାରିଗର ଗୁରୁପ୍ରସାଦ ଅନେକ ଦିନ ଯାଏ ରହିଯାଏ ଛାତ୍ର ମନ ରାଜ୍ୟରେ। ଏହି ଦୀର୍ଘଜୀବୀ ଗୁରୁକୁଳ, ସତରେ 'ଗୁରୁ ସାକ୍ଷାତ ପରଂବ୍ରହ୍ମ' ଉପାଧିରେ ଭୂଷିତ ରହି ସମସ୍ତଙ୍କର ନମସ୍କାର ପାଇବାର ହକ୍ ରଖନ୍ତି।



# ବିରଳ ବିଷ୍ଣୁଶର୍ମା

ମଂଗୁଳ ଚରଣ ବିଶ୍ୱାଳ

ବୁଧବାର ଦିନର ଭୁକ୍ତା ହାଟ । ଜଣେ ପିଲାକୁ ଧରି ପସରା ପସରା ମାଗୁଛି ଅମ୍ବାଭୋନା ଥାନାର ଥାନାବାବୁ କିଟୁ ସିଂହ । କିଏ ଜଣେ କହିଲା ଗଲା ପାଳି ହାଟରେ ବି ଏମିତି ମାଗୁଥିଲେ । ଯିଏ ମାଗି ପାରେ ସେ ହିଁ ଦେଇ ଜାଣେ । ବୁଦ୍ଧ ସବୁ ଦେଇପାରିଥିଲେ ବୋଲି ମାଗି ଜାଣିଲେ । ଏଣୁ ସେ ଭିଖାରି ନ ହୋଇ, ହେଲେ ଭିକ୍ଷୁ ।

କିଟୁ ସିଂହ ମାଗୁ ନାହିଁ, ଦେବାକୁ ଶିଖାଉଛି । ତା' ସାଙ୍ଗର ପିଲାଟି ଭଲ ପଢୁଛି । କେହି କହିଲା, ତମେ ପୁଲିସ୍ ବାଲା, ଏକାକୀ ଦେଇ ପାରନ୍ତ ? "ପାଁଚ୍ ଆଦମିକେ ଲିଏ ଲକଡ଼ି, ଏକ କୋ ବୋଝ୍", ହସି କହନ୍ତି କିଟୁ ସିଂହ । କିଟୁ ସିଂହ ଯେଉଁ ପିଲା ପଛରେ, ନିଶ୍ଚିତ ସେ ଉତ୍ତମ ପିଲା ।

ଏମିତି ଚାରି ପାଳି ହାଟରୁ ଚାଳିଶ ଟଙ୍କା ମିଳିଗଲା । ମାସକୁ ମେସ୍ ଖର୍ଚ୍ଚ ପନ୍ଦର ଟଙ୍କା । ମିଲ୍ ଗୋଟାକୁ ଚାରଣା । ପେଟ ଖରାପ କହି ନଖାଇ ପାଂଚ୍ ଟଙ୍କା ସଞ୍ଚୟ କରନ୍ତି ସେ ପିଲା । ସବୁମନ୍ତେ ଗରିବ ବାପକୁ ସହଯୋଗ କରନ୍ତି ସେ ଚାଟ ଜଣକ ।

ଝିଲମିଣ୍ଡା ରାମନାରାୟଣ ବାବୁଙ୍କ ପୁଅ କହନ୍ତି, "ମେହେର, ଲେଂପର ଏ ପାଖେତ ମୁଁ, ଆର ପାଖେ ତମେ ପଢ଼ି ପାରନ୍ତ" ? ଏମିତି କିରୋସିନ୍ ଖର୍ଚ୍ଚ ଉଠିଗଲା । ଗୋକୁଳ ପଣାୟତ ଛାତ୍ରାବାସକୁ ଭୁଜା ଆଣେ ସକାଳେ ଓ ସଂଜେ । ଧାର ଉଧାର ଦିଏ । ମୁହେଁ ମୁହେଁ ମନେ ରଖିବ କେତେ ? କ୍ଷତ୍ରୀୟକୁ ଭଲ ଅଙ୍କ ଆସେ । ତା' ହିସାବ ପାଇଁ ସେହିଁ ଯୋଗ୍ୟ । ପିଲାଟିର ଜଳଖିଆ ଖର୍ଚ୍ଚ ଏଇଠୁ ଉଠିଗଲା । ରାମକୃଷ୍ଣ ପରମ ହଂସଙ୍କ ପରି ଗୋକୁଳ ଟିପ ମାରିବାବାଲା । ହେଲେ ବିବେକରେ ବିଲାତ ଫେରନ୍ତା । ପିଲାଟି ଲାର୍ଣ୍ଣି ସହିତ ଆର୍ଣ୍ଣି କଥା ପଢ଼ିବା ବେଳଠୁ ଶିଖିଛି ।

ଧନ୍ୟ କହିବ ଦୀନବଂଧୁ ସାହୁଙ୍କୁ ଏ ଗରିବ ପିଲାଟିର ଘରକୁ ଆସି ପାଠ ପଢ଼ାଇ ଯାଆନ୍ତି । ଭାବଗ୍ରାହୀ ପୁରୋହିତ, ଗଦାଧର ବେହେରା, ଖଗେଶ୍ୱର ଭୋଇ ପରି ଶିକ୍ଷକ ଥିଲେ ଗରିବ ପିଲାଏ ବି ପାଠ ପଢ଼ିପାରନ୍ତି । ଖଗେଶ୍ୱର

ଭୋଇ ଗୁଡ଼ିଦା ମାଇନର ସ୍କୁଲ୍‌ର ପ୍ରଧାନ ଶିକ୍ଷକ ହେବାପରେ ଏ ପିଲାକୁ ନିଜ ପାଖରେ ରଖି ସବୁ ଖର୍ଚ୍ଚ ବହନ କଲେ ।

କ୍ଷତ୍ରୀୟ ମେହେର ସେତେବେଳକୁ ଯୁବକ । ତାଙ୍କ ବାଲ୍ୟବଂଧୁ ନଟବର ବନ୍‌ଛୋରଙ୍କ ସହ ତାଙ୍କ ପ୍ରାଥମିକ ସ୍କୁଲ୍‌ର ସାର ଦୀନବଂଧୁ ସାହୁଙ୍କୁ ଭେଟିବାକୁ ଗଲେ । ଗାଁ ବାହାରେ ଏକ ଛୋଟ କୁଡ଼ିଆରେ ରହୁଥାନ୍ତି ସେ । ଏ ଦୁହିଁଙ୍କୁ ଦେଖି ସାର୍ ପାଟି କଲେ, "ମୋ ପାଖକୁ ଆ' ନା' କ୍ଷତ୍ରୀୟ, ରୋଗ ଡେଇଁବ ।" ମନା ନ ମାନି ଏ ଦୁହେଁ ଗଲେ । ସାର୍‌ଙ୍କୁ ବଡ଼ ରୋଗ, କୁଷ୍ଠ । "ତୁ ଦିନେ ଯୁକ୍ଲିଡ଼୍ ପରି ହେବୁ ମେହେର" । ଏ ଦୁହେଁ କାନ୍ଦି ପକେଇଲେ । ଛାତ୍ରର ଇହ ଓ ପରର ଚିନ୍ତାକଲେ ବୋଲି ଶିକ୍ଷକର ଅନ୍ୟନାମ 'କଲ୍ୟାଣମିତ୍ର' ବୌଦ୍ଧ ପରିଭାଷାରେ ।

ଏ ଅଧମ ଧନ୍ୟ ହୋଇଗଲା ଭୁକ୍ତା ହାଟର ସେଇ ସାହାଯ୍ୟ ଭିକ୍ଷୁ ପିଲାଟି ଯେଉଁଦିନ ଏ ଅଧମ ହାତରେ ହଜାର ହଜାର ଟଙ୍କା ଗରିବ ମେଧାବୀ ପିଲାଙ୍କୁ ଦାନ କଲେ ତାଙ୍କ ନିଜ ଗାଆଁ ଗୁଡ଼ିଦା ହାଇସ୍କୁଲ୍‌ରେ । ସେଇ କାରୁଣିକ କ୍ଷତ୍ରୀୟ ମେହେର ଏ ଅଧମର ଅଙ୍କ ଶିକ୍ଷକ । ଚାରି ବର୍ଷକାଳ ତାଙ୍କଠୁଁ ଅଙ୍କ ଶିଖିଛି ।

ଦର୍ପଣ ବୁଝେନା ଚାହିଁବା ଲୋକଟି କଳା ନା ଗୋରା । ଯେ ଚାହେଁ, ସେ ହିଁ ବିମ୍ବିତ ହୁଏ । ଶିକ୍ଷକଙ୍କର ସେଇ ସ୍ୱକୀୟ ସ୍ୱଚ୍ଛତାକୁ ଏ ଅଧମର ପ୍ରଣାମ ।

ମା' ମୁଁ ଆମେରିକା ଯିବି । ଶାରଦାମଣିଙ୍କୁ ଜଣାଇଲେ ବିବେକାନନ୍ଦ । ମା' ହୁକୁମ କଲେ, ସେଠୁ ପନକୀଟି ଆଣତ, ପୁଅ । ଧାରପାଖକୁ ଧରି ଆର ପାଖକୁ ଧରାଇ ଦେଲେ ମା'ଙ୍କୁ । ମା' କହିଲେ, ତମେ ହିଁ ଆମେରିକା ଯିବାକୁ 'ଭାଜନ' । ଏ 'ଭାଜନ' ହେବା ପଣଟି କୁଆଡ଼େ ଶିକ୍ଷକଠି ଥାଏ ।

ଚମକି ପଡ଼ିଲା ବାଟୋଇ, ରାସ୍ତା ଉପରେ କଣଟାଏ ! ବୋଧହୁଏ ସାପ ! ଭେଟିବା ଜଣକୁ ଜଣାଇଲା । 'ହୋଇଥିବ' କହିଲା, ଶୁଣିଲା ଲୋକଟି । ତୃତୀୟ ଜଣକୁ କହନ୍ତେ, ଟର୍ଚ୍ଚ ଧରୁଛି, ଚାଲ ଦେଖିବା । ତିନିହେଁ ଗଲେ । ଟର୍ଚ୍ଚ ମାରନ୍ତେ, ସାପ ନୁହେଁ, ଦଉଡ଼ି ! ଟର୍ଚ୍ଚ ମାରିବା ଜଣଟି ଶିକ୍ଷକ । ଦଉଡ଼ିକୁ ସାପ ଭାବିଥିବା ଲୋକଟି ଛାତ୍ର । ହୁଁକାର ମାରିଥିବା ଲୋକଟି 'ପବ୍ଲିକ୍' (ଜନସାଧାରଣ) । ଦଉଡ଼ିକୁ ଦଉଡ଼ି । ସାପକୁ ସାପ ବୋଲି ଜଣାଇବା ଶିକ୍ଷକର କାମ । ସେ କାମଟି ଶିକ୍ଷା ।

ପ୍ରଥମେ ଏ ଅଧମ କ୍ଷମା ଚାହୁଁଛି, ଯେହେତୁ କିଛି ବ୍ୟକ୍ତିଗତ କଥା କହିବ ।

କବି ବ୍ରଜନାଥ ବଡ଼ଜେନା କହନ୍ତି, 'ଆପଣା ପୁରୁଷାର୍ଥ କେବେ ନ କହିବ"। ଏ ଅଧମ ପ୍ରାଥମିକ ଓ କଲେଜ ସ୍ତରର କିଛି ସାର୍‌ମାନଙ୍କ କଥା କହିବ। ଯେଉଁମାନେ ଏ ଅଧମର ନିର୍ମାଣରେ ନିପୁଣ ଥିଲେ।

"ପାଠ ନ ହେଲେ ନାହିଁ, ଏ ପିଲାଟି ଯେମିତି ମଣିଷ ହଉ।" କୁର୍ଲା ପ୍ରାଥମିକ ସ୍କୁଲ୍‌ର ଅବଧାନ ଯୁଧିଷ୍ଠିର ପ୍ରଧାନଙ୍କୁ ଏ ଥିଲା ବାପାଙ୍କର ଅନୁରୋଧ। ଏ ଅଧମ କୁଆଡ଼େ ଅବୋଲକରାଟିଏ ଥିଲା ବୋଲି ବାପା ଗାଁ ସ୍କୁଲ୍‌ରେ ନ ରଖି କୁର୍ଲା ସ୍କୁଲ୍‌କୁ ପଠାଇଲେ। ଖଣି ନଛାଡ଼ିଲେ ଖଣିକର ଓ ମା' କୋଳ ନଛାଡ଼ିଲେ ମଣିଷର ଭାଉ ବଢ଼େ ନାହିଁ।

ଆମ ବେଳେ ଦୁଇ ଓଳି ସ୍କୁଲ୍। ସୁରୁଜ ଉଁଏ, ନିତ୍ୟକର୍ମ ସାରୁ। ମୁର୍‌ହି (ମୁଢ଼ି) ବୁଚୁକେ ଧରି ବାହାରି ପଡୁ। ସ୍କୁଲ୍‌ରେ ପାଦ ଦବା ବେଳକୁ ଭୁଜା ସରିଥାଏ। ପୋଷାକ ବୋଇଲେ ଦି' ଖଣ୍ଡ ଗାମୁଛା। ମାଇନର୍ ସ୍କୁଲ୍‌କୁ ଯିବାବେଳେ ଏ ଅଧମକୁ ଜାମା ମିଳିଥିଲା। ମେଟ୍ରିକ୍ ବେଳକୁ ଚଟି। ଆଗ ଯାଇ ସ୍କୁଲ୍ ଝାଡୁକରୁ। ଅନେଇଁ ଥାଉଁ, ଶିକ୍ଷକ ନ ଆସନ୍ତେ କି ? ପ୍ରଧାନଗୁରୁ ଯୁଧିଷ୍ଠିର ପ୍ରଧାନ। ଚାରିଆଡ଼େ ନାଆଁ। ମୂଢ଼କୁ ମଣିଷ କରିବାର କରାମତି ତାଙ୍କ ହାତରେ। ଯାହା ଛୁଅନ୍ତି ସୁନା। ରାଜା ମି' ଦାସ ପରି।

ଆମ ବସ୍ତାନିରେ ବହିର ଭିଡ଼ ନଥିଲା। ଶିକ୍ଷକ ପିଲାକୁ ପଢ଼ାଉଥିଲେ, ପାଠକୁ ନୁହେଁ। ଏବେ ପାଠକୁ ପଢ଼ାହେଉଛି, ପିଲାକୁ ନୁହେଁ। ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ ସକାଳ ଓଳିର ଛୁଟି। ପେଟେ ଠୁଙ୍ଗି ପୁଣି ବାହାରି ପଡୁ। ସଂଜ ହୁଏ, ପାଠ ସରେ। ଆମ ବେଳେ ଘଡ଼ି ନଥିଲା, ପାଠ ଥିଲା, ଏବେ ଘଡ଼ି ଅଛି, ପାଠ ନାହିଁ। ଶିକ୍ଷକ ଅକଳନ୍ତି ଶରଧାରେ ଭିତରର ମୂଳ ବିନ୍ଦୁଟିକୁ ବିକଶିତ କରୁଥିଲେ।

ଏବେ ଗାଆଁ କହ କି ସହର, ଛକ ଜାଗାମାନଙ୍କରେ କୁନି କୁନି ପିଲାଙ୍କର କଅଁଳ ଭିଡ଼। ଫିଟ ଫାଟ ୟୁନିଫର୍ମ। ଟାଇଟ୍ ଟାଇ। ଟିଫିନ୍ ଡବା, ୱାଟର ବୋତଲ ସାଙ୍ଗରେ। ପିଠିରେ ପାଠର ବୋଝ। ରିକ୍‌ସା ଭର୍ତ୍ତି ପିଲା। ବାହାନରେ ବୁହାହୋଇ ଯିବାର ସରୁ ସରୁ ସଜବାଜ ହୋଇ ସର୍କସକୁ ବାଘ ବୁହା ହବା ପରି। କେଜିର ପିଲା। ଷ୍ଟାଣ୍ଡାର୍ଡ ଉଆନ୍ ଟୁ ର ପିଲା। ବିଚାରୀ ମାରିଆ ମଣ୍ଟେସରୀର ପିଲା, ରୁଷୋ, ଫ୍ରୋବେଲ୍, ଜନଡ଼ିଉର ପିଲା। ଆମେ ଥିଲୁ ବିଷ୍ଣୁ ଶର୍ମାଙ୍କର ଯେମିତି ଅନଧିଗତ ସେମିତି ଅବାଟୁଆ। ଯୁଧିଷ୍ଠିର ପ୍ରଧାନଙ୍କର, ଜୟରାମ ପଣ୍ଡାଙ୍କର, ଦିବାକର ନାଥଙ୍କ ପରି ଶାଣିତ ଶିକ୍ଷକଙ୍କ ପିଲା।

ଏମାନେ ପବ୍ଲିକ୍ ସ୍କୁଲ୍‌ର ପିଲା ସତ, ପବ୍ଲିକ୍ ସହ ସଂପର୍କ କ'ଣ ? ଜୀବନ ଜଂଜାଳରେ ବ୍ୟସ୍ତ ବାପ ମା' କାଂଜି ହାଉଦାକୁ ଗୋରୁ ପରି ଠେଲି ଦେଇ ଖୁସ୍। ଯେମିତି ହଉ ବାଟି ଘଷି ପାଠକୁ ପିଏଇ ଦବାର ବ୍ୟାକୁଳତା। ପିଲା ଗଲା, ଆଇଲା। ଟ୍ୟୁସନ୍ ପରେ ଟ୍ୟୁସନ୍। ଶୈଶବଟି ଆଖୁ ପରି ଘଣାରେ ପେଷି ହେଉଛି ଯାହା। ଏ ଅଧମର ସାର୍ ଯୁଧିଷ୍ଠିର ପ୍ରଧାନ କହନ୍ତି, ମାଟିକୁ ମାଠି ଜାଣିଲେ ସିନା ଗଢ଼ିବୁ. ତୁଛାଟାରେ ଚକଟାକୁ ଘୂରେଇଲେ ଗଢ଼ିବୁ କ'ଣ ?

ପିଲା ଆଜି ଗୁଡ଼ାଏ ଇନଫର୍ମେସନ୍‌ରେ ଖୁନ୍ଦି ହୋଇ ସ୍କୁଲ୍‌ରୁ ବାହାରୁଛି। ପରକୁ ଚିହ୍ନିବାରେ ପରଶୁରାମ, ନିଜକୁ ଚିହ୍ନିବାରେ ନିଦା ଗଣେଶ।

ଏ ଅଧମର ସାର୍ ଯୁଧିଷ୍ଠିର ପ୍ରଧାନ ଗୋଟାଏ ଶ୍ରେଣୀରେ ସବୁ ପିଲାଙ୍କୁ ମନେ ମନେ ଚାରି ଭାଗରେ ବାଣ୍ଟି ରଖୁଥିଲେ। ବେଗଚିରା, ଚିର ଚିରା, ବେଗ ବେଗା ଓ ଚିର ବେଗା। ବେଗ ଚିରା ମାନେ ଚଞ୍ଚଳ ବୁଝନ୍ତି ଓ ଅନେକ ଦିନଯାଏ ମନେରଖନ୍ତି। ଏମାନେ ସବୁ ବିହନ, ଆଗ ଧାଡ଼ିର ପିଲା। ଏମାନଙ୍କୁ ପାଛୋଡ଼ି, ପରିଚ୍ଛନ୍ନ କରି, ଖରାରେ ସାଇତିବା ଦରକାର। ପରବର୍ତ୍ତୀ ଉତ୍ପାଦନର ଏମାନେ ପୁଂଜି। ଚିର ଚିରା ମାନେ ଡେରିରେ ବୁଝିବେ, ଅନେକ ଦିନଯାଏ ମନେ ରଖିବେ। ଏମାନେ ସମାଜ ସେବାରେ ଲାଗିବେ। ବେଗ୍ ବେଗା ପିଲାଏ ଶୀଘ୍ର ବୁଝିବେ ଓ ଶୀଘ୍ର ପାଶୋରି ଦେବେ। ଶିକ୍ଷକ ଏମାନଙ୍କ ପାଇଁ ସୁଯୋଗ ସୃଷ୍ଟି କରିବେ ଓ ଖଟାଇବେ। ତାଲିମ୍ ଦେଇ ଏମାନଙ୍କୁ ଯୋଗ୍ୟ କରାଇବେ। ସବୁଠୁଁ କମ୍ ଓଜନର ପିଲା ହେଲେ ଚିର୍ ବେଗା। ଏମାନେ ଡେରିରେ ବୁଝନ୍ତି ଓ ଚଞ୍ଚଳ ପାଶୋରି ପକାନ୍ତି। ଏମାନେ ଅତି ମାତ୍ରାରେ ଶିକ୍ଷକଙ୍କ ଠାରୁ ମାଠିବା ଲୋଡ଼ନ୍ତି।

ଆଜି ଏ ଅଧମ ଯେଉଁ ବିରଳ ବିଷ୍ଣୁ ଶର୍ମାମାନଙ୍କୁ ହେଜିବାକୁ ଲୋଭରଖେ, ସେମାନଙ୍କ ଭିତରେ ଯୁଧିଷ୍ଠିର ପ୍ରଧାନ, କୁଂଜବିହାରୀ ପଣ୍ଡା, କ୍ଷତ୍ରୀୟ ମେହେର, ଡଃ ମାୟାଧର ମାସିଂହଙ୍କ ଭଳି ଗୁରୁମାନେ ଅଛନ୍ତି।

ଏବେ ମୂଳରୁ ଏ ମାଠିବା ଡ୍ରିଲିଂ କାମଟି କମ୍ ହେଉଛି ବୋଲି ଟ୍ୟୁସନ୍, କୋଚିଙ୍ଗ୍ ସେଣ୍ଟର ପରି ପାଠ-ଦୋକାନମାନ ଖୋଲୁଛି। ପାଠ କ୍ରମେ ପଣ୍ୟ ପାଲଟି ଯାଉଛି।

ପିଲା କେଉଁ ଅପନ୍ତରାର ଅବାନ୍ତର ଶିଳା ପରି ପଡ଼ିଥାଏ। ଶିକ୍ଷକ ତାକୁ ଗୋଟାଇ ନିର୍ମାଣର ଆଧାର ଶିଳା ବନାଇ ଦିଅନ୍ତି। ହନୁମାନ ଛାତିରେ ରାମ-

ସୀତାଙ୍କର ମୂର୍ତ୍ତି ପରି ଏ ଅଧମ ତା'ର ଶିକ୍ଷକମାନଙ୍କୁ ଛାତି ଭିତରେ ସାଇତି ରଖିଛି। ଆମେ ସେମାନଙ୍କୁ ଭୟ କରୁଥିଲୁ ମାନେ ଭକ୍ତି କରୁଥିଲୁ। ସେମାନେ ଆମକୁ ପୁଅଠୁଁ ଅଧିକ ସ୍ନେହ କରୁଥିଲେ। ମୋର ସ୍କୁଲ୍, ମୋର ପିଲା, ମୋର ମୋର ଘୋଷୁଥା'ନ୍ତି ଆମ ସାର୍ ମାନେ। ଅନୁଷ୍ଠାନଟି ଥିଲା ତାଙ୍କ ସନ୍ତାନ। ସବୁକାମରେ ଥିଲା ଶୃଙ୍ଖଳା, ଅନୁଶାସନ, ଅନୁବର୍ତ୍ତିତା ଓ ନିରନ୍ତରତା। ସ୍ଥାଣୁ ଶିକ୍ଷାକୁ ଗତିଶୀଳ କରିବାର କଳାଟି ତାଙ୍କୁ ଜଣାଥିଲା। ଶିକ୍ଷକ ଭଲ ପଢ଼ାଇଲେ ଭକ୍ତିର ଭାଜନ ହୋଇଥାଏ। ଏବେତ ଫି' ପିଲା ଶିକ୍ଷକ ଆଖିରେ କ୍ରିମିନାଲ୍। ପିଲାକୁ ଅସ୍ୱୀକାର କଲେ ସେ କାହାକୁ ନେଇ ବଞ୍ଚିବ ?

ଲରମ୍ବା ହାଇସ୍କୁଲ୍ ଏ ଅଧମର ନାଳନ୍ଦା। ବିଷୟ ବୈରାଗୀ ଗୈରିକ ସାଧୁର ଆଶ୍ରମଟିଏ ଯେମିତି ! ଲରମ୍ବାର ପାଠପଢ଼ାରେ ବୌଦ୍ଧଯୁଗୀୟ କୃଚ୍ଛ୍ର ସାଧନା ଥିଲା। ଆମ ସାର୍ କହୁଥିଲେ, କେହି ଶହେକୁ ଶହେ ତୁଳସୀ ନୁହନ୍ତି କି ବିଛୁଆତି ବି ନୁହନ୍ତି। ଚୁପଚାପ ଆଠଣି ପରି ଧରମାଟିଏ ନଥିବ କାହିଁକି ପିଲାଙ୍କ ଭିତରେ ? ତା' ଭିତରର ମଂଜକୁ ଠଉରାଇ ପାରିଲେ ହେଲା। ଭଗାରିର ଛି' ଭିତରେ ଥାଏ ବଂଧୁର ସଦାଳାପ। ଜିତିବା ଠାରୁ ହାରିବା ବି ସୁଆଦିଆ। ଛାଇ ପରି ନିଜକୁ ନିଜେ ଅନୁସରଣର ଅନୁଶୀଳନ କରାଉଥିଲେ ଆମ ସାର୍ ମାନେ। ପିଲା ଭିତରର ଅସଲ ବିନ୍ଦୁକୁ ଫୁଲପରି ଫୁଟାଉଥିଲେ। ପିଲାକୁ ତା' ଭିତରୁ ମାର୍ଜିତ କରି ଉଠାଇ ଆଣୁଥିଲେ। ଏ ମଧୁର ସାମାଜିକତା ଭିତରେ ପିଲା ଆପଣା ବୁଦ୍ଧିରେ ଠାକୁର ହଉଥିଲା। ଭଲପିଲା ଓ ବଦମାସ ପିଲା ଲରମ୍ବାକୁ ଆସୁଥିଲେ। ଅନୁଷ୍ଠାନଟି ଉତ୍ସାହର ଉତ୍ସ ଥିବାରୁ ଶ୍ୟାମ ଷଡ଼ଙ୍ଗୀ ଭଳି ପିଲା ଏଗାର ଥର ମେଟ୍ରିକ୍ ପରୀକ୍ଷା ଦେଇ ପାସ୍ କରିଥିଲେ। ପିଲା ଭିତରେ ଏ ପ୍ରକାର ଅନୁପ୍ରେରଣା ଲରମ୍ବା ପରି ଅନୁଷ୍ଠାନ ଦେଇପାରେ।

ଆମବେଳେ "ମାନେ ବହି" କି "ମେଡ଼ ଇଜି" ବହି ନ ଥିଲା। ନିଜ ସିଂଘରେ ନିଜେ ମାଟି ହାଣିବା କଥା। ଅଙ୍କ ଦୁଃଶାସନ ହେଲେ ଆମ ଅଙ୍କ ସାର୍ କ୍ଷତ୍ରୀୟ ମେହେର ଭୀମ। ଅଙ୍କ ରାକ୍ଷସର ଚୁଟିଧରି ରାତି ଅଧରେ ବି ଧାଇଁ ଆସନ୍ତି ପାଗଳା ପଣ୍ଡିତ ଆର୍କିମିଡ଼ିସ୍ ପରି ୟୁରେକ୍କା ଘୋଷି ଘୋଷି। "ପାଇଗଲି ପାଇଗଲି" ଡାକରେ ନିଦରୁ ଉଠିପଡୁ। ଭିଡ଼ ଅଙ୍କ ଖଣ୍ଡେ ବହୁ ଚେଷ୍ଟା ପରେ କରି ପାରିବାର ଆନନ୍ଦ କାହାକୁ ମିଳେ ?

ଆମ ସାର୍‌ମାନେ ବୈଦିକ ଯୁଗର ଗୁରୁପରି ଥିଲେ। ସେମାନେ ମଣିଷ ଦେହରେ ଦେବତା ଥିଲେ। ନିଷ୍ଠାହିଁ ତାଙ୍କ ନିପୁଣତା। ଆମେ ଟ୍ୟୁସନ୍ କ'ଣ ଜାଣି ନଥିଲୁ। ଏ ଅଧମ ପରି ଲୋକେ ଜୀବନରେ ଯଦି କିଛି ହୋଇଛନ୍ତି, ତହିଁରେ ସେଇ ବିରଳ ବିଷ୍ଣୁଶର୍ମାମାନଙ୍କ ଶ୍ରମ ହିଁ ଅଛି।

ଗଂଗାଧର ମେହେର କଲେଜ ମାଡ଼ିବା ବେଳକୁ ଏ ଅଧମକୁ ଅଠର। ଅଧାପେଣ୍ଟରୁ ପୁରାପ୍ୟାଣ୍ଟ୍ ପିନ୍ଧିବାର ବେଳ। କଣା ମୂଲକରୁ ଅକଣା ଆଖଡ଼ାରେ ହାକର। ଟିନ୍ ଏକ୍। ଛନ ଛନ ମନ। ଦେହକୁ ଫଗୁଣ ପଶି ସାରିଥାଏ। ରକତରେ ପଳାଶ ଯେ ଲାଲେ ଲାଲ। ଦେହ ଭିତରେ ନବ କଳେବରର ସଜବାଜ। ଦାରୁଖୋଜା ଚାଲିଥାଏ। ଆଗରେ ଅସଂଖ୍ୟ ଆହ୍ୱାନ। ଭିତରୁ ପାଖୁଡ଼ା ମେଲିଲାଣି। ସେଇ ଫୁଟିବାହିଁ ପ୍ରଭୁପଣ। ସେଇ ଆହ୍ୱାନ ଭିତରୁ ମୋତେ ବାଛିବାକୁ ହବ ମୋର କୌଣସି ଅଧିକାର। ଡଃ ମାୟାଧର ମାନସିଂହ କହୁଥିଲେ, ତୁ କ'ଣ ହବୁ ବଡ଼ କଥା ନୁହେଁ, କେମିତି ହବୁଟି ମୂଳକଥା। ମଣିଷର ଭାଇ ହବୁ ନା ଭଗାରି ହବୁ ? ଗରିବ ହବୁ ନା ଗୌରବ ଅର୍ଜିବୁ ? ବଙ୍ଗଳା ବାନ୍ଧିବୁ ନା ବଂଧନବାହାରେ ରହିବୁ ? ସବୁଭୋଗ କରି ରୋଗ ଡାକିବୁ ? ବଇରାଗୀ ହବୁ ନା ଅନୁରାଗୀ ? ବିପୁଳ ବିରୋଧାଭାସ ଭିତରେ ଆଉ କ'ଣ ହ୍' ନା ହ' ମଣିଷଟିଏ ହବୁ ନିଶ୍ଚିତ।

ଆମବେଳର ସାର୍‌ମାନେ ଚାହୁଁଥିଲେ ପିଲା କ୍ଷୀରଡ଼ୋକି ଧାନ ପରି ପାଚୁ। ଜୀବନର ମାନେ ବୁଝୁ। ଭରାନଈପରି ନାଚୁ। ନିଜ ଭିତରେ ନୂଆ ସବୁଜିମା ତିଆରି କରୁ। ଠକି ନଖାଇ ଖଟି ଖାଇବା ଶିଖୁ। ବିବେକର ଚାଳୁଣୀରେ ସତକୁ ଛାଣୁ। ଦୁଃଖ ଗଛ ପରି ଆଗରେ ଠିଆ ହେଲେ ଫୁଲ ହୋଇ ଫୁଟୁ। ଆମବେଳେ ମଫସଲୀ ହବାରେ ଆରୋହୀ ଉଲ୍ଲାସ ଥିଲା, ଏବର ସହରୀ ହବାରେ ସେ ସୁଆଦ କାହିଁ ?

ଜଣେ ଆନପାଇଁ ଅନିବାର୍ଯ୍ୟ। ଏହାହିଁ ସବୁ ସାମାଜିକତାର ମୂଳ। ବଂଚିବା ମାନେ ନିତି ନୂଆଁ ହବା। ଆଗକୁ ବଢ଼ିଲେ ଅନୁଭବ ମିଳେ। ଅନୁଭବରୁ ଆସେ ସହାନୁଭବ। ସହାନୁଭୂତିରେ ସାମାଜିକତା ଥାଏ। ଦଉଡ଼ି ଭଳି ମଣିଷକୁ ବାଂଧିରଖେ। ଶିକ୍ଷାର କାମ ଅନୁଭବ ହାସଲ କରିବା।

ଏବର ପିଲାଏ, ଆମଠୁ ବେଶୀ ଚାଲାକ୍। "କୁଆ ଓ ମାଠିଆ"ର କାହାଣୀ

କାହାକୁ ଅଜଣା ? ପିଲାଏ କହନ୍ତି, ତମ କୁଆ ତ ବୋକା । ପାଇଲାନି ସୁରୁକା ନଳୀ ଖଣ୍ଡେ ? 'ଫୁଟି' ଶୋଷିବା ପରି ତଳୁ ଶୋଷିଥାନ୍ତା ? ଗୋଡ଼ି ଠୁଳ କରୁଥିଲା କିଆଁ ? ପରଂପରାକୁ ଚମକାଇ ଦବାପରି ଏ ପ୍ରଶ୍ନ ।

ଘୋଡ଼ାରୁ ଉତୁରିଲେ ମୁଲ୍ଲା ମହାଶୟ । ସଇସ ଛାଇ ଖୋଜୁଥାଏ । ଶ୍ରୋତା କାହିଁ ? କାହାକୁ କହିବେ ? ଶେଷକୁ ସଇସ ହିଁ ହେଲା ଶ୍ରୋତା । ମୁଲ୍ଲା ମହାଶୟ ତିନିଘଣ୍ଟା ବକିଲେ । ପ୍ରବଚନ କେମିତି ଲାଗିଲା ପଚାରନ୍ତେ, ସଇସ କହିଲା ଘୋଡ଼ାପରି ମୁରୁଖ ମୁଁ । ପ୍ରବଚନର କଉ ଛେନା ଗୁଡ଼ ବୁଝିଲିଯେ ? ଦଶଟିରୁ ପଟେ ଘୋଡ଼ା ଆଇଛି ବୋଲି କ'ଣ ଦଶଟିର ଦାନା ଦେଇଦେବି ? ସଇସର ଏ ସଂକୁଚିତ କଥନ ଶିକ୍ଷକରୁ ଚମକାଇ ଦବ ନାହିଁକି ?

ଦିନ ଥିଲା, ଗାଇ ଦୁହାଁ ଏ ଅଧମର ସକାଳୁଆ କାମ । ବାଛୁରୀ ଫିଟାନ୍ତେ ଅତର୍କା ଦଉଡ଼ି ମା' ଥନକୁ ମୁହଁରେ ଛେଚିଲା । ନାତିଟା ଥାଏ । ପଚାରିଲା ବାଛୁରୀ ଚିର ଟାଣନ୍ତା ସିନା, ମୁହଁ ବାଡ଼ୋଉଛି ? ବୁଝାଇଦେଲି, ଦବାକୁ ଦାବି କରୁଛି । "ଆମେ କିଛି ଦାବି କଲେ, କିଆଁ ଅମଙ୍ଗ ହୁଅ ଯେ ?" ନାତିର ଏ ପ୍ରଶ୍ନ ଏ ଅଧମକୁ ତା' ଭିତରୁ ଭିଡ଼ି ଆଣିଲା । ଶିଶୁକୁ ତା' ଅଧିକାର ଦବାହିଁ ପନ୍ହା । ମା' କ୍ଷୀରଠୁଁ ମଧ୍ୟାହ୍ନ ଭୋଜନଯାଏ ପନ୍ହାର ବିସ୍ତାର । ଏବେ ମରୁ ନଇ ! ଅଧେ ସୁନା ପାଲଟି ଥିବା ନେଉଳଟି ବାକି ଅଧକ ପାଇଁ ପାଉଁଶ ଖୋଜିବାର ବ୍ୟସ୍ତ ।

ଏ ଅଧମର କ୍ଷତ୍ରୀୟ ମେହେର ସାର୍ କହନ୍ତି, ଶିକ୍ଷା ମଣିଷକୁ ଅସ୍ୱୀକାର କରୁଛି । ଯୁଗର ଉପଯୋଗୀ ନକରି ଯୁଗକୁ ମଣିଷର ଉପଯୋଗୀ କରୁଛି । ଶିକ୍ଷା ତିନୋଟି କାମକରେ । ବଂଚିବାକୁ ଶିଖାଏ । ପରଂପରାକୁ ପରପିଢ଼ିକୁ ଦିଏ । ଜୀବନ ପ୍ରତି ଶ୍ରଦ୍ଧାନୁବନ୍ଧ ହୁଏ । ଏବେ ଅପାଠୁଆଠୁଁ ପାଠୁଆ ବେଶୀ ଅସହାୟ । ତୋରଣର ରଂଭା ତରୁ ପରି ସେ ଛିନ୍ନ ମୂଳ । ଅଜ୍ଞତାରୁ ଅବଜ୍ଞା ଆସେ । ପିଲା ଆଜି ଗୋଡ଼ି ମାଟି । ଶିକ୍ଷା ନାଆରେ ହାଟ ବସେ । ଗରାଖ ଆସନ୍ତି । ଅନୁଷ୍ଠାନ ମାଲଗୋଦାମ ପାଲଟିଯାଏ ।

ଏ ଅଧମର ସାର୍‌ମାନେ ଆମ ପାଇଁ ପ୍ରେରଣା ହୋଇ ରହିଥାନ୍ତୁ । ଆସୁଥିଲା କ୍ଷୁଏ ତାଙ୍କ ପରି ହୁଅନ୍ତୁ ।



# ଜଣେ ଆଦର୍ଶ ଶିକ୍ଷକଙ୍କ ଜୀବନଚିତ୍ର

*ବ୍ରଜନାଥ ରଥ*

ମୋତେ ଯଦି କେହି ଜଣେ ଆଦର୍ଶ ଶିକ୍ଷକଙ୍କ ନାମ ଉଚ୍ଚାରଣ କରିବାକୁ କହେ, ତାହାହେଲେ ପ୍ରଥମେ ଯେଉଁ ନାମଟି ଅବାଧରେ ଓ ଅକ୍ଳେଶରେ ମୋ ମନର ଚିତ୍ରପଟରେ ଅଙ୍କିତ ହୋଇଯାଏ ସେ ହେଉଛନ୍ତି ମୋର ସ୍ୱର୍ଗତ ପିତା ବିଶ୍ୱନାଥ ରଥ (୧୮୯୩-୧୯୭୫), ଯିଏ କି ଆଜକୁ ୩୦ ବର୍ଷ ତଳୁ ଚିରବିଦାୟ ନେଲେଣି ପୃଥିବୀରୁ। କେବଳ ମୋର ପରମାରାଧ୍ୟ ପିତା ଭାବରେ ନୁହେଁ, ହଜାର ହଜାର ଛାତ୍ରଙ୍କର ଆଦର୍ଶ ଶିକ୍ଷକ ଭାବରେ ସେ ଥିଲେ ଶ୍ରଦ୍ଧା ଓ ସମ୍ମାନର ପାତ୍ର। ଏହି ଶ୍ରଦ୍ଧା ଓ ସମ୍ମାନ କୌଣସି ସମୟରେ ଅର୍ଥ, କ୍ଷମତା ବା ଭୟ ଦ୍ୱାରା ଅନ୍ୟଠାରୁ ହାସଲ କରାଯାଇ ପାରେନା । ଏହା ଜଣେ ବ୍ୟକ୍ତିର ନିର୍ମଳ ଓ ଆକର୍ଷଣୀୟ ବ୍ୟକ୍ତିତ୍ୱ ଦ୍ୱାରା ହିଁ ସମ୍ଭବ ହୋଇଥାଏ । ମୁଁ ଅନୁଭବ କରିଛି ମୋର ଶିକ୍ଷକ-ପିତା ଥିଲେ ସେହିଭଳି ଜଣେ ଆଦର୍ଶ ଅନାବିଳ ଓ ଆଦର୍ଶ ବ୍ୟକ୍ତିତ୍ୱର ଅଧିକାରୀ। ତାଙ୍କର ସେହିବ୍ୟକ୍ତିତ୍ୱର ପ୍ରଭାବ ମୋ ଜୀବନକୁ ଖାଲି ନୁହେଁ, ତାଙ୍କର ବହୁ ଛାତ୍ରଙ୍କ ଜୀବନକୁ ଅଳ୍ପେ-ବହୁତେ ପ୍ରଭାବିତ କରିଛି ବୋଲି ମୋର ଧାରଣା।

ଗତ ବିଂଶ ଶତାବ୍ଦୀର ପ୍ରଥମ ଦଶକର ଆଦ୍ୟଭାଗରେ, ବାଲେଶ୍ୱର ଜିଲ୍ଲାର ଖଇରା ଥାନା ଅନ୍ତର୍ଗତ ଏକ ନିପଟ ମଫସଲ ଗାଁରୁ ସେ ବାଲେଶ୍ୱର ସହରକୁ ଆସିଥିଲେ ଶିକ୍ଷାଲାଭ ପାଇଁ। ବାଲେଶ୍ୱର ଜିଲ୍ଲାସ୍କୁଲରେ ନାମ ଲେଖାଇ ସେ ୧୯୧୭ ମସିହାରେ କୃତିତ୍ୱର ସହ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍ସ (ଆଜିର ମାଟ୍ରିକ୍) ପାଶ୍ କରିଥିଲେ। ପିଲାଟି ଦିନରୁ ଅକାଳରେ ହରାଇଥିଲେ ପିତାଙ୍କୁ। କକାଙ୍କ ସାହାଯ୍ୟ-ସହଯୋଗରେ ସେ ପାଠ ପଢ଼ି ନିଜର ପ୍ରତିଷ୍ଠା ବଳରେ ଜଣେ ଆଦର୍ଶ ଶିକ୍ଷକ ଭାବରେ ନିଜକୁ ପ୍ରତିଷ୍ଠା କରିପାରିଥିଲେ ସମାଜରେ। ପ୍ରାୟ ଶହେବର୍ଷ ତଳେ ବାଲେଶ୍ୱର ସହରରେ ରହି ପାଠପଢ଼ିବା ପାଇଁ ତାଙ୍କୁ ଯାହା ଖର୍ଚ୍ଚ କରିବାକୁ ପଡୁଥିଲା, ସେଥିପାଇଁ ବର୍ଷକୁ ପ୍ରାୟ ଗୋଟିଏ ଅମାର ଧାନ ବିକ୍ରି କରିବାକୁ ପଡୁଥିଲା ବୋଲି ସେ ମୋତେ ଅନେକଥର କହିଛନ୍ତି। କେବଳ

କୃଷିଉପରେ ନିର୍ଭର କରି ଚଳୁଥିବା ଏକ ବିରାଟ ପରିବାର ପାଇଁ ଏ ଖର୍ଚ୍ଚ ଥିଲା ଗୋଟାଏ ବୋଝ ଭଳି ।

ବାଲେଶ୍ୱର ଜିଲ୍ଲାସ୍କୁଲ୍‌ରେ ପଢ଼ିଲାବେଳେ ତାଙ୍କର ଜଣେ ଅତି ଅନ୍ତରଂଗ ସାଥି ଥିଲେ ମନ୍ମଥନାଥ ଚୌଧୁରୀ । ସେ ହେଉଛନ୍ତି ଓଡ଼ିଆ ଭାଷାର ରକ୍ଷାକର୍ତ୍ତା, ଆଧୁନିକ ଓଡ଼ିଆ ଗଦ୍ୟ-ସାହିତ୍ୟର ଜନକ, କ୍ରାନ୍ତିକାରୀ ଲେଖକ ବ୍ୟାସକବି ଫକୀରମୋହନଙ୍କ ପ୍ରଥମ ସ୍ତ୍ରୀଙ୍କ ଗର୍ଭରୁ ଜାତ ଏକମାତ୍ର କନ୍ୟା ମହିଳାମଣିଙ୍କ ପୁତ୍ର । ତାଙ୍କରି ମାଧ୍ୟମରେ ବାପା ଫକୀରମୋହନଙ୍କ ସଂପର୍କରେ ଆସିବାର ସୁଯୋଗ ପାଇଥିଲେ ଛାତ୍ର-ଜୀବନରେ । ଫକୀରମୋହନ ସେତେବେଳେ ତାଙ୍କ ଶେଷଜୀବନ ବାଲେଶ୍ୱର ସହରର ମଲ୍ଲିକାଶପୁରସ୍ଥ ନିଜ ବାସଗୃହରେ ବିତାଉଥାନ୍ତି । ସେହି ସମୟରେ ବାପା ନିଜ ସ୍କୁଲ୍‌ସାଥୀ ତଥା ଫକୀରମୋହନଙ୍କ ନାତି ମନ୍ମଥନାଥ ଚୌଧୁରୀଙ୍କ ସାଙ୍ଗରେ ଅନେକ ସମୟରେ ଫକୀରମୋହନଙ୍କୁ ଦେଖାକରିବାକୁ ଯାଉଥିଲେ । ବୃଦ୍ଧ ଫକୀରମୋହନ ମୋ ପିତାଙ୍କୁ ନାତିର ସାଙ୍ଗ ବୋଲି ନାତି ଜ୍ଞାନ କରି 'ଶାନ୍ତିକାନନ'ରୁ ନାନା ପ୍ରକାର ଫଳ ତୋଳି ଖାଇବାକୁ ଦିଅନ୍ତି ଏବଂ ମଜାମଜା କଥା କହନ୍ତି । ଥରେ ତାଙ୍କ ସଦ୍ୟ ପ୍ରକାଶିତ କବିତା ସଞ୍ଚୟନ 'ପୂଜାଫୁଲ' ନିଜ ନାତି ଓ ମୋ ବାପାଙ୍କୁ ଉପହାର ସ୍ୱରୂପ ଦେବା ପୂର୍ବରୁ 'ପୂଜାଫୁଲ' କି ସମାସ ବୋଲି ଉଭୟଙ୍କୁ ପ୍ରଶ୍ନ କରିଥିଲେ ଏବଂ ମୋ ପୂଜ୍ୟ ପିତା ଠିକ୍ ଉତ୍ତର ଦେଇଥିବାରୁ ସେ ତାଙ୍କୁ ଖୁବ୍ ତାରିଫ କରିଥିଲେ । ଛାତ୍ରଜୀବନରେ ଏଭଳି ମହାନ୍ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସି ସେ ଖୁବ୍ ଉତ୍ସାହିତ ହୋଇଥିଲେ ଏବଂ ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଆଗ୍ରହ ଓ ଅଭିରୁଚି ବଢ଼ିଯାଇଥିଲା ।

ଏନ୍‌ଟ୍ରାନ୍‌ସ ପାଶ୍ କରିବା ପରେ ଅସ୍ୱଚ୍ଛଳତା ଯୋଗୁଁ ସେ କଟକ ଯାଇ ଉଚ୍ଚଶିକ୍ଷା ଲାଭର ସୁଯୋଗ ପାଇପାରିନଥିଲେ । ତେଣୁ ଜୀବିକା ନିର୍ବାହ ପାଇଁ ଗୋଟିଏ ଚାକିରି ଅନ୍ୱେଷଣ କରୁଥିବା ବେଳେ ବାଲେଶ୍ୱର ସବ୍‌ରେଜିଷ୍ଟ୍ରାର ଅଫିସ୍‌ରେ ସେ ଜଣେ କିରାଣୀ ରୂପେ ନିଯୁକ୍ତି ପାଇଥିଲେ । କିନ୍ତୁ ଏହି ଚାକିରି ତାଙ୍କୁ ଆଦୌ କର୍ମ-ସନ୍ତୋଷ ଦେଇପାରିନଥିଲା । ସେଠି ସରକାରୀ ଚାକିରିର ସମସ୍ତ ପ୍ରକାର ସୁଖ-ସୁବିଧା ଥିଲା, ପ୍ରତିଦିନ ବେଶ୍ ଭଲ ରକମର ଉପୁରିଛେ ହାତକୁ ଚିକ୍କଣ କରିବାର ବ୍ୟବସ୍ଥା ମଧ୍ୟ ଥିଲା । ତଥାପି ସେଠାରେ ସେ ଆତ୍ମସନ୍ତୋଷ ପାଇପାରିଲେ ନାହିଁ; କାରଣ ଅଳ୍ପପାଠୁଆ ମୋହରିର ବା ଦଲିଲ ଲେଖାଳୀମାନେ ଅସଂଖ୍ୟ ବର୍ଣ୍ଣାଶୁଦ୍ଧି ଥିବା ବିକୃତ ଓଡ଼ିଆ ଭାଷାରେ ଯେଉଁ ଦଲିଲ

ସବୁ ଲେଖୁଥିଲେ ସେସବୁକୁ ପଢ଼ି ପଢ଼ି ତାଙ୍କ ମନ ତିକ୍ତ ଓ ବିଦ୍ରୋହୀ ହୋଇ ଉଠୁଥିଲା, ଅଥଚ଼ ତାହାକୁ ସଂଶୋଧନ କରିବାର ଅଧିକାର ତାଙ୍କର ନଥିଲା। ଓଡ଼ିଆ ଭାଷା ଉପରେ ଏହା ଏକ ପାଶବିକ ଅତ୍ୟାଚ଼ାର ବୋଲି ସେ ମନେ କରୁଥିଲେ। ଏମିତି ଦୀର୍ଘଦିନ ଧରି ଚାଲିଲେ ସେ କ୍ରମଶଃ ମୂର୍ଖ ହୋଇଯିବେ ବୋଲି ଅନୁଭବ କଲେ ଏବଂ ଏହି ଚାକିରି ତାଙ୍କ ବିଦ୍ୟା-ବୁଦ୍ଧି ଓ ସାରସ୍ୱତ ଅଭିରୁଚି ପ୍ରତି ଏକ ଶକ୍ତ ବାଧକ ବୋଲି ସେ ମନେକଲେ। ସେଠାରୁ ପଳାଇ ଆସିବା ପର୍ଯ୍ୟନ୍ତ ପ୍ରାଣ ତାଙ୍କର ବିକଳ ହେଲା। ସେହି ସମୟରେ ଓଡ଼ିଆ ଜାତିପ୍ରାଣ ମହାରାଜା ବୈକୁଣ୍ଠନାଥ ଦେବଙ୍କ ପ୍ରତିଷ୍ଠିତ "ଭିକ୍ଟୋରିଆ ଜୁବିଲି ମଧ୍ୟ-ଇଂରାଜୀ ବିଦ୍ୟାଳୟ" (ଟାଉନ୍ ହାଇସ୍କୁଲ୍)ରେ ୨ୟ ଶିକ୍ଷକ ପଦ ଖାଲିଥିବାର ଜାଣି ସେ ସେଠାରେ ଆସି ଯୋଗଦେଲେ। ଏହି ବିଦ୍ୟାଳୟଟି ଥିଲା ଏକ ବେସରକାରୀ ଅନୁଷ୍ଠାନ, ଦରମା ଥିଲା ଅତ୍ୟନ୍ତ ଅଳ୍ପ ଏବଂ ସରକାରୀ ଚାକିରିରେ ମିଳୁଥିବା ସମସ୍ତ ପ୍ରକାର ସୁବିଧାରୁ ଏହା ଥିଲା ବଞ୍ଚିତ। ଅବସରକାଳୀନ ପେନ୍‌ସନ୍‌ର ବ୍ୟବସ୍ଥା ମଧ୍ୟ ନଥିଲା। ଏଭଳି ଅବସ୍ଥାରେ 'ଧ୍ରୁବ'କୁ ଛାଡ଼ି 'ଅଧ୍ରୁବ'କୁ ଆଦରି ନେବା, ଅର୍ଥାତ୍ ସମସ୍ତ ସୁବିଧା ଥିବା ସରକାରୀ ଚାକିରିକୁ ପଦାଘାତ କରି, କୌଣସି ଗ୍ୟାରେଣ୍ଟି ନଥିବା ଏକ ବେସରକାରୀ ଶିକ୍ଷାନୁଷ୍ଠାନର ଶିକ୍ଷକ ପଦରେ ଯୋଗଦେବା ବ୍ୟକ୍ତିକୁ ନିଶ୍ଚିତ ଭାବରେ ଯେ କେହି ବୋକା ବା ପାଗଳ ଆଖ୍ୟା ଦେବ। କିନ୍ତୁ ମୋର ପୂଜ୍ୟ ଶିକ୍ଷକ-ପିତା ବିଶ୍ୱନାଥ ରଥ ସେଭଳି ଆଖ୍ୟା ଅକୁଣ୍ଠିତ ଚିତ୍ତରେ ଗ୍ରହଣ କରିଥିଲେ ଆପଣା ବିବେକର ଆହ୍ୱାନରେ ଏବଂ ଆତ୍ମସନ୍ତୋଷ ପାଇଁ। ସେ ଅନୁଭବ କରିଥିଲେ, ତାଙ୍କର ବିଦ୍ୟା ଓ ଜ୍ଞାନର ଏକମାତ୍ର ସଦୁପଯୋଗ ହୋଇପାରିବ ଶିକ୍ଷକତା ଦ୍ୱାରା, ଏବଂ ତାହାହିଁ ତାଙ୍କ ଦୀର୍ଘ ଚାଳିଶବର୍ଷରୁ ଉର୍ଦ୍ଧ୍ୱ ଶିକ୍ଷକ-ଜୀବନରେ ସେ ପ୍ରମାଣ କରିଯାଇଛନ୍ତି। ତାଙ୍କ ସହିତ ସବ୍‌ରେଜିଷ୍ଟ୍ରାର ଅଫିସ୍‌ରେ କିରାଣୀ ଭାବରେ ଯୋଗଦେଇଥିବା ବ୍ୟକ୍ତିମାନେ ଶେଷରେ ପଦୋନ୍ନତି ପାଇ ଅଫିସର୍ ହୋଇପାରିଥିଲେ ଏବଂ ବିପୁଳ ଅର୍ଥ ଓ ସଂପତ୍ତିର ମାଲିକ ମଧ୍ୟ ହୋଇଥିଲେ। କିନ୍ତୁ ସେହି ଚାକିରି ଛାଡ଼ି ସାମାନ୍ୟ ବେସରକାରୀ ଶିକ୍ଷକ ପଦକୁ ସ୍ୱେଚ୍ଛାରେ ବରଣ କରିଥିବା ମୋର ପିତା ଶେଷରେ ୧୯୬୧ରେ ସେହି ସ୍କୁଲ୍‌ରୁ ବିଦାୟ ନେଲା ବେଳକୁ ମାତ୍ର ଶହେ କେତେ ଟଙ୍କା ଦରମା ପାଉଥିଲେ। ଅବସର ପରେ ପେନ୍‌ସନ୍ ପାଇ ନଥିଲେ, ଚାଳଛପର ଥିବା ମାଟିଘରକୁ ଟାଇଲ ବା ଟିଣଛପର

ମଧ୍ୟ କରିପାରିନଥିଲେ । ଏଇ ସ୍ୱେଚ୍ଛାକୃତ ଦାରିଦ୍ର୍ୟ ବରଣ ସତ୍ତ୍ୱେ ତାଙ୍କ ମନରେ ଟିକିଏ ହେଲେ ଅସନ୍ତୋଷ ନଥିଲା ବା ନିଜ ଭିତରେ ସେ କୌଣସି ନ୍ୟୂନ ମନୋଭାବ୍ ପୋଷଣ କରିନଥିଲେ । ସେ ଥିଲେ ପ୍ରଚଣ୍ଡ ସ୍ୱାଭିମାନି ଓ ନିର୍ଭିକ । ଆଜି ମୋର ଏହି ସତୁରିବର୍ଷ ବୟସରେ ବି ମୁଁ ଅନୁଭବ କରେ ମୋର ଶିକ୍ଷକ-ପିତାଙ୍କର ଏହିସ୍ୱଭାବ ଓ ଜୀବନାଦର୍ଶ ମୋର ସମଗ୍ର ଜୀବନକୁ ଯଥେଷ୍ଟ ପ୍ରଭାବିତ କରିଛି, ଆଗେଇବାକୁ ସାହସ ଓ ଶକ୍ତି ଦେଇଛି, ଦେଇଛି ଦମ୍ଭ ଓ ଆତ୍ମବିଶ୍ୱାସ ।

ଅଧ୍ୟାପନା ସହିତ ସେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ, ଏହା ସେ ଅନୁଭବ କରିଥିଲେ ବୋଲି ସାରା ଜୀବନ କେବଳ ବିଦ୍ୟାଦାନୀ ଶିକ୍ଷକ ଭାବରେ ନୁହେଁ, ଜ୍ଞାନ ଆହରଣକାରୀ ଜଣେ ଏକନିଷ୍ଠ ଛାତ୍ର ଭାବରେ ଅତିବାହିତ କରିଥିଲେ । ପ୍ରତିଦିନ ସେ ପ୍ରାୟ ୪/୫ ଘଣ୍ଟା ପଢୁଥିଲେ ନିଶ୍ଚିତ ଭାବରେ । ଗୀତା, ରାମାୟଣ, ମହାଭାରତ, ଅନ୍ୟାନ୍ୟ ଧର୍ମ ଓ ନୀତିଗ୍ରନ୍ଥ ସହିତ ଜ୍ୟୋତିଷ, ବୈଦ୍ୟଶାସ୍ତ୍ର ଓ ସାହିତ୍ୟ ସମ୍ବନ୍ଧୀୟ ବହୁ ପୁସ୍ତକ ସେ ପଢ଼ିଥିଲେ ଜୀବନରେ । ସାହିତ୍ୟ ପ୍ରତି ଆଗ୍ରହ ମୁଁ ତାଙ୍କରିଠାରୁ ହିଁ ହାସଲ କରିଥିଲି । ଛାତ୍ରଜୀବନରେ ମୋତେ ସେ ଫକୀରମୋହନ, ରାଧାନାଥ, ଗଙ୍ଗାଧର, ମଧୁସୂଦନ ଓ ନନ୍ଦକିଶୋର ବଳ ଇତ୍ୟାଦିଙ୍କ ଗ୍ରନ୍ଥାବଳୀ ପଢ଼ି ବୁଝାଉଥିଲେ । ପ୍ରତି ଶନିବାର ଦିନ ସଂଧ୍ୟାରେ ପାଠ୍ୟପୁସ୍ତକ ନପଢ଼ାଇ ସେ ମୋତେ ଏହି ସବୁ ସାହିତ୍ୟ ଗ୍ରନ୍ଥ ପଢ଼ାଉଥିଲେ । ମୋର ୯/୧୦ ବର୍ଷ ବୟସ ବେଳକୁ ମୁଁ ଶହଶହ ସଂସ୍କୃତ ନୀତିଶ୍ଳୋକ ଓ ଶଙ୍କରାଚାର୍ଯ୍ୟଙ୍କ ରଚିତ ଅନେକ ସ୍ତୋତ୍ର ଶିକ୍ଷା କରିଥିଲି ବାପାଙ୍କ ଠାରୁ । ସେ ସବୁବେଳେ କହୁଥିଲେ ମଣିଷ ଭିତରେ ଏକ ମାନବିକ ମୂଲ୍ୟବୋଧ ସୃଷ୍ଟି ହୋଇପାରିବ କେବଳ ଉପଯୁକ୍ତ ମାନବିକ ଶିକ୍ଷା ଦ୍ୱାରା । ବୈଷୟିକ ଶିକ୍ଷାଲାଭ କରି ଜଣେ ଜୀବନରେ ବିପୁଳ ବିତ୍ତଶାଳୀ ହୋଇପାରେ, ପ୍ରଚୁର ଭୌତିକ ସଂପତ୍ତିର ହୁଏତ ମାଲିକ ହୋଇପାରେ, କିନ୍ତୁ ଆତ୍ମିକ ଆନନ୍ଦ ପାଇପାରିବ ନାହିଁ । ସାରା ଜୀବନ ମାଟିଘରେ ରହି, ବିନା ଖଟ-ପଲଙ୍କରେ ମାଟି ଶେଯରେ ଶୋଇ, ଅତି ଅଳ୍ପ ଆୟରେ ମଧ୍ୟ କାହାରିକୁ ହାତ ନପତାଇ, ସୁଚିନ୍ତା, ସଦ୍‌ଭାବନା ଓ ସଦ୍‌ଗ୍ରନ୍ଥ ଅଧ୍ୟୟନ ଏବଂ ହଜାର ହଜାର କୋମଳମତି ଛାତ୍ରଙ୍କୁମଣିଷ କରିବାର ସଂକଳ୍ପ ନେଇ ସେ ଯେଉଁ ଆନନ୍ଦ ପାଉଥିଲେ ତା'ର ତୁଳନା ନାହିଁ । ସବୁବେଳେ ସେ ମୋତେ କେବଳ ନୁହେଁ, ଅନ୍ୟମାନଙ୍କୁ ମଧ୍ୟ ଗୋଟିଏ ସଂସ୍କୃତ ଶ୍ଳୋକ କହି

ବୁଝାଉଥିଲେ-

ଶ୍ଳୋକଟି ହେଲା- "ଅଞ୍ଜନସ୍ୟ କ୍ଷୟଂ ଦୃଷ୍ଟା, ବଲ୍ମୀକସ୍ୟଚ଼ ସଞ୍ଚୟମ୍
ଅବନ୍ଧ୍ୟ ଦିବସଂ କୁର୍ଯ୍ୟାତ୍ ଦାନାଧ୍ୟୟନ କର୍ମଭିଃ ।।"

ଯାହାର ଅର୍ଥ ହେଉଛି - 'ଆଖିରେ ଘେନିଥିବା ଅଞ୍ଜନ ବା କଜ୍ଜଳର କ୍ଷୟଦେଖି ଏବଂ ଅନ୍ୟ ଦିଗରେ ବଲ୍ମୀକ ବା ଉଇର ସଞ୍ଚୟ ଦେଖି ପ୍ରତ୍ୟେକ ବ୍ୟକ୍ତି ଦାନ, ଅଧ୍ୟୟନ ଓ ସତ୍‌କର୍ମ ଦ୍ୱାରା ପ୍ରତିଟି ଦିବସକୁ ସଫଳ କରିବା ଏକାନ୍ତ ଆବଶ୍ୟକ ।' ତାଙ୍କ ଛାତ୍ରମାନଙ୍କୁ ମଧ୍ୟ ସେ ସର୍ବଦା ଏହି ଉପଦେଶ ଦେଉଥିଲେ । ନିକର ଜୀବନରେ ଏହି ଆଦର୍ଶକୁ ମଧ୍ୟ ପରୀକ୍ଷାକରି ଦେଖାଇ ଥିଲେ ।

ସେ ଥିଲେ ଏକାନ୍ତ ଶାନ୍ତିପ୍ରିୟ । କାହାରି ସହିତ କଳହ କରିବା ମୁଁ କେବେ ଦେଖି ନାହିଁ । ବହୁବର୍ଷ ତଳେ କିଛି ଲୋକ ଆସି ଜବରଦସ୍ତ ଆମ ବାଡ଼କୁ କାଟି ବର୍ଷାଦିନରେ ପୋଖରିକୁ ଲାଗିଥିବା ନାଳରୁ ମାଛ ଧରିଲେ । ବାପା ସେମାନଙ୍କୁ କିଛି କହିଲେ ନାହିଁ, ଏପରିକି ପୁଲିସ୍‌ରେ ମଧ୍ୟ ଖବର ଦେଲେ ନାହିଁ । କିନ୍ତୁ ଏହାର କିଛି ବର୍ଷ ପରେ ସେମାନେ ନିଜେ ଆସି ଅନୁତାପ କରି ବାପାଙ୍କୁ କ୍ଷମା ମାଗିଥିବାର ମୁଁ ଜାଣିଛି ।

ଦିନଥିଲା ଆମ ଗ୍ରାମରେ ବ୍ରାହ୍ମଣମାନଙ୍କ ବ୍ୟତୀତ ଅନ୍ୟ କେହି ନଡ଼ିଆ ଗଛ ଲଗାଉନଥିଲେ । ସେମାନଙ୍କର ଏକ ଅନ୍ଧବିଶ୍ୱାସ ଥିଲା ଯେ ନଡ଼ିଆ ଫଳିଲେ, ଗଛଲଗାଇଥିବା ଲୋକର ମୃତ୍ୟୁ ଘଟିବ । ଏହି ଅନ୍ଧବିଶ୍ୱାସଟି କାଟିବାପାଇଁ ମୁଁ ଦେଖିଛି ମୋର ସେହି ଆଦର୍ଶବାଦୀ ଶିକ୍ଷକ-ପିତା ନିଜେ ଯାଇ ଅନ୍ୟମାନଙ୍କ ଘରବାଡ଼ିରେ ନଡ଼ିଆଗଛ ଲଗାଇଛନ୍ତି । ସେମାନଙ୍କୁ ଏହି ଗଛ ଲଗାଇବା ପାଇଁ ପ୍ରରୋଚ଼ନା ଦେଇଛନ୍ତି । ସେ ଥିଲେ ସକଳ ପ୍ରକାର ଅନ୍ଧବିଶ୍ୱାସର ସଂପୂର୍ଣ୍ଣ ବିରୋଧୀ । ଥରେ, ଆଜକୁ ଅନେକଦିନ ତଳେ ବର୍ଷାରାତିରେ ଗାଁ ଶ୍ମଶାନ ଦେଇ ଘରକୁ ଫେରୁଥିଲେ । ଦୂରରୁ ଦେଖିଲେ ଗୋଟିଏ ଆଲୋକଶିଖା ଟିକିଏ ଜଳିଉଠି ପୁଣି ଲିଭିଯାଉଛି । ପିଲାଦିନେ ସେ ଡାଆଣୀ ଆଲୁଅ କଥା ଶୁଣିଥିଲେ, କିନ୍ତୁ କେବେ ଦେଖିନଥିଲେ, ବିଶ୍ୱାସ ମଧ୍ୟ କରୁନଥିଲେ । କିନ୍ତୁ ଏହି ନିର୍ଜନ ରାତିରେ ଶ୍ମଶାନ ପାଖରେ ଆଲୁଅଟିଏ ଦପ୍‌କରି ଜଳିଉଠି ପୁଣି ଲିଭିଯିବା ଦେଖି ସେ ଟିକିଏ ଭୟ ପାଇଲେ । ମନରେ ତାଙ୍କର ଆଶଙ୍କା ଜାଗିଲା ସତରେ ଏ କ'ଣ ପିଲାଦିନେ ଶୁଣିଥିବା ସେଇ ଡାଆଣୀ-ଆଲୁଅ ! ତଥାପି ଯୁକ୍ତିବାଦୀ ମନ ତାଙ୍କର ଏହାର

ରହସ୍ୟ ଜାଣିବାକୁ ବ୍ୟାକୁଳ ହେଉଥାଏ । ମନରେ କିଛିଟା ଭୟ ଥିଲେ ମଧ୍ୟ ସେ ସେଥିରେ ଦବି ନଯାଇ ସାହସ ସଞ୍ଚୟ କରି ଟିକିଏ ଟିକିଏ ଆଗେଇଲେ। ଆଲୁଅଟି ସେହିପରି ଜଳି ଉଠି ପୁଣି ଲିଭିଯାଉଥିବା ଭଳି ଜଣାଯାଉଥାଏ। ବର୍ଷାଦିନର ଅନ୍ଧାର ରାତି । ଝିଙ୍କାରିର ଝିଁ ଝିଁ ଶବ୍ଦ ପରିବେଶକୁ ଆହୁରି ଭୌତିକ କରି ତୋଳୁଥାଏ । ଶଙ୍କାକୁଳ ମନ ଓ ଉଦ୍‌ବିଗ୍ନ ହୃଦୟ ନେଇ ସେ ଯେତେବେଳେ ସେହି ଆଲୁଅର ନିକଟତର ହେଲେ, ଦେଖିଲେ ଗୋଟିଏ ମାଟିହାଣ୍ଡି ଭିତରେ ଦୀପଟିଏ ଜଳୁଛି ଏବଂ ଯେତେବେଳେ ଦମକାଏ ପବନ ବହିଆସୁଛି, ସେତେବେଳେ ଦୀପଶିଖାଟି ଅଧିକ ଜଳିଉଠି ପରକ୍ଷଣରେ ପୁଣି କମିଯାଉଛି। କୌଣସି ମୃତବ୍ୟକ୍ତିର ଏକାଦଶାହ ରାତ୍ରିରେ ପ୍ରେତ-ଛଡ଼ାଣ ପାଇଁ ରଖାଯାଇଥିବା ମାଲହାଣ୍ଡି ଭିତରେ ଏହି ଦୀପଟି ଜଳୁଥିଲା ଏବଂ ଦୂରରୁ ଡାଆଣୀ ଆଲୁଅର ଭ୍ରମ ସୃଷ୍ଟି କରୁଥିଲା । ଏହାପରେ ସେ କୌଣସି ବିଷୟକୁ ପରୀକ୍ଷା ନ କରି ହଠାତ୍ ବିଶ୍ୱାସ କରିଯାଉନଥିଲେ । ତଥାକଥିତ ଭୂତ - ପ୍ରେତଙ୍କ ଭୟ ତାଙ୍କର ନଥିଲା । ଯଦି କେହି ଏ ସଂପର୍କରେ ଗଳ୍ପ କରୁଥିଲା, ସେ ତାହାକୁ ଗାଲୁଗଳ୍ପ କହି ଉଡ଼ାଇ ଦେଉଥିଲେ ।

ଆର୍ଥିକ ଅସ୍ୱଚ୍ଛଳତା ସତ୍ତ୍ୱେ ଜୀବନରେ ସେ କେବେ ଟ୍ୟୁସନ୍ କରି ଧନୀ ହେବାକୁ ଚେଷ୍ଟାକରି ନାହାନ୍ତି । ତାଙ୍କର ଅଭାବ ଥିଲା, ଦାରିଦ୍ର୍ୟ ଥିଲା, କିନ୍ତୁ ନିଜ ସ୍ୱାଭିମାନକୁ ଜଳାଞ୍ଜଳି ଦେଇ ଅନ୍ୟଘରେ ଯାଇ ଟ୍ୟୁସନ୍ କରିବାର ସେ ପକ୍ଷପାତୀ ନଥିଲେ। ସ୍କୁଲ୍‌ରେ ଚାକିରି କରି ଯତ୍‌ସାମାନ୍ୟ ଦରମା (ପ୍ରଥମେ ତାଙ୍କ ଦରମା ଥିଲା ମାତ୍ର ପଚିଶ/ ତିରିଶ ଟଙ୍କା) ପାଉଥିଲେ, ସେତିକିରେ ସେ ସନ୍ତୁଷ୍ଟ ରହୁଥିଲେ। ବରଂ ଯଦି କେହି ଛାତ୍ର ଘରକୁ ଆସି ତାଙ୍କ ଠାରୁକିଛି ବୁଝିବାକୁ ଚାହୁଁଥିଲା, ସେ ବିନା ଦ୍ୱିଧାରେ କୌଣସି ପାରିଶ୍ରମିକ ନ ନେଇ ତାକୁ ପଢ଼ାଇ ଦେଉଥିଲେ। ଏପରିକି ଅନେକ ଛାତ୍ର ଆମ ଘରେ ରହି ପାଠପଢ଼ି ମଣିଷ ହୋଇଛନ୍ତି । ଆଜି ଶିକ୍ଷକମାନେ ସେଦିନଠାରୁ ଯଥେଷ୍ଟ ଅଧିକ ଦରମା ପାଉଥିଲେ ମଧ୍ୟ ଯେଉଁଭଳି ଭାବରେ ଆହୁରି ଅଧିକ ଅର୍ଥ ପାଇଁ ନିଜ ସୁଖ ସ୍ୱାଚ୍ଛନ୍ଦ୍ୟ ଭୁଲି ଦିନରାତି ଟ୍ୟୁସନରେ ମଗ୍ନ ରହୁଛନ୍ତି, ଏହା ଦେଖିଲେ ମୋ ଶିକ୍ଷକ ପିତାଙ୍କ ଭାବାଦର୍ଶ କଥା ମୋର ମନେପଡ଼େ। ସେ କହୁଥିଲେ - "ଯଦି ସବୁ ସମୟ ମୁଁ ଖାଲି ଅର୍ଥ ଅର୍ଥ କହି ସ୍ୱର୍ଣ୍ଣମୃଗ ପଛରେ ଗୋଡ଼ାଇଲା ଭଳି ଗୋଡ଼ାଉଥିବି, ତେବେ ମୋ ଜୀବନର ଅର୍ଥ କ'ଣ ?" ସେ ସବୁ ସମୟରେ ମାନସିକ ଶାନ୍ତି ଚାହୁଁଥିଲେ।

ସ୍କୁଲ୍‌ରୁ ଶିକ୍ଷକତା କରି ଫେରିବା ପରେ ସେ ନିତ୍ୟକର୍ମ ସାରି ଗାଁରେ ବିଭିନ୍ନ ଭଦ୍ରବ୍ୟକ୍ତିଙ୍କ ଘରକୁ ବୁଲିବାକୁ ଯାଆନ୍ତି । ସେମାନେ ମୋ ପିତାଙ୍କୁ ମଧ୍ୟ ଖୁବ୍ ଶ୍ରଦ୍ଧା ସମ୍ମାନ କରୁଥିଲେ। ବାପାଙ୍କର ଗୋଟାଏ ବଡ଼ଗୁଣ ଥିଲା, ଯଦି କେହି ବିପଦରେ ପଡ଼ି ତାଙ୍କ ସାହାଯ୍ୟ ଲୋଡ଼ୁଥିଲା, ସେ ଅକୁଣ୍ଠିତ ଚିତ୍ତରେ ତାକୁ ସାହାଯ୍ୟ କରୁଥିଲେ ନିଜର ସାଧ୍ୟମତେ। କାହାରିକୁ କୌଣସି ପ୍ରକାରେ ସାହାଯ୍ୟ କରି ସେ ନିଜର ଡିଣ୍ଡିମ ପିଟୁ ନଥିଲେ।

ତାଙ୍କ ନିର୍ଲୋଭତାର ଆଉ ଗୋଟିଏ ଦୃଷ୍ଟାନ୍ତ ଏବେ ବି ମୋର ମନେ ଅଛି। ଆମ ଗ୍ରାମର ଜଣେ ବିଶିଷ୍ଟ ଜମିଦାରଙ୍କର ମୃତ୍ୟୁ ହେଲା ଆଜିକୁ ପ୍ରାୟ ପଚାଶ ବର୍ଷ ତଳେ। ସେ ବାପାଙ୍କୁ ଖୁବ୍ ସମ୍ମାନ ଓ ଭକ୍ତି କରୁଥିଲେ ଏବଂ ସବୁବେଳେ ତାଙ୍କ ସତ୍‌ପରାମର୍ଶ ଗ୍ରହଣ କରୁଥିଲେ। ଦୀର୍ଘଦିନ ଅସୁସ୍ଥ ରହିଲା ପରେ ଯେଉଁଦିନ ଅର୍ଦ୍ଧରାତ୍ରିରେ ତାଙ୍କର ଦେହାନ୍ତ ହେଲା, ସେହି ଖବର ପାଇ ବାପା ତାଙ୍କୁ ଶେଷଦର୍ଶନ କରିବାକୁ ଗଲେ। ଚାରିଆଡ଼ ଶୋକାକୁଳ ଅବସ୍ଥା। ତାଙ୍କର ଦୁଇ ବିଧବା ପତ୍ନୀଙ୍କ ହାତରୁ ଅଳଙ୍କାର ବାହାର କରି ବିଧବା କରାଇବା ଭାର ବାପାଙ୍କ ଉପରେ ନ୍ୟସ୍ତ କରାଗଲା। ସେ ଅନିଚ୍ଛା ସତ୍ତ୍ୱେ ସମସ୍ତଙ୍କ ଅନୁରୋଧ ରକ୍ଷା କରି ଦୁଇଜଣଙ୍କଠାରୁ ଅଳଙ୍କାର ସବୁ ବାହାର କରି ସେମାନଙ୍କୁ ବିଧବା କରାଇଲେ ଏବଂ ସେ ସବୁକୁ ନିଜ ଧୋତିକାନିରେ ବାନ୍ଧି ନେଇଯାଇ ସେମାନଙ୍କ ଲୁହା ସିନ୍ଦୁକରେ ରଖିଦେଲେ। ସେହି ରାତିରେ ସେ ଇଚ୍ଛା କରିଥିଲେ ମୂଲ୍ୟବାନ ଅଳଙ୍କାର ଭିତରୁ କେତୋଟି ଅବାଧରେ ନେଇ ଆସି ପାରିଥାନ୍ତେ, ଏହା କେହି ଜାଣିପାରି ନଥାନ୍ତେ। ଏକଥା ସେ ଫେରି ଆସି ଆମକୁ କହିଥିଲେ ସେଦିନ। ଯେଉଁ ଅଗାଧ ବିଶ୍ୱାସରେ ଜମିଦାରଙ୍କ ଦୁଇପତ୍ନୀ ବାପାଙ୍କୁ ଏ ଦାୟିତ୍ୱ ଦେଇଥିଲେ, ସେହିଦିନଠାରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବାପା ସେହି ବିଶ୍ୱାସ ରକ୍ଷା କରିପାରିଥିଲେ। ଏଭଳି ନିର୍ଲୋଭତାର ନିଦର୍ଶନ ଆଜିକାଲି କିଞ୍ଚିତ୍ ଦେଖାଯାଉଛି। ଜଣେ ଆଦର୍ଶ ଶିକ୍ଷକର ଜୀବନରେ ଏହି ନିର୍ଲୋଭତାର ସ୍ଥାନ କେତେ ତାହା ପରମାପ କରିବା ଆଜିର ସ୍ୱାର୍ଥସର୍ବସ୍ୱ ସମାଜରେ ଖୁବ୍ କଠିନ।

ସେ ସାରାଜୀବନ ଦୂର ସ୍ଥାନ ବ୍ୟତୀତ ଅନ୍ୟ କେଉଁଠିକୁ ଗଲେ ପ୍ରାୟ ପାଦରେ ଚାଲି ଚାଲି ଯାଉଥିଲେ। ଆମ ଘରଠାରୁ ତାଙ୍କ କର୍ମସ୍ଥଳର ଦୂରତା ଥିଲା ପ୍ରାୟ ପାଞ୍ଚ କିଲୋମିଟର। ପ୍ରତିଦିନ, କି ଖରା, କି ବର୍ଷା , କି ଶୀତ ଚାଲି ଚାଲି ସ୍କୁଲ୍‌କୁ ଯାଉଥିଲେ ଏବଂ ଚାଲି ଚାଲି ଘରକୁ ଫେରୁଥିଲେ। ଦୀର୍ଘବର୍ଷ ଧରି ସେ

ଏହିପିରି ପ୍ରାୟ ୧୦/ ୧୨ କିଲୋମିଟର ଚାଲୁଥିଲେ ଅନାୟାସରେ। ତାଙ୍କ ସମୟରେ ସାଇକେଲ୍ ବ୍ୟତୀତ ଅନ୍ୟ କୌଣସି ଦ୍ୱିଚକ୍ରଯାନ ଆମ ସହରରେ ଆଜି ଭଳି ଚାଲୁନଥିଲା। ବାଲେଶ୍ୱର ସହରରେ ସମୁଦାୟ ହୁଏତ ୮/୧୦ ଜଣଙ୍କର ମୋଟର ସାଇକେଲ୍ ବା ସ୍କୁଟର ଥିଲା। ସେ ଏସବୁ ଯାନ ଚଢ଼ିବା ତ ଦୂରର କଥା, ସାଇକେଲ୍ ଚଢ଼ା ମଧ୍ୟ ଜାଣିନଥିଲେ। କିନ୍ତୁ ୧୯୪୬-୪୭ ମସିହାରେ ମୁଁ ସପ୍ତମଶ୍ରେଣୀରେ ପଢୁଥିଲା ବେଳେ ମୋତେ ଗୋଟିଏ ପୁରୁଣା ସାଇକେଲ୍ ମରାମତି କରାଇ ଚଢ଼ିବାକୁ ଦେଇଥିଲେ। ସେ ପର୍ଯ୍ୟନ୍ତ ମୁଁ ଏବଂ ଅନ୍ୟ ପିଲାମାନେ ପ୍ରତିଦନ ତାଙ୍କ ପଛେ ପଛେ ଏହି ଦୀର୍ଘପଥ ଚାଲିଚାଲି ସ୍କୁଲ୍‌କୁ ଯାଉଥିଲୁଁ ଏବଂ ଛୁଟିପରେ ମଧ୍ୟ ଚାଲି ଚାଲି ଘରକୁ ଫେରୁଥିଲୁଁ।

ସେତେବେଳେ ବାଲେଶ୍ୱର ସହରର ରାସ୍ତାସବୁ ପିଚୁ ହୋଇନଥିଲା। ପଥର ଗେଟି ଉପରେ ନାଲିଗୁଡ଼ି ବିଛାଯାଇଥିଲା। ବାପା ମୋତେ ସପ୍ତମ ଶ୍ରେଣୀରେ ପଢ଼ିବା ପର୍ଯ୍ୟନ୍ତ ପିନ୍ଧିବା ପାଇଁ ଜୁତା କିଣିଦେଇ ନଥିଲେ। ତେଣୁ ସେହି ଗୋଡ଼ିରାସ୍ତାରେ ଚାଲିଚାଲି ମୋ ଗୋଡ଼ ଅନେକ ସମୟରେ କ୍ଷତାକ୍ତ ହୋଇଯାଇଥିଲା। ଖରାଦିନେ ଏହା ଥିଲା ଆହୁରି ବେଦନାଦାୟକ। ବାପା କିନ୍ତୁ କହୁଥିଲେ ଖାଲିପାଦରେ ଚାଲିଲେ ପାଦ ଶକ୍ତହେବ, ଦୃଷ୍ଟିଶକ୍ତି ବଢ଼ିବ ଆଉ ଜୁତା ପିନ୍ଧିଛ ବୋଲି ମନରେ ଅଯଥା ଗର୍ବବୋଧ ଆସିବ ନାହିଁ। ଆଜି ଏ କଥା କହିଲେ ଅନେକ ହୁଏତ ହସିବେ ଏବଂ ତାଙ୍କୁ ମରହଟ୍ଟା, ରକ୍ଷଣଶୀଳ ବା ପାଗଳ ବୋଲି ଅଭିହିତ କରିବେ, କିନ୍ତୁ ବହୁବର୍ଷପରେ ଜୀବନ ଅପରାହ୍ନରେ ପହଞ୍ଚି ମୁଁ ଆଜି ଅନୁଭବ କରୁଛି ବାପାଙ୍କର ସେହି ଉପଦେଶ ଥିଲା କେତେ ଯଥାର୍ଥ। ଏବେ ମୋ ପୁଅ, ପୁତୁରା, ନାତି, ସେମାନଙ୍କର ବୟସର ଅନ୍ୟମାନେ ଯେତେବେଳେ ଗୋଟାଏ କିଲୋମିଟର ଚାଲିଚାଲି ଗଲାବେଳକୁ କ୍ଳାନ୍ତ ହୋଇପଡୁଛନ୍ତି, ଏବଂ ଘରୁ ବାହାରିଲା ବେଳକୁ ସାଇକେଲ୍, ସ୍କୁଟର ବା ମୋଟର ସାଇକେଲ୍ ନହେଲେ ଯାଉନାହାନ୍ତି, ସେତେବେଳେ ଏଇ ସତୁରିବର୍ଷ ବୟସରେ ବି ମୁଁ ଏକାଦିକ୍ରମେ ୭/ ୮ କିଲୋମିଟର ବାଟ ଚାଲିଯାଇ ପାରୁଛି ଅନାୟାସରେ। ଏହା ମୋର ସେହି ଆଦର୍ଶବାଦୀ ଶିକ୍ଷକ-ପିତାଙ୍କର ଉପଦେଶର ଫଳ ବୋଲି ମୁଁ କହିପାରେ।

ସେ ସ୍କୁଲ୍‌ରେ କେବେ କୌଣସି ଛୁଆକୁ ମାଡ଼ ମାରିଥିବାର ମୁଁ ଜାଣିନାହିଁ। ଠିକ୍ ସମୟରେ ଶ୍ରେଣୀକୁ ଯାଇ ପଢ଼ାଉଥିଲେ ଏବଂ ଘଣ୍ଟା ବାଜିଲେ ଆସୁଥିଲେ। ଇଂରାଜୀ, ଅଙ୍କ, ସାହିତ୍ୟ, ସ୍ୱାସ୍ଥ୍ୟରକ୍ଷା ଓ ଇତିହାସ ଇତ୍ୟାଦି ସବୁ ବିଷୟରେ

ସେ ପିଲାଙ୍କୁ ପଢ଼ାଇ ପାରୁଥିଲେ ଅତି ସାବଲୀଳ ଭାବରେ। ପରୀକ୍ଷା ପୂର୍ବରୁ ସେ ପ୍ରଶ୍ନ ତିଆରି କରନ୍ତି ଏବଂ ଅନ୍ୟ ଶିକ୍ଷକମାନଙ୍କଠୁ ପ୍ରଶ୍ନପତ୍ର ଆଣି ପ୍ରେସରେ ଛପାଇବାର ବ୍ୟବସ୍ଥା କରନ୍ତି। କେବେହେଲେ କିନ୍ତୁ ସେ ମୋତେ କୌଣସି ପ୍ରଶ୍ନ ଦେଖାଇ ନାହାନ୍ତି, କି କହିଦେଇ ନାହାନ୍ତି। ମୁଁ ଅଙ୍କରେ ଦୁର୍ବଳ ଥିଲେ ବି ପରୀକ୍ଷାରେ ପାଶ୍ କରାଇଦେବା ପାଇଁ ପ୍ରଶ୍ନପତ୍ର ପୂର୍ବରୁ ଦେଇ ମୋତେ ପ୍ରସ୍ତୁତ କରାଇ ନାହାନ୍ତି। ମୁଁ ଅନେକ ସମୟରେ ଅଙ୍କରେ ହିଁ ଫେଲ୍ ହେଉଥିଲି। ଅନେକ ଶିକ୍ଷକ ବୃତ୍ତିଗତ ସାଧୁତା ଓ ନିଷ୍ଠାକୁ ଭୁଲି କି ଭଳି ଅପକର୍ମମାନ କରୁଛନ୍ତି ତାହାର ଖବର ସମ୍ବାଦପତ୍ରମାନଙ୍କ ପୃଷ୍ଠାରେ ପ୍ରାୟ ଦେଖିବାକୁ ମିଳୁଛି ଆଜିକାଲି। ସେ ଦୃଷ୍ଟିରୁ ମୋ ପିତା ଥିଲେ ନିଆରା ମଣିଷ, ଜଣେ ଆଦର୍ଶବାଦୀ ଶିକ୍ଷକ। ମୁଁ ଦେଖିଛି, ବାର୍ଷିକ ପରୀକ୍ଷାପରେ ଫେଲ୍ ହୋଇଯାଇଥିବା ଛାତ୍ରଙ୍କ ଅଭିଭାବକମାନଙ୍କ ମଧ୍ୟରୁ କେହି କେହି ଆମ ଘରକୁ ଆସି ବାପାଙ୍କୁ ନାନା ଭାବରେ ଅନୁରୋଧ କରିଛନ୍ତି, ଏପରିକି ଲାଞ୍ଚ ମଧ୍ୟ ଯାଚିଛନ୍ତି ତାଙ୍କ ପିଲାଙ୍କୁ ପାଶ୍ କରାଇଦେବା ପାଇଁ, କିନ୍ତୁ କେବେହେଲେ ବି ସେ ନୀତିଭ୍ରଷ୍ଟ ହୋଇ ନାହାନ୍ତି ସ୍ୱାର୍ଥ ବା ଅର୍ଥ ଲୋଭରେ। ସ୍ୱେଚ୍ଛାକୃତ ଦାରିଦ୍ର୍ୟ ବରଣ କରିଛନ୍ତି ଆନନ୍ଦରେ ଶେଷପର୍ଯ୍ୟନ୍ତ।

ଥରେ ବାପାଙ୍କର ଜଣେ ଦୂରସଂପର୍କୀୟ ବଂଧୁ କିଛି ଅର୍ଥ ଧାର ମାଗିବା ପାଇଁ ଆମଘରକୁ ଆସିଥିଲେ। ବାପାଙ୍କ ପାଖରେ ସେତେବେଳେ ଟଙ୍କା ନଥିବାରୁ ସେ ତାଙ୍କର ଆଉ ଜଣେ ବାଲ୍ୟବନ୍ଧୁଙ୍କ ଠାରୁ ତାଙ୍କୁ ଧାର୍ କରାଇଦେଇଥିଲେ। କିନ୍ତୁ ଦୀର୍ଘଦିନଧରି ସେହି ଶଠବଂଧୁ ଜଣକ ଧାର୍‌ଟଙ୍କା ନ ଶୁଝିବାରୁ ବାପା ସତ୍ୟରକ୍ଷାକରି ସେହି ଟଙ୍କା ବାଲ୍ୟବଂଧୁ ଜଣକୁ ଶୁଝିଥିଲେ ଜମିରୁ ଉତ୍ପନ୍ନ ବର୍ଷକର ଧାନ ବିକ୍ରିକରି। ସେ ବର୍ଷ ବହୁ କଷ୍ଟରେ ଆମକୁ ଚଳିବାକୁ ପଡ଼ିଥିଲା।

ବାପା ଥିଲେ ଜଣେ ଆଚରଣସିଦ୍ଧ ଶିକ୍ଷକ, ଯାହାଙ୍କର ସମଗ୍ର ଜୀବନ ସତେ ଯେପରି କେବଳ ଶିକ୍ଷାଦାନ ପାଇଁ ହିଁ ଉଦ୍ଦିଷ୍ଟ ଥିଲା। ମୁଁ ସାନ ଥିଲାବେଳେ ଯେତେବେଳେ ଯେଉଁଠିକି ତାଙ୍କ ସାଙ୍ଗରେ ଯାଉଥିଲି, ସେ ବାଟଯାକ ନାନା ଶିକ୍ଷଣୀୟ କଥା କହି କହି ଚାଲୁଥିଲେ। ସକାଳୁ ଉଠିବାଠାରୁ ରାତିରେ ଶୋଇବା ପର୍ଯ୍ୟନ୍ତ ତାଙ୍କର ଏ ଧାରା ଅବ୍ୟାହତ ରହୁଥିଲେ। ଏହାର ଗୋଟିଏ ମାତ୍ର ନମୁନା ମୁଁ ଏଠାରେ ଉଲ୍ଲେଖ କରୁଛି, ଯାହା ମୋ ସ୍ମୃତିରେ ଆଜି ପର୍ଯ୍ୟନ୍ତ ଜୀବନ୍ତ ହୋଇ ରହିଛି। ଥରେ ମୁଁ ତାଙ୍କ ସହ ଉପରଓଳି ବୁଲିଯାଉଥିଲି। ବର୍ଷାଦିନ, ଦୂରରୁ ନୀଳ

ପାହାଡ଼ ସବୁ ଦେଖାଯାଉଥିଲେ। ଗାଁ ପାଖ ବାଡ଼ ଦେହରେ ନୀଳବର୍ଣ୍ଣର 'ଅପରାଜିତା' ଫୁଲ୍ ଫୁଟି ଅପରୂପ ଶୋଭାରେ ମୁଗ୍ଧ କରୁଥିଲା ପଥଚାରୀମାନଙ୍କୁ। ବାପା ମୋତେ ଦୂରର ସେହି ନୀଳପାହାଡ଼ ଓ ବାଡ଼ରେ ଫୁଟିଥିବା ନୀଳ 'ଅପରାଜିତା' ଫୁଲକୁ ଦେଖାଇ କବିବର ରାଧାନାଥ ରାୟଙ୍କ ରଚନାରୁ ଗୋଟିଏ ପଦ ଆବୃତ୍ତି କରି ଶୁଣାଇଲେ -

"ଅପରାଜିତାର ନୀଳିମା-ତସ୍କର
ଦୂରେ ଗିରିରାଜି ଶୋଭେ ମନୋହର।"

ତା'ପରେ ସେହି ପଦଟିର ଅର୍ଥ ବୁଝାଇ ଦେଇ କହିଲେ- "ଦୂରରେ ଯେଉଁ ପାହାଡ଼ଗୁଡ଼ିକ ଏତେ ସୁନ୍ଦର ଦେଖାଯାଉଛନ୍ତି, ସେମାନେ ଏହି 'ଅପରାଜିତା' ଫୁଲଗୁଡ଼ିକର ନୀଳିମାକୁ ଯେପରି ଚୋରି କରିନେଇଛନ୍ତି। ଦେଖିଲୁ, କବିଙ୍କର କଳ୍ପନାଶକ୍ତି କେଡ଼େ ଚମତ୍କାର, କେତେ ହୃଦୟଗ୍ରାହୀ !"

ସେହି ସାନବେଳେ ଏମିତି ନାନା କବିଙ୍କର ଉପାଦେୟ ପଦାବଳୀମାନ ବାପାଙ୍କ ପାଖରୁ ଶୁଣିଶୁଣି ମୋ ଭିତରେ ମଧ୍ୟ କବିତାର ମଧୁ-କଲ୍ଲୋଳ ଖେଳି ଯାଉଥିଲା, ଯାହା ପରବର୍ତ୍ତୀ ଜୀବନରେ ମୋତେ କବିହେବାର ଗୌରବ ଆଣି ଦେଇଛି। ମୁଁ ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିପାରେ। ଜଣେ ଆଦର୍ଶ ଶିକ୍ଷକଙ୍କ ପକ୍ଷରେ ଏଭଳି ନିରନ୍ତର ଶିକ୍ଷାଦାନ ହିଁ ସମ୍ଭବ।

ବାପା ନିଜେ ଖୁବ୍ ସରଳ ଜୀବନଯାପନ କରୁଥିଲେ ଏବଂ ତାଙ୍କ ଛାତ୍ରମାନଙ୍କୁ ମଧ୍ୟ ସେଭଳି ଜୀବନଯାପନ କରିବାକୁ ଉପଦେଶ ଦେଉଥିଲେ। ପୋଷାକୀ ସଭ୍ୟତାର ସେ ଥିଲେ ଘୋର ବିରୋଧୀ। ପୋଷାକ ବା ଡ୍ରେସ୍ କେବେହେଲେ ପ୍ରକୃତ ବ୍ୟକ୍ତିତ୍ୱର ପରିଚାୟକ ନୁହେଁ, ବରଂ ନିଜର ଅନ୍ତର୍ନିହିତ ଗୁଣର ବିକାଶ ଦ୍ୱାରା ହିଁ ପ୍ରକୃତ ବ୍ୟକ୍ତିତ୍ୱର ପରିଚୟ ମିଳେ ବୋଲି ସେ ସବୁବେଳେ କହୁଥିଲେ। ପିଲାଟି ଦିନୁ ମୋତେ ମଧ୍ୟ ସେହି ଆଦର୍ଶରେ ସେ ଅନୁପ୍ରାଣିତ କରିଛନ୍ତି। ସେଥିପାଇଁ ଆଜି ପର୍ଯ୍ୟନ୍ତ ମୁଁ ପୋଷାକ ସଚେତନ ହୋଇ ପାରିଲି ନାହିଁ। ପୋଷାକ ବଦଳରେ ବିଦ୍ୟା ଓ ଜ୍ଞାନକୁ ସେ ଅଧିକ ପ୍ରାଧାନ୍ୟ ଓ ଉଚ୍ଚସ୍ଥାନ ଦେଉଥିଲେ।

୧୯୫୩ ମସିହାରେ ସେ ଛୋଟ ବହିଟିଏ ଲେଖି ପ୍ରକାଶ କରିଥିଲେ, ଯାହାର ନାମ 'ସୂକ୍ତି-ଶତକ ବା ମୁକ୍ତି-ଶତକ'। କଟକର 'ପ୍ରଜାତନ୍ତ୍ର ପ୍ରେସ୍'ରୁ ତାହା ପ୍ରକାଶ ପାଇଥିଲା। ଏ ବହିର ମୁଖବନ୍ଧରେ ସେ ଲେଖିଥିଲେ - "ଲେଖକ

ବା କବିଯଶଲିପ୍ସା ଏହି ପୁସ୍ତିକା ଲେଖିବାକୁ ମୋତେ ପ୍ରଣୋଦିତ କରିନାହିଁ। ମାଳାକାର ଯେପରି ଉଦ୍ୟାନ ବା ଅରଣ୍ୟାନିରୁ ପୁଷ୍ପ ସଂଗ୍ରହ କରି ତା'ର ମାଳାଟିକୁ ସର୍ବଜନାଦୃତ କରିବାକୁ ପ୍ରୟାସ କରେ, ମୁଁ ମଧ୍ୟ ସେହିପରି ତ୍ରିକାଳଦର୍ଶୀ ସାଧୁ, ମହାତ୍ମାମାନଙ୍କର ବାଣୀ, ଆଦର୍ଶ ଓ ନୀତିବାକ୍ୟ ଓ ମୋର ଦୀର୍ଘ ଜୀବନର ଅନୁଭୂତି ସମୂହକୁ ମୂଳ ଉପାଦାନ ରୂପେ ପଦ୍ୟରେ ନିବଦ୍ଧ କରି ଯୁବବଂଧୁ ଛାତ୍ରମାନଙ୍କର ମନୋରଞ୍ଜନ କରିବାକୁ ଇଚ୍ଛୁକ। ମୋର ଏଥିରେ ନିଜସ୍ୱ ବା ମୌଳିକତା ବିଶେଷ କିଛି ନାହିଁ କହିଲେ ଚଳେ। ମୁଁ ଜଣେ ମାଳାକାର ମାତ୍ର। ଏହି ପୁସ୍ତିକାରେ ଥିବା (୧) ଧର୍ମନୀତି (୨) ସଂସାର ନୀତି (୩) ରାଷ୍ଟ୍ରନୀତି (୪) ସ୍ୱାସ୍ଥ୍ୟନୀତି ମଧ୍ୟରୁ ଯଦ୍ୟପି କୌଣସି ନୀତିରେ କେହି କିଛି ଉପକୃତହୁଏ, ତାହାହେଲେ ମୁଁ ନିଜକୁ ଧନ୍ୟ ମନେ କରିବି।" ଏଥିରୁ ଜଣେ ଆଦର୍ଶ ଶିକ୍ଷକ ଭାବରେ ତାଙ୍କର ଜୀବନାଭିମୁଖ୍ୟ ସ୍ପଷ୍ଟ ଜାଣିହେବ। ନିଜ ଜୀବନରେ ଅନୁଭୂତ ନୀତି, ଆଦର୍ଶ, ସତ୍ୟ ଓ ଜ୍ଞାନକୁ ନିଜଭିତରେ ସୀମିତ ନ ରଖି ଅନ୍ୟମାନଙ୍କୁ ବିତରଣ କରିବା ପାଇଁ ସେ ଏହି କ୍ଷୁଦ୍ର ପୁସ୍ତକଟି ରଚନା କରିଥିଲେ। ଆଜକୁ ୫୨ ବର୍ଷ ତଳେ ସେ ବହିଟିର ମୂଲ୍ୟ ଥିଲା ମାତ୍ର ଚାରିଅଣା ବା ଆଜିର ୨୫ ପଇସା, କିନ୍ତୁ ମୂଲ୍ୟବୋଧ ଦୃଷ୍ଟିରୁ ଏହା ଥିଲା ଅନେକ ମୂଲ୍ୟବାନ୍। ତହିଁରୁ ୨/୩ଟି ପଦ ଉଦ୍ଧାର କଲେ ଏହା ସ୍ପଷ୍ଟ ହେବ -

୧) ସାଧୁ ବ୍ୟକ୍ତି ନିଜେ ସହି ବହୁ ଦୁଃଖ କ୍ଲେଶ,
ଦୂରକରେ ଆଶ୍ରିତର ସନ୍ତାପ ବିଶେଷ।
ବୃକ୍ଷ ସ୍ୱୀୟ ମସ୍ତକରେ ଭୀଷଣ ଉତ୍ତାପ
ସହ୍ୟ କରି ଦୂରକରେ ପଥିକ ସନ୍ତାପ।

୨) ନିଜ ପରିଶ୍ରମ ଲବ୍ଧ ଶାକ-ଅନ୍ନ ଶ୍ରେୟ
ଅନ୍ୟ ଦତ୍ତ ଘୃତ-ଅନ୍ନ ଭାବ ନାହିଁ ପ୍ରେୟ।
ଭାବନାହିଁ ଲେଶମାତ୍ର - 'କଠିନ ଏ କର୍ମ'
ଚେଷ୍ଟାଯୋଗେ ସର୍ବକାର୍ଯ୍ୟ ହୁଅଇ ସୁଗମ।

୩) ସ୍ୱାର୍ଥରଙ୍କ ହୋଇ କିମ୍ପା ଭ୍ରମ ଏ ସଂସାରେ
ଉଦର ପୋଷଣ କାକ କରିକି ନପାରେ ?
ଦେଶ-ଦଶ ପାଇଁ ସ୍ୱାର୍ଥବଳି ନାହିଁ ଯା'ର
ମନୁଷ୍ୟ ସମାଜେ ତା'ର କେଉଁ ଅଧିକାର !!

ମୋତେ ପିଲାଟି ଦିନରୁ ସେ ଗୋଟିଏ ଅତ୍ୟନ୍ତ ଉପାଦେୟ ସଂସ୍କୃତ ଶ୍ଳୋକ ଶିଖାଇଥିଲେ, ଯାହାର ପ୍ରକୃତ ଅର୍ଥ ମୁଁ ବହୁଦିନ ପରେ ବୁଝିଲି ଏବଂ ତାହାକୁ ଜୀବନାଦର୍ଶ କରି ଏ ପର୍ଯ୍ୟନ୍ତ ଚାଲିଛି। ସେହି ଶ୍ଳୋକଟି ହେଲା-

"ଅକୃତ୍ୱା ପର ସନ୍ତାପମ୍
ଅଗତ୍ୱା ଖଳ ମନ୍ଦିରମ୍
ଅକ୍ଳେଶୟିତ୍ୱା ଚ ଆତ୍ମନମ
ଯଦଲ୍ପମପିତତ୍ ବହୁ ॥"

ଏହାର ପ୍ରକୃତ ଅର୍ଥ ହେଲା - "ଅନ୍ୟର କୌଣସି କ୍ଷତି ସାଧନ ନ କରି ବା କାହାରି ମନରେ ଦୁଃଖ ନଦେଇ, କୌଣସି ଦୁର୍ଜନର ଶରଣାପନ୍ନ ନହୋଇ, ଏବଂ ନିଜ ଆତ୍ମାକୁ କଷ୍ଟ ନଦେଇ ଯେତେ ଅଳ୍ପ ଆୟ କଲେ ମଧ୍ୟ ତାହାକୁ ବହୁତ ମନେ କରି ସନ୍ତୁଷ୍ଟ ରହିବ।" ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସେ ଏହି ଜୀବନାଦର୍ଶରେ ବିଶ୍ୱାସୀ ଥିଲେ। ଆଜିର ଭୋଗବାଦୀ ଓ ଉପଭୋକ୍ତାବାଦୀ ସ୍ୱାର୍ଥକୈନ୍ଦ୍ରିକ ସମାଜରେ ସେଭଳି ନିଷ୍ଠାପର, ନୀତିବାନ୍ ଓ ଆଦର୍ଶ ଶିକ୍ଷକଙ୍କ ସଂଖ୍ୟା ଅନେକ କମିଆସିଲାଣି, ତଥାପି ଏଭଳି ଶିକ୍ଷକ ଚିରକାଳ ଛାତ୍ରମାନଙ୍କ ଆଗରେ ଉଜ୍ଜ୍ୱଳ ଦୀପସ୍ତମ୍ଭ ହୋଇ ରହିବେ ଏଥିରେ ସନ୍ଦେହ ନାହିଁ। ମୁଁ ସେହିଭଳି ଜଣେ ସ୍ୱାଭିମାନୀ, ନୀତିନିଷ୍ଠ ଆଦର୍ଶ ଶିକ୍ଷକଙ୍କ ପୁତ୍ର ହୋଇ ପାରିଥିବାରୁ ନିଜକୁ ଭାଗ୍ୟବାନ୍ ଓ ଗୌରବାନ୍ୱିତ ମନେ କରୁଛି।



# ଲରମ୍ଭାର ହେଡ୍‌ମାଷ୍ଟ୍ରେ-ସେନଗୁପ୍ତ ଆଜ୍ଞା

*ଶରତ୍ ଚନ୍ଦ୍ର ପୂଜାରୀ*

ଦେଖୁ ଦେଖୁ ଛଅଟା ଯୁଗ ଚାଲିଗଲା । ନୂଆ ପୁରୁଣା ହେଲା । ପୁରୁଣା ଲୋକେ କହନ୍ତି ଆଗ କାଳର କଥା ଆଉ ନାହିଁ । ସବୁ କ'ଣ ସତରେ ଏମିତି ବଦଳିଯାଏ ।

୧୯୪୫ ମସିହାରେ ପଲାସ, ଲିମ୍ବ, ଚାର, ଗମ୍ଭାରି, କଅ, ଆମ୍ବ, ତାଳ, ଖଜୁରୀ, ଶିମୁଳି, ମହୁଲ, କେନ୍ଦୁ ଆଦି ଗଛର ପଚିଶ ତିରିଶ ଏକରର 'ପତରା'କୁ ଲାଗି ନିର୍ଜନ ଖୋଲା ପଡ଼ିଆଟିଏ । ତା' ଭିତରେ ପତର ଫାଙ୍କରେ ଖପର ଛାତର ଲମ୍ବା ଚଉଡ଼ା ବିରାଟ ଘରଟା ବହୁତ ଦୂରରୁ ଦେଖାଯାଏ । ବାଟଚଲା ବାଟୋଇ କହନ୍ତି "ଲରମ୍ଭା ସ୍କୁଲ୍" । ଗୋଡ଼ଭଗା-ତୁରୁମ ପୂର୍ତ୍ତବିଭାଗ ନାଲି ମୁରୁମ୍ ରାସ୍ତାରେ ସାତ ମାଇଲ୍‌ର "ମାଇଲ୍ ଖୁଣ୍ଟ" ପାଖରେ ସରୁ ଶଗଡ଼ ଗୁଳାର ଗ୍ରାମ୍ୟ ରାସ୍ତାଟିଏ ପୂର୍ବରୁ ପଶ୍ଚିମକୁ ସେଇ ସ୍କୁଲ୍ ଆଗ ଦେଇ ପଡ଼ିଆକୁ ଦୁଇ ଭାଗରେ ବିଭକ୍ତ କରି ଆଗକୁ ବଢ଼ିଯାଇଛି । ସ୍କୁଲ୍ ଅଳ୍ପ ଦୂରରେ କେଉଁଟେନ୍‌ପାଲି ବା ଅମସ୍ତଲା ଗାଁ । ତା' ଆଗକୁ ଗଲେ ଲରମ୍ଭା ଗାଁ । ରାସ୍ତାଟା ଲରମ୍ଭା ଗାଁରେ ଶେଷ ହୋଇଛି । ଲରମ୍ଭାରେ ପୁଣି ତଳିପଡ଼ା ଓ ଉପର ପଡ଼ା । ଉପର ପଡ଼ାରେ ପ୍ରାୟ ବ୍ରାହ୍ମଣମାନଙ୍କର ଘର । ତଳ ପଡ଼ାରେ ପ୍ରାୟ ସବୁ ଜାତିର ଲୋକେ ରହନ୍ତି । ପରସ୍ପର ଭିତରେ ନିର୍ଭର କରି ଚଳନ୍ତି । କିଛି ଦୂରରେ ବାର ପାହାଡ଼ରୁ ବୋହି ଆସିଥିବା ଝାଏଁ ଯୋର (ଛୋଟ ନଦୀ) । ଉତ୍ତରରୁ 'ଅଏନକା ନଲିଆ" ଗୋଟିଏ ଛୋଟ ପାଣି ଧାର ଝାଏଁ ଯୋରରେ ପଡ଼ିଛି ଅମସ୍ତଲା ଗାଁ ପାଖରେ ।

ସ୍କୁଲ୍ ସାମନା ରାସ୍ତାରେ ଚାଲିଗଲା ବେଳେ ଡାହାଣରେ-ସ୍କୁଲ୍ ଓ ଛାତ୍ରାବାସ ଘର ବିରାଟ ଜଣାପଡ଼େ । ପୂର୍ବକୁ ହେଡ୍‌ମାଷ୍ଟଙ୍କ ଘର ଓ ଛାତ୍ରାବାସର ତତ୍ତ୍ୱାବଧାରକଙ୍କ ଘର । ପଶ୍ଚିମରେ ଲରମ୍ଭା ଗାଁର ଘରୋଇ ଡାକ୍ତରଖାନାର ଏଲ୍.ଏମ୍.ପି. ଡାକ୍ତର ତଥା ସ୍କୁଲ୍‌ର ହାଇଜିନ୍ / ଫିଇଜାଲୋଜି ମାଷ୍ଟ୍ରେଙ୍କ ଘର । ତା' ପାଖରେ ବିଜ୍ଞାନ ଶିକ୍ଷକଙ୍କ ଘର । ଛାତ୍ରାବାସ ଭିତରେ ଚାରି କଣରେ ଆଉ ଦୁଇଚାରିଜଣ ଶିକ୍ଷକଙ୍କ ରହିବା କୋଠରୀ । ସେମାନେ ଗଣିତ, ସାହିତ୍ୟ,

ସଂସ୍କୃତ, ଇତିହାସ, ଭୂଗୋଳ ପଢ଼ାନ୍ତି । ପିଲାଙ୍କ ପାଇଁ ୨୪ ଘଣ୍ଟା ସବୁ ବିଷୟରେ ଶିକ୍ଷକମାନେ ମହଜୁଦ୍ ହୋଇ ରହିଛନ୍ତି । ପିଲାମାନେ ସମସ୍ତଙ୍କୁ 'ମାଷ୍ଟ୍ରେ' ବୋଲି ଡାକନ୍ତି । ହେଡ୍‌ମାଷ୍ଟ୍ରେଙ୍କ ଛଡ଼ା, ଆଉ ଜଣେ ହେଲେ ଦୁଇଟି ବିଷୟରେ ଏମ୍.ଏ. ପାସ୍ କରିଥିବା ହଷ୍ଟେଲ୍ ତତ୍ତ୍ୱାବଧାରକ । ଛ' ଫୁଟରୁ ବେଶୀ ଉଚ୍ଚ, ବିରାଟ ବଡ଼ ନାକ ଓ କାନ ଥିବା ଚକ୍ରବର୍ତ୍ତୀ ମାଷ୍ଟ୍ରେ । ଇଂରାଜୀ, ଗଣିତ, ଏଲ୍‌ଜେବ୍ରା, ତ୍ରିଗନୋମେଟ୍ରି ଓ ସଂସ୍କୃତ ମଧ୍ୟ ପଢ଼େଇ ପାରନ୍ତି । ତାଙ୍କୁ ପ୍ରାୟ ସବୁ ଛାତ୍ର ଭୟ କରନ୍ତି । ଯଦିଓ ସେ କାହାକୁ ସେମିତି ଗାଳି ଦିଅନ୍ତି ନାହିଁ । ପାଠ ନଆସିଲେ ତାଙ୍କ ବାର ଇଞ୍ଚିଆ ହାତ ପାପୁଲିର ପିଠିରେ ଗୋଟିଏ ଖୋଲା ଜାବୁଡ଼ା ହିଁ ଯଥେଷ୍ଟ । ଡାକ୍ତର ମାଷ୍ଟ୍ରେ ଫିଜୋଲୋଜି/ ହାଇଜିନ୍ କ୍ଲାସ୍ ନେବା ଅପେକ୍ଷା ଡାକ୍ତରୀ କରିବାରେ ପ୍ରାୟ ସବୁବେଳେ ବ୍ୟସ୍ତ ଥାଆନ୍ତି । ସେପଟେ ଆଉ ଜଣେ ମେଳାପି ଶିକ୍ଷକ ହେଲେ ବିଜ୍ଞାନ ଶିକ୍ଷକ ସରକାର ମାଷ୍ଟ୍ରେ । ଏ ଚାରିଜଣଯାକ ଶିକ୍ଷକ ସମସ୍ତେ ବଙ୍ଗବାସୀ, କିନ୍ତୁ ସପରିବାର ସ୍କୁଲ୍ ଯୋଗେଇଥିବା ମାଟିଘର, ଖପର ଛାତ, ବାଡ଼ିବଗିଚ଼ା କରିବା ସୁବିଧା ଥିବା ଘରେ ସ୍ୱଚ୍ଛନ୍ଦରେ ରହୁଥିଲେ । ଛାତ୍ରାବାସର ଉପର ବ୍ଲକ୍‌ରେ ପ୍ରାୟ ଦଶଟି କୋଠରୀ ଓ ତଳ ବ୍ଲକ୍‌ରେ ପ୍ରାୟ ଅଢ଼େଇଶହରୁ ତିନିଶହ ଛାତ୍ର ରହିବାର ବନ୍ଦୋବସ୍ତ ଥାଏ । ସ୍କୁଲ୍ ହତା ସାମନାରେ ଛ' ଫୁଟିଆ ଲଟା କାଛର ପାଚେରୀ । ମଝିରେ କାଠ ଓ ଲୁହା ରେଲିଂ ଦିଆ ଗେଟ୍ । ଗେଟ୍‌ରୁ ଶ୍ରେଣୀଗୃହକୁ ଯିବା ରାସ୍ତା । ଦୁଇ ପାଖରେ ଦୁଇଟି ଚାରିକୋଣିଆ ଫୁଲ ବଗିଚ଼ା । ସେ ବଗିଚ଼ାର ଚାରିକଡ଼ରେ କନିଅର, ଟଗର, କୁଇ, ଯାଇ, ମଲ୍ଲୀ ପରି ବାରମାସିଆ ଗଛ । ଶୀତ ଦିନରେ ଗେଣ୍ଡୁଗଛ ଲାଗିଯାଏ । ଫୁଲ ଅଭାବ ନଥାଏ । ସ୍କୁଲ୍ ପରିବେଶରେ ଫୁଲର ବାସ୍ନା ମହକୁଥାଏ । ଏ ଗୃହର ମିସ୍ତ୍ରୀ, ମେସନ୍, ବଢ଼େଇ, କମାର, କୁମ୍ଭାର, ମାଟି ଓ ଚୂନ ଧଉଳା ଲୋକେ ସେଇ ଗାଁର ବାସିନ୍ଦା । ଏ ଗୃହର ଡାଞ୍ଚା ଥିଲା ସହରାଞ୍ଚଳ ପରି, ଯାହାକୁ ଅନେକ କଳ୍ପନା କରିପାରୁନଥିଲେ । ଏ ସବୁ ପଛରେ ଥିଲା ଲରମ୍ବା ନିବାସୀ କେବଳ ଜଣଙ୍କର ଐକାନ୍ତିକ ଉତ୍ସାହ ଓ ଉଦ୍ୟମ । ଅଫୁରନ୍ତ କଳ୍ପନା ଓ ଦୂରଦୃଷ୍ଟି ଥିଲା ତାଙ୍କର । ସେ ଥିଲେ - କୃଷିବିତ୍, ଶିକ୍ଷାବିତ୍, କବି, ଶିଳ୍ପୀ ଓ କୃଷ୍ଣ ଭକ୍ତ ବ୍ରଜମୋହନ ପଣ୍ଡା । ଅଠର ଖଣ୍ଡ ଗାଁରେ ତାଙ୍କର ଚାଷ ଜମି ଥିଲା । କଲିକତା ପ୍ରେସିଡ଼େନ୍‌ସି କଲେଜରୁ ବିଏ. ଏଲ୍.ଏଲ୍‌ବି ଡିଗ୍ରୀଧାରୀ ; ସମ୍ବଲପୁର ଅଞ୍ଚଳରୁ ବିହାର ଓଡ଼ିଶା ଆସେମ୍ବ୍‌ଲିକୁ ନିର୍ବାଚ଼ିତ ପ୍ରଥମ ଏମ୍.ଏଲ୍. ସି । ସେ ଥିଲେ ଯୁଗଜନ୍ମା ।

ବେସରକାରୀ ସ୍ତରରେ ନିଜ ହାତ ପାଣ୍ଠିରୁ ୧୯୦୨ ମସିହାରେ ପ୍ରାଥମିକ ସ୍କୁଲ୍ ପ୍ରତିଷ୍ଠା ଠାରୁ ପରେ ଏମ୍.ଭି. ସ୍କୁଲ୍, ଏମ୍.ଇ. ସ୍କୁଲ୍ ଓ ପରେ ୧୯୩୯ ମସିହାରେ ଆବାସିକ ହାଇସ୍କୁଲ୍‌ଟି ତାଙ୍କରି ଉଦ୍ୟମ, କଳ୍ପନା ଓ ପ୍ରେରଣା ବଳରେ ପ୍ରତି ଷ୍ଠିତ ହୋଇଥିଲା ଲରମ୍ବା ପରି ଏକ ଛୋଟ ଗ୍ରାମରେ। ସେ ଥିଲେ ଏ ସମସ୍ତ ଶିକ୍ଷାନୁଷ୍ଠାନର ପରିଚାଳକ। ଷାଠିଏ ବର୍ଷ ତଳର କଥା। ସେହି ସମୟରୁ ସେ କଳ୍ପନା କରିଥିଲେ ଲରମ୍ବାରେ ଏକ କୃଷିଭିତ୍ତିକ ବିଜ୍ଞାନ କଲେଜ ପ୍ରତିଷ୍ଠା କରିବେ। ଲୋକେ ତାଙ୍କ କଥା ଶୁଣି ହସୁଥିଲେ। ତାଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ, ସେହିପରି ନିଷ୍ଠାପର କେତେଜଣ ଶିକ୍ଷକ ତାଙ୍କୁ ପଶ୍ଚିମ ଓଡ଼ିଶାରେ ମିଳିନଥିଲେ। ତେଣୁ କଲିକତାର ହୋଟେଲ୍‌ରେ ରହି ଇଂରାଜୀ ଖବର କାଗଜରେ ବିଜ୍ଞାପନ ଦେଇ ସେ ବାଛି ନେଇଥିଲେ ନିଃସ୍ୱାର୍ଥପର, ସାହସୀ, ଆଦର୍ଶବାଦୀ, ଚରିତ୍ରବାନ କେତେଜଣ ଶିକ୍ଷକଙ୍କୁ। ସେମାନେ ହେଲେ ସେନ୍‌ଗୁପ୍ତ ମାଷ୍ଟ୍ରେ, ଚକ୍ରବର୍ତ୍ତୀ ମାଷ୍ଟ୍ରେ, ସରକାର ମାଷ୍ଟ୍ରେ ଓ ଡାକ୍ତର ମାଷ୍ଟ୍ରେ।

ଏ ବିଦ୍ୟାଳୟର ପ୍ରଥମ ମନୋନିତ ସ୍ୱୟଂ ସଂପୂର୍ଣ୍ଣ ହେଡ୍‌ମାଷ୍ଟ୍ରେ ହେଉଛନ୍ତି ଶ୍ରୀ ଖଗେନ୍ଦ୍ର ନାଥ ସେନ୍‌ଗୁପ୍ତ। ସୁଦୂର ଢାକା ବାସୀ। ଇତିହାସର କ୍ରୁର ଚକ୍ରରେ ଭିଟାମାଟିରୁ ବିସ୍ଥାପିତ ହୋଇ ଦ୍ୱିତୀୟ ମହାସମର ବେଳକୁ କଲିକତା ଡାଇମଣ୍ଡ୍ ହାର୍ବର ପାଖ ମାଟିଆବୁରୁଜ ହାଇସ୍କୁଲ୍‌ର ଶିକ୍ଷକ। ହଠାତ୍ ଜାପାନୀ ବୋମାମାଡ଼ ଭୟରେ ଏ ହାଇସ୍କୁଲ୍‌ଟି ବନ୍ଦ କରିଦିଆଗଲା। ସେନ୍‌ଗୁପ୍ତ ବାବୁ ଚାକିରି ସନ୍ଧାନରେ କଲିକତାରେ ରହିଗଲେ। ବ୍ରଜମୋହନ ବାବୁ ଖବରକାଗଜ ବିଜ୍ଞାପନ ଜରିଆରେ କଥୋପକଥନ କରି ତାଙ୍କୁ ନିମନ୍ତ୍ରଣ କରି ଆଣିଥିଲେ ଲରମ୍ବା ଗାଁକୁ। ସାଧାରଣ ମୋଟା ମିଲ୍ କନା ବା ଖଦଡ଼ କନାର ଧୋତି ଓ ପଞ୍ଜାବିଟିଏ ଗଳେଇ ଦେଇ ସେ ସବୁଠିକୁ ପାଦରେ ଚାଲି ଯାଉଥିଲେ। କେତେବେଳେ କେମିତି ଗାଁର ମୋଚି ତିଆରି କରିଥିବା ଚପଲ ପିନ୍ଧି ବା କେତେବେଳେ ଖାଲି ପାଦରେ। ଲରମ୍ବାରେ ସପରିବାର ପହଞ୍ଚିବା ସାଂଗେ ସାଂଗେ ଆରମ୍ଭ ହେଲା ଓଡ଼ିଆ ଭାଷା ଓ ସାହିତ୍ୟ ଶିକ୍ଷା। ଓଡ଼ିଆ ସଂସ୍କୃତିର ଶିକ୍ଷା।

ସେନ୍‌ଗୁପ୍ତ ଆଜ୍ଞା ଥିଲେ ପାଞ୍ଚଫୁଟ ସାତ ଇଞ୍ଚ ଉଚ୍ଚତାର ଦୁର୍ବଳ ଲୋକଟିଏ। କିନ୍ତୁ ଅସାଧାରଣ ମାନସିକ ଶକ୍ତି ଓ ସାହସ ଥିଲା ତାଙ୍କର ସେ କ୍ଷୀଣ ଶରୀରରେ। ମୁଣ୍ଡରେ ପ୍ରାୟ ଫୁରୁ ଫୁରୁ ଉଡୁଥିବା ବାଳ ଭଣ୍ଡାରୀର ଖୁର ଦୁଇ ତିନି ମାସରେ ଥରେ ଭେଟୁଥିଲା। କିନ୍ତୁ ସବୁଦିନ ସକାଳେ ସୋରିଷ ତେଲ କାନ ଓ

ନାକରେ ପକେଇ, ମୁଣ୍ଡରେ ଘସି, ନାକ ଓ କାନକୁ ହାତରେ ଟାଙ୍ଗି ପୋଖରୀ ପାଣିରେ ଦଶବାର ଥର ବୁଡ଼କି ମାରି ଗାଧୋଉଥିଲେ। ଦେହ ମୁଣ୍ଡ ପାଦ ଗାମୁଛାରେ ଘସି ସଫା କରିବା ଥିଲା ତାଙ୍କର ଦୁଇ ଓଳିର ମୁଖ୍ୟ କାର୍ଯ୍ୟ। ବେଳେବେଳେ ଅନେକ ସମୟଯାଏଁ ତାଙ୍କ ମୁଣ୍ଡରୁ ପାଣି ଶୁଖୁ ନଥିଲା।

ସେ ଥିଲେ ଅର୍ଥନୀତିର ଏମ୍.ଏ. ଓ ବି.ଟି. ଡିଗ୍ରୀଧାରୀ। କିନ୍ତୁ ଇଂରାଜୀ, ଇତିହାସ, ଗଣିତ ପଢ଼େଇବାରେ ଯଥେଷ୍ଟ ଦକ୍ଷତା ଥିଲା ତାଙ୍କର। ସରଳ, ନିଷ୍କପଟ, ସମୟ ସଚ୍ଚେତନ, ନ୍ୟାୟୀ, ସ୍ପଷ୍ଟବାଦୀ ଓ ନିର୍ଭୀକ ଥିଲେ ସେ। ଅନ୍ତରରେ ଗାନ୍ଧିବାଦର ବିଶ୍ୱାସୀ କିନ୍ତୁ ରାଜନୀତିଠାରୁ ବହୁ ଦୂରରେ ଥିଲେ ସେ। କାହାକୁ 'ତୁ' ସମ୍ବୋଧନ କରିବା ସେ ଶିଖିନଥିଲେ। ଆମର ଦଶମ ଓ ଏକାଦଶ ଶ୍ରେଣୀ ସମୟରେ ସେ ବେଳେବେଳେ ଓଡ଼ିଆ ସାହିତ୍ୟ ପଢ଼ାଇବାକୁ କ୍ଲାସ୍‌କୁ ଆସୁଥିଲେ। ଉଚ୍ଚାରଣରେ ତ୍ରୁଟି ଥିବା ସତ୍ତ୍ୱେ ସାହିତ୍ୟିକ ମୂଲ୍ୟାୟନରେ ତାଙ୍କର କିଞ୍ଚିତ୍ ମାତ୍ରାରେ ତ୍ରୁଟି ନଥିଲା। ସେଥିପାଇଁ ଆମେ ତାଙ୍କର ଛାତ୍ରମାନେ ଅଜାଣତରେ ବଙ୍ଗଳା ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଯାଉଥିଲୁ।

ଲରମ୍ବା ଅଞ୍ଚଳରେ ଲୋକେ ତାଙ୍କ ନାଁ ଉଚ୍ଚାରଣ କରିବା ପରିବର୍ତ୍ତେ "ହେଡ୍‌ମାଷ୍ଟ୍ରେ" ନାଁଟି ଦେଇଥିଲେ ମୂଳରୁ। ଖୁବ୍ କମ୍ ଶିକ୍ଷିତ ଲୋକେ ତାଙ୍କୁ "ଖଗେନ୍ ବାବୁ" ବା "ସେନ୍‌ଗୁପ୍ତ ବାବୁ" ଓ "ସେନ୍‌ଗୁପ୍ତ ଆଜ୍ଞା" ବୋଲି କହୁଥିଲେ। ତାଙ୍କ ଲରମ୍ବା ରହଣିର ସାତ ଆଠ ବର୍ଷ ପରେ ସମ୍ବଲପୁର ଅଞ୍ଚଳର ଅଧିକାଂଶ ଲୋକ ତାଙ୍କୁ ଲରମ୍ବାର ହେଡ୍‌ମାଷ୍ଟ୍ରେ ଭାବରେ ଜାଣୁଥିଲେ। ଅଧିକାଂଶ ଲୋକେ ତାଙ୍କ ନାଁ ମଧ୍ୟ ଜାଣନ୍ତି ନାହିଁ। ଗ୍ରାମ୍ୟ ପରିବେଶରେ ଚାଷୀ ଓ ଦରିଦ୍ର ଲୋକଙ୍କ ସହିତ ମିଶି ସେ ନିଜେ ଗୋ ସେବା ଓ ପରିବା ବଗିଚା କରିବାରେ ନିଜ ସମୟ ବିତାଉଥିଲେ। ଦୀର୍ଘ ଛବିଶ ବର୍ଷ ସେ ଲରମ୍ବାରେ ଥିଲେ।

ଏ ବିଦ୍ୟାଳୟର ଅଧିକାଂଶ ଛାତ୍ର ଥିଲେ ଦରିଦ୍ର, ମଧ୍ୟବିତ୍ତ ପରିବାର ତଥା ଗ୍ରାମୀଣ ସଂସ୍କୃତି ଦ୍ୱାରା ପ୍ରଭାବିତ। ପଶ୍ଚିମ ଓଡ଼ିଶାର କଳାହାଣ୍ଡି, ବଲାଙ୍ଗୀର, ସୁନ୍ଦରଗଡ଼, ସମ୍ବଲପୁର ବ୍ୟତୀତ ରାୟଗଡ଼, ବସନା ଅଞ୍ଚଳର ଓଡ଼ିଆ ପିଲା ଏଠି ଆସି ପଢୁଥିଲେ। ଏମାନେ ପ୍ରାୟ ପରିବାରର ପ୍ରଥମ ପିଢ଼ିର ପାଠ ପଢୁଆ। ଅଧିକାଂଶ ପିଲା ଧୋତି କୁରୁତା ପିନ୍ଧୁଥିଲେ। ହାଫ୍ ପ୍ୟାଣ୍ଟ କେବଳ ସହରୀ ପିଲା ପିନ୍ଧୁଥିଲେ। ଏପରି ଏକ ଆବାସିକ ବିଦ୍ୟାଳୟର ଛାତ୍ର ମଧ୍ୟରେ ଦୁଇ ପ୍ରକାରର

ଛାତ୍ର ବାରି ହେଉଥିଲେ । ପ୍ରଥମ ପ୍ରକାର ହେଲେ ଡରୁଆ, ସରଳ, ଅଳ୍ପ ଖର୍ଚ୍ଚରେ କଷ୍ଟେ ମଷ୍ଟେ ଚଳିବା ସାଧାରଣ ଛାତ୍ର । ଏମାନେ ସମସ୍ତେ ଗାଁ ପରିବେଶର ପିଲା । କେତେଜଣ କୌଣସି ସହର ମଧ୍ୟ ଦେଖିବାର ସୁଯୋଗ ପାଇନଥିଲେ । ଅନ୍ୟ ପ୍ରକାରର ଛାତ୍ର ଥିଲେ ଉଦ୍ଦଣ୍ଡ, ଚାଲାକ, ପାଠ ପ୍ରତି ବେଖାତିର୍ କରୁଥିବା ଭଲଘରର ଅବାଧ୍ୟ ଛାତ୍ର । ଏମାନେ ସପ୍ତମ ଶ୍ରେଣୀ ପହଞ୍ଚିବା ପୂର୍ବରୁ ଥରେ ଦୁଇଥର ଝୁଣ୍ଟିବା ପରେ, ଘରଲୋକଙ୍କ ଭର୍ତ୍ସନାର ପାତ୍ର ହୋଇ ବିତାଡ଼ିତ ହୋଇ ଏ ଜେଲ୍‌ଖାନା ସଦୃଶ ଆବାସିକ ବିଦ୍ୟାଳୟର ଛାତ୍ରହେବାର ସୌଭାଗ୍ୟ ପାଇଥିଲେ । ଏମାନେ ପ୍ରାୟ ସମସ୍ତେ ସହରୀ ପିଲା । ବାହାର ଦୁନିଆର ବହୁ ହାଲ୍ ଚାଲ୍ ଦେଖିବାର ପିଲା । ଏମାନେ ସମସ୍ତେ ଗ୍ରାମୀଣ ପିଲାଙ୍କ ଆଗରେ ଜଣେ ଜଣେ ଆଶ୍ଚର୍ଯ୍ୟ ଓ ଅଦ୍ଭୁତ ମଣିଷ । ମାଷ୍ଟ୍ରମାନଙ୍କ ଅଜାଣତରେ ଗ୍ରାମୀଣ ପିଲାମାନେ ବେଳେବେଳେ ସହରିଆ ପିଲାଙ୍କ ବୋଲକରା ହେଉଥିଲେ । ସହରିଆ ପିଲା ପ୍ରାୟ ଉଚ୍ଚଜାତିର ପିଲା । ଗ୍ରାମୀଣ ପିଲା କିନ୍ତୁ ହରିଜନ, ଆଦିବାସୀ, କୁଲିତା, ଡୁମାଳ, ରାଜପୁତ, ଗଉଡ଼, ତେଲି, ତେଲେଙ୍ଗା, ଗୁଡ଼ିଆ, ଭଣ୍ଡାରୀ, ଖଜରିଆ, କେଉଟ ଇତ୍ୟାଦି ଚାଷୀ ପରିବାର ଛାତ୍ର । ସେମାନେ ଓ ତାଙ୍କ ପରିବାର ଟଙ୍କା ପଇସାର କାରବାର ନ କରି ଚାଉଳ ଓ ଧାନ ଦେଇ ସବୁ କିଣାବିକା କରୁଥିଲେ । ତେଣୁ ସ୍କୁଲ୍‌ରେ ଦୁଇ ପ୍ରକାର ଫିସ୍ ଦେବାର ବନ୍ଦୋବସ୍ତ ଥିଲା । ଯେଉଁମାନେ ପଇସା ଦେଇ ମାସିକ ଫିସ୍ ପଇଠ କରୁଥିଲେ, ତାହା କ୍ଲାର୍କ ମାଷ୍ଟ୍ରେଙ୍କ ଜରିଆରେ ସ୍କୁଲ୍ ଅଫିସ୍‌ରେ ଦିଆଯାଉଥିଲା । କିନ୍ତୁ ମେସ୍ ଓ ହଷ୍ଟେଲ୍ ଖର୍ଚ୍ଚ ପାଇଁ ଗ୍ରାମୀଣ ପିଲାମାନେ ନିର୍ଧାର୍ଯ୍ୟ ଓଜନର ଚାଉଳ, ଡାଲି, କଖାରୁ, ଆଳୁ ଓ ବାଇଗଣ ମେସ୍‌ର ମେନେଜରଙ୍କ ପାଖରେ ଜମା ରଖି ନାମକୁ ମାତ୍ର ସ୍କୁଲ୍ ଫିଜ୍ ଦେଇ ପାଠ ପଢୁଥିଲେ । ସହରର ପିଲାମାନେ ପ୍ରାୟ ଟଙ୍କା ଆକାରରେ ସମସ୍ତ ଫିସ୍ ଦେଉଥିଲେ । ମୋ' ବାପା ମାସକୁ ମାସ ମନିଅର୍ଡର କରି ସେ ଟଙ୍କା ହେଡ୍‌ମାଷ୍ଟ୍ରଙ୍କ ପାଖକୁ ପଠାଇ ଦେଉଥିଲେ । ହେଡ୍‌ମାଷ୍ଟ୍ରେ ସେଥିରୁ କିଛି ମୋ ହାତଖର୍ଚ୍ଚ ବାବଦରେ ଦେଉଥିଲେ ବାପାଙ୍କ ନିର୍ଦ୍ଦେଶରେ । ସ୍କୁଲ୍‌ର ସବୁ ଶ୍ରେଣୀରେ ସମ୍ବଲପୁର ପରି ବଡ଼ ସହରର ପିଲାମାନେ ପଢୁଥିଲେ । ହଷ୍ଟେଲ୍‌ରେ ରହିବାପାଇଁ ଗୋଟିଏ ଗୋଟିଏ ଲମ୍ବା କୋଠରୀ (ଡର୍ମିଟେରି)ରେ ଦଶରୁ ବାରଜଣ ପିଲା ରହୁଥିଲେ । ଘରୁ ଏମାନେ କେବଳ ଗୋଟିଏ ସାଧାରଣ ପଶ୍ଚିମାଞ୍ଚଳର ଦଉଡ଼ିଆ ଖଟ, ଗୋଟିଏ କାଠ ବା ଟିଣ ବହି ଓ ଲୁଗା ରଖିବା ବାକ୍ସ ଓ କନ୍ଥା, ଚାଦର,

ସାଲ୍, ତକିଆ, ଗୁଡ଼ା ହୋଇଥିବା ବେଡ଼ିଂଟିଏ ଆଣି କୋଠରୀର ନିର୍ଦ୍ଦିଷ୍ଟ ସ୍ଥାନରେ ଆଠ ଫୁଟ ଲମ୍ବା ଓ ଚାରିଫୁଟ ଓସାର ଜାଗାରେ ନିକର ଆସ୍ଥାନ ଜମାଉଥିଲେ। ଘରୁ ଲଣ୍ଠନ ବା ଲ୍ୟାମ୍ପଟିଏ ସଂଗରେ ନେଇ ଆସିବାର ନିୟମ ଥିଲା। ସପ ବା ଚଟେଇଟିଏ ମଧ୍ୟ ବେଡ଼ିଂ ସାଥିରେ ଗୁଡ଼େଇ ଆଣିବାକୁ ପଡୁଥିଲା। ପ୍ରତ୍ୟେକ ଅନ୍ତେଃବାସୀ ନିକ ନାମାଙ୍କିତ ଗୋଟିଏ କଂସା ଥାଳିଆ, ଡାଟିଆ ଓ ଗ୍ଲାସ୍ ମେସ୍‌ରେ କମା ଦେବାର ନିୟମ। ସେଇ ବାସନରେ ନିଜେ ଭାତ ବାଢ଼ିବା ସମୟରେ ସେ ଭାତ, ଡାଲି, ତରକାରୀ ସଂଗ୍ରହ କରୁଥିଲା। ବାସନ ମାଜିବା କାମ ପାଇଁ ସ୍ୱତନ୍ତ୍ର ଲୋକକୁ ମେସ୍ ମେନେକର ନିୟୋଗ କରୁଥିଲେ।

ମୋ ପୈତୃକ ଘର ସମ୍ବଲପୁର ସହର। ମାତୁଳାଳୟ, ଲରମ୍ବା ଗ୍ରାମରୁ ଏଗାର ମାଇଲ୍ ଦୂରରେ ଥିବା ମାନପୁର ଗ୍ରାମ। ଆମ ସହରର ଚାରି ପାଞ୍ଚଜଣ ଛାତ୍ର ଘର ଓ ସହରରୁ ବିତାଡ଼ିତ ହୋଇ ଏ ବିଦ୍ୟାଳୟର ଛାତ୍ରଥିଲେ। ସେମାନେ ବେଶ୍ ବୁଦ୍ଧିମାନ, କିନ୍ତୁ ପାଠପଢ଼ା ପ୍ରତି ତାଙ୍କର ପିଲାଦିନରୁ ଖାତିର୍ ନାହିଁ। ସେମାନଙ୍କ ମଧ୍ୟରେ ଆମ ସାହିର ଧୀରେନ୍ଦ୍ର ନାଥ ପାଢ଼ୀ ମୋର ଚତୁର୍ଥ ଶ୍ରେଣୀ ବେଳୁ ସାହିବସ୍ତିର ଲଙ୍ଗୋଟିଆ ସାଥି। ଏକ ସଂଗରେ ସାହିର କଗନ୍ନାଥ ମନ୍ଦିର, ହନୁମାନ ମନ୍ଦିର ପ୍ରାଙ୍ଗଣରେ ବିଭିନ୍ନ ଖେଳ ଖେଳିବା, ମହାନଦୀ ବାଲିରେ ଖେଳିବା, ସାନଧାର ଓ ବଡ଼ଧାର ପଥର ଖୋଲରୁ ଚିଙ୍ଗୁଡ଼ି ଧରିବା, ପାଣିରେ ଡାଇଭ ମାରିବା, ପହଁରିବା ପରି ଦୁଃସାହସିକ କାମର ମାର୍ଗ ଦ୍ରଷ୍ଟା ଭାବରେ ଓ ଘରୁ ପଇସା ଲୁଚାଇ ନେଇ, ସମ୍ବଲପୁର-ଝାରସୁଗୁଡ଼ା ରେଳରେ ଝାରସୁଗୁଡ଼ାକୁ ବିନା ଟିକଟରେ ଯାଇ ହିନ୍ଦି ସିନେମା ଦେଖି ହୋଟେଲ୍‌ରେ ଖାଇ ଷ୍ଟେସନ୍‌ରେ ରାତି ବିତାଇବା ପରି, ଦୁର୍ଦ୍ଧର୍ଷ କର୍ମ କରି ସାହିରେ ଚର୍ଚ୍ଚିତ ହେବା ପରି କଣେ ବନ୍ଧୁ ଥିଲେ। ସେ ଲରମ୍ବାରେ ୧୯୪୫ରେ ଅଷ୍ଟମ ଶ୍ରେଣୀରେ ନାମ ଲେଖିବା ସମୟରେ ମୁଁ କୋରାପୁଟରୁ ମୋ ବାପାଙ୍କ ନିର୍ଦ୍ଦେଶରେ ଆସି ଏ ବିଦ୍ୟାଳୟରେ ଯୋଗ ଦେଲି। କହିବା ବାହୁଲ୍ୟ ଅଳ୍ପଦିନ ଭିତରେ ଆମେ ଦୁଇକଣ ଅନ୍ତରଂଗ ବନ୍ଧୁ ଭାବରେ ମାଷ୍ଟ୍ରମାନଙ୍କ ଓ ଛାତ୍ରମାନଙ୍କ ଦୃଷ୍ଟିକୁ ଆସିଥିଲୁ। ମୁଁ ଥିଲି ସରଳ, ଶାନ୍ତ ଓ ଦୁର୍ବଳ, ସେ ଥିଲା ଅବାଧ୍ୟ, କିଦ୍‌ଖୋର୍ ଓ କର୍କଶ।

ବେଳେବେଳେ ଭାବୁଥିଲି, ମୋ' ବାପ ମା' ମୋତେ ବଡ଼ ପୁଅ ଭାବରେ ଘରେ ନରଖି ଏତେ ଦୂରକୁ ଏମିତି ଗୋଟିଏ ଆବାସିକ ଗ୍ରାମ୍ୟ ସ୍କୁଲ୍‌କୁ ପଠେଇବାର କାରଣ କ'ଣ ? ବନ୍ଧୁ ଧୀରେନ୍ଦ୍ର ସପ୍ତମ ଶ୍ରେଣୀରେ ଦୁଇଥର ଫେଲ୍

ହୋଇଥିବାରୁ ତାଙ୍କ ବାପା ତାଙ୍କୁ ଏଠିକୁ ପଠାଇବାର ଯଥାର୍ଥତା ଅଛି । ମୁଁ କ'ଣ ମୋର ଆଉ ପାଞ୍ଚ ଛଅ ଜଣ ଛୋଟ ଭାଇଭଉଣୀଙ୍କ ପରି ବାପା ମା'ଙ୍କ ନିଜ ପୁଅ ନୁହେଁ ? ମୋ ପ୍ରତି ଏତେ ଅବିଚାର କାହିଁକି ? ବାପା ମା'ଙ୍କ ଆଗରେ କିନ୍ତୁ ମୋର ସବୁ ଭାବନା ଉଭେଇଯାଏ । ବାପା କହୁଥିଲେ, "ଗେହ୍ଲା ପୁଅ ହୋଇ ବଢ଼ିଲେ ଦୁନିଆରେ ବହୁତ କଥା ଶିଖି ହୁଏ ନାହିଁ । ତୋତେ କଷ୍ଟ କ'ଣ, ଦୁଃଖ କ'ଣ ଜାଣିବାକୁ ପଡ଼ିବ । ନିଜେ ଭୋଗିବାକୁ ପଡ଼ିବ । ନହେଲେ ତୁ ଉଚିତ୍ ଅନୁଚିତ୍ କଥା ଜାଣିପାରିବୁ ନାହିଁ । ସାମାଜିକ ନ୍ୟାୟ କ'ଣ ଜାଣି ପାରିବୁ ନାହିଁ ।" କଥାଗୁଡ଼ାକ ପିତା ଲାଗୁଥିଲା । ଆଖି ଆଗରେ ପରିବାର ଭିତରେ ବାପା କହିବାଭଳି ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ, ଜନ୍ମରୁ ମୂକବଧିର ସାବତ ବଡ଼ଭାଇଙ୍କୁ ଅତି ନିକଟରୁ ଦେଖିବା ପରେ ନୀରବ ହୋଇଯାଉଥିଲି । ଲରମ୍ବା ହେଡ୍‌ମାଷ୍ଟ୍ରଙ୍କ ବ୍ୟକ୍ତିତ୍ୱ ଓ ପ୍ରଶାସନିକ ଦକ୍ଷତା ମୋତେ ସବୁ ଶିଖାଇଛି । ତାଙ୍କରି ଦୃଷ୍ଟାନ୍ତ ଯୋଗୁ ମୁଁ ବାଟ ଚାଲିଛି । ମୋ' ବାପା ୧୯୫୭ ମସିହାରେ ଚାଲିଯିବା ପରେ, ତାଙ୍କ କଥା, କାମ ଓ ଆଦର୍ଶ ମୋ ପାଖରେ ସ୍ପଷ୍ଟତର ହୋଇଯାଇଛି ।

ବନ୍ଧୁ ଧୀରେନ୍ଦ୍ର ଏକ ଅଦ୍ଭୁତ ବାଳକ । ମଧ୍ୟବିତ୍ତ କର୍ମନିଷ୍ଠ ବ୍ରାହ୍ମଣ ପରିବାରର ଦ୍ୱିତୀୟ ପୁତ୍ର । ଘରେ ଖାଇବା ଛଡ଼ା ତାଙ୍କ ମନ ଘରେ କେବେ ରହୁନଥିଲା, ତେଣୁ ତାଙ୍କ ଭବଘୁରା ମନ ଅଳ୍ପ ବୟସରୁ ତାଙ୍କୁ ସମସ୍ତ ଅନୀତି ଓ ଅନୈତିକ ଆଚରଣ ଶିଖାଇଥିଲା । ସେ ଥିଲେ ଜିଦ୍‌ଖୋର୍ । ବିଡ଼ି, ଗଞ୍ଜେଇ, ମାଛ, ମାଂସ, ଗେଣ୍ଡା, କୁକୁଡ଼ା ଖାଇବାରେ ଧୂରନ୍ଧର । ହରିଜନ ସାହିରେ ବହୁ ବୟସ୍କ ବ୍ୟକ୍ତି ଥିଲେ ତାଙ୍କର ବନ୍ଧୁ । ବାପାଙ୍କ ଲୁଗାଦୋକାନ ବାକ୍ସରୁ ପଇସା ଚୋରାଇ ତାଙ୍କର ମନଇଚ୍ଛା ଝାରସୁଗୁଡ଼ା ଓ ରାୟପୁର ପରି ସହରକୁ ରେଳରେ ବିନା ଟିକଟରେ ପରିଭ୍ରମଣରେ ଯିବା ଥିଲା ଅଦ୍ଭୁତ ସଉକି । ସେ ଦୁର୍ଘଟଣା ଓ ଦଣ୍ଡକୁ ଭୟ କରୁନଥିଲେ । ତାଙ୍କର ସବୁବେଳେ ଦରକାର ଥିଲେ କେତେକ ସମଭାବପନ୍ନ ସ୍ତାବକ । ସକାଳୁ ଦାନ୍ତ ନଘସି, ମୁହଁ ନଧୋଇ, ଖଟରେ ବସି ସେ ନିର୍ବିକାର ଭାବରେ ମୁଢ଼ି, ପିଆଜ ଓ ଲଙ୍କା ଜଳଖିଆ କରିପାରୁଥିଲେ । ଅଷ୍ଟମ ଶ୍ରେଣୀର ତେର / ଚଉଦ ବର୍ଷର ଜଣେ ବାଳକ ସେ, ହେଲେ, କୋଠରୀର ସମସ୍ତ ସହପାଠୀଙ୍କୁ ତାଙ୍କର ଆଜ୍ଞାବହ କରି ରଖୁଥିଲେ । ବଳିଷ୍ଠ ଶରୀର ଓ ତାଙ୍କର ଆଚାର ବ୍ୟବହାର ଗ୍ରାମୀଣ ସହପାଠୀମାନଙ୍କ ପାଖରେ ଥିଲା ସପ୍ତମ ଆଶ୍ଚର୍ଯ୍ୟ । ଛାତ୍ରାବାସର କଡ଼ା ନିୟମ ଓ ସମୟ ନିର୍ଘଣ୍ଟ ପ୍ରତି ତାଙ୍କର

ସାମାନ୍ୟତମ ଖାତିର ନଥିଲା । ସବୁ ସହପାଠୀ ସକାଳ ୬ଟାରେ ନିତ୍ୟକର୍ମ ସାରି ଯେ ଯାହା ସ୍ଥାନରେ ପଠନରତ ଥିବା ସମୟରେ ନିଜ ଖଟରେ ଚଦର ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଘୋଡ଼ାଇ ଶୋଇ ରହୁଥିଲେ । ଛାତ୍ରାବାସର କର୍ମଚାରୀ ତାଙ୍କୁ ଉଠାଇ ତାଗିଦ୍ କରିବାକୁ ସାହସ କରୁନଥିଲେ । ସିଧା ହେଡ୍‌ମାଷ୍ଟରଙ୍କ ପାଖରେ ନାଲିସ୍ ପହଂଚୁଥିଲା । ହେଡ୍‌ମାଷ୍ଟ୍ରେ ହାତରେ ଦୁଇଟି ମୋଟା କନିଅର ଡାଙ୍ଗ ନେଇ କୋଠରୀରେ ପହଞ୍ଚି ଧୀରେନ୍ଦ୍ରଙ୍କ ନିଦ୍ରା ଭଙ୍ଗ କରୁଥିଲେ । ଆଶ୍ଚର୍ଯ୍ୟ ହୋଇ କହୁଥିଲେ, "ଧୀରେନ୍ଦ୍ର ପାଢ଼ୀ, ତୁମେ ହଷ୍ଟେଲ୍‌ର ନିୟମ ଭାଙ୍ଗି ଆମକୁ ଅବମାନନା କରୁଛ । ଆମେ ତୁମକୁ ଦଣ୍ଡ ଦେବୁ ।" ଧୀରେନ୍ଦ୍ର ଖଟରୁ ଉଠିପଡ଼ି ହେଡ୍‌ମାଷ୍ଟରଙ୍କ ଆଗରେ ସମ୍ମାନର ସହିତ ଛିଡ଼ାହୋଇ ରହୁଥିଲେ । ଉତ୍ତର ଦେଉନଥିଲେ । ଦଣ୍ଡଦେବା କଥା ଶୁଣିବା ସାଂଗେ ସାଂଗେ ତାଙ୍କର ହାତ ପାପୁଲି ଦୁଇଟି ସେ ହେଡ୍‌ମାଷ୍ଟରଙ୍କ ଆଡ଼କୁ ବଢ଼ାଇ ଦେଉଥିଲେ । ହେଡ୍‌ମାଷ୍ଟ୍ରେ ସମସ୍ତ ଶକ୍ତି ଲଗାଇ ଦଶ ବାର ଛାଟ ତାଙ୍କ ଦୁଇ ପାପୁଲିରେ ବସେଇବା ବେଳେ ମୁହଁରେ ସାମାନ୍ୟ କଷ୍ଟ ସୂଚନା ଦେଖାଇବା ଛଡ଼ା ଛଟପଟ ବା ହଲ୍‌ଚଲ୍ ବି ହେଉନଥିଲେ । ହେଡ୍‌ମାଷ୍ଟର ହାଲିଆ ହେଇ ଯାଉଥିଲେ । ଧଇଁ ସଇଁ ହୋଇ କେବଳ ଏତିକି କହୁଥିଲେ, "ମୁହଁ ଧୋଇ ପଢ଼ିବାକୁ ବସ । ତୁମେ ତୁମ ସାଙ୍ଗମାନଙ୍କ ପାଖରେ ଏ କି ଆଦର୍ଶ ଦେଖାଉଛ ? ତୁମ ବାପା କ'ଣ ତୁମକୁ ଏଥିପାଇଁ ଆମ ଏଠିକୁ ପଠାଇଛନ୍ତି ?" ହେଡ୍‌ମାଷ୍ଟରଙ୍କ ଆଜ୍ଞା ପାଳନ କରିବାକୁ ଧୀରେନ୍ଦ୍ର ତିଳେ ମାତ୍ର ଦ୍ୱିଧା ଦେଖାଉ ନଥିଲେ । ମାଷ୍ଟରଙ୍କ ଉପସ୍ଥିତିରେ ଖଟରେ ବସିପଡ଼ି ପଠନରତ ହେଉଥିଲେ । ହେଡ୍‌ମାଷ୍ଟର ଚାଲିଯିବା ପରେ କିନ୍ତୁ ନିର୍ବିକାର ଭାବରେ ପୁଣି ସେଇ ଚଦର ଘୋଡ଼ି ଶୋଇଯାଉଥିଲେ । ଗାଧୋଇବା ଘଣ୍ଟି ବାଜିବା ସଂଗେ ସଂଗେ ସେ ଖଟରୁ ଉଠୁଥିଲେ । ତାଙ୍କ ସ୍ତାବକମାନେ ତେଲ ଶିଶି ଓ ଗାମୁଛା ତାଙ୍କୁ ବଢ଼ାଇ ଦେଉଥିଲେ । ହାଫ୍ ପ୍ୟାଣ୍ଟ ପିନ୍ଧା ତୈଳାକ୍ତ ଧୀରେନ୍ଦ୍ର କାହାକୁ କିଛି ନକହି ସିଧା ଦଉଡୁଥିଲେ ଖଲିଆ ବନ୍ଧକୁ । ଅଣ୍ଟାରେ ଗାମୁଛାଟିକୁ ବାନ୍ଧି ସେ ଘାଟର ଚାନ୍ଦିନୀ ଉପରୁ ଲମ୍ଫ ଦେଉଥିଲେ ପାଣିକୁ । ମଝି ପୋଖରୀ ପର୍ଯ୍ୟନ୍ତ ପହଁରି ଯାଇ ଗାମୁଛାଟିକୁ ଚାଦର ପରି ମୁଣ୍ଡକୁ ଗୋଡ଼ ପର୍ଯ୍ୟନ୍ତ ଘୋଡ଼ାଇ ନିଶ୍ଚଳ ହୋଇ ପାଣିରେ ଶୋଇବା ଢଙ୍ଗରେ ଭାସୁଥିଲେ ଅଧଘଣ୍ଟାଏ ଯାଏଁ । ଏ ଦୃଶ୍ୟ ଦେଖିଥିବା ସମସ୍ତ ଅନ୍ତେଃବାସୀ ଯେତେ ଆଶ୍ଚର୍ଯ୍ୟ ହେଉଥିଲେ, ଆମୋଦିତ ହେଉଥିଲେ ତା'ଠାରୁ ବେଶୀ । କେହି ଅଭିଯୋଗ କରୁ ନଥିଲେ ଶିକ୍ଷକମାନଙ୍କ ଆଗରେ ।

ସମସ୍ତ ଅନ୍ତେଃବାସୀ ଛାତ୍ରଗଣ ମେସ୍‌ରେ ଖାଇସାରିବା ପରେ ସ୍କୁଲ୍‌ର ପ୍ରାର୍ଥନାରେ ଯୋଗ ଦେବାବେଳେ ଧୀରେନ୍ଦ୍ର ନିର୍ବିକାର ଭାବରେ ଗାଧୋଇ ସାରି ମୁଖ୍ୟ ଫାଟକ ଦେଇ ବିଦ୍ୟାଳୟ ହତାରେ ପ୍ରବେଶ କରୁଥିଲେ। ସମସ୍ତ ଶିକ୍ଷକ ଓ ଛାତ୍ର ଧୀରେନ୍ଦ୍ରଙ୍କର ଏ କ୍ରିୟାକଳାପ ଦେଖିଲେ ମଧ୍ୟ ଧୀରେନ୍ଦ୍ର କିଛି ପ୍ରତିକ୍ରିୟା ଦେଖାଉନଥିଲେ। ପ୍ରାର୍ଥନା ପରେ ସବୁ ଶ୍ରେଣୀରେ ପାଠପଢ଼ା ଆରମ୍ଭ ହେଉଥିଲା। ହେଡ୍‌ମାଷ୍ଟ୍ରେ ପିଅନ୍ ପଠାଇ ଧୀରେନ୍ଦ୍ରଙ୍କୁ ତାଙ୍କ କୋଠରୀରୁ ଅଫିସ୍‌କୁ ଡକାଇ ପୁଣି ଭର୍ତ୍ସନା ଓ ବେତ୍ରାଘାତ ଦଣ୍ଡ ଦେଉଥିଲେ। ନିର୍ଦ୍ଦେଶ ଦେଉଥିଲେ କ୍ଲାସ୍‌ରେ ଯାଇ ବସିବା ପାଇଁ। ଧୀରେନ୍ଦ୍ର ଆଜ୍ଞା ପାଳନ କରୁଥିଲେ। ମେସ୍‌ର ରୋଷେଘରେ ତାଙ୍କ ଖାଇବା ତେଣେ ସଯତ୍ନରେ ଥାଳିରେ ବଢ଼ାଯାଇ ପୁଝାରିମାନଙ୍କ ମାର୍ଫତରେ ଜମାହୋଇ ରହୁଥିଲା। ମଧ୍ୟାନ୍ତର ଖାଇବା ଛୁଟି ସମୟରେ ସେ ମେସ୍‌ରେ ପହଞ୍ଚିବା ସଂଗେ ସଂଗେ ତାଙ୍କ ଖାଦ୍ୟ ତାଙ୍କରି ସାମନାରେ ପରସି ଦିଆଯାଉଥିଲା। ଅଷ୍ଟମ ଶ୍ରେଣୀର ଏ ଛାତ୍ରଟି ପ୍ରତି ଉପର ଶ୍ରେଣୀର ମେଧାବୀ ଓ ବିଜ୍ଞ ଛାତ୍ରମାନେ କେବଳ ଦୟା ମନୋଭାବ ରଖିଥିଲେ। କୌଣସି ଉପଦେଶ ବା ଆକ୍ଷେପ କରୁନଥିଲେ। ଏକ ପ୍ରକାର ଭୟ ଓ ସମ୍ମାନର ଝଲକ ଥିଲା ସେମାନଙ୍କ ବ୍ୟବହାରରେ। ଠିକ୍ କହିବାକୁ ଗଲେ, ଧୀରେନ୍ଦ୍ରଙ୍କର କେହି ବନ୍ଧୁ ନଥିଲେ। କେତୋଟି ସ୍ତାବକ ଓ ଆଶ୍ଚର୍ଯ୍ୟଚକିତ ଛାତ୍ରଙ୍କ ଗହଣରେ ସେ ରହୁଥିଲେ। ମୁଁ ମୋ ମାମୁଁଙ୍କ ସହିତ ଅନ୍ୟ ଏକ କୋଠରୀରେ ରହୁଥିଲି। ତେଣୁ, ମୁଁ ହିଁ ତାଙ୍କର ଏକମାତ୍ର ସମାଲୋଚକ ଓ ହିତୈଷୀ ବନ୍ଧୁଥିଲି-ଲରମ୍ବା ରହଣି ସମୟରେ। ତାଙ୍କର କୌଣସି ଗୁଣ ଓ ଦୋଷର ପ୍ରଶଂସକ ବା ସ୍ତାବକ ମୁଁ ନଥିଲି। ମୁଁ ଥିଲି ତାଙ୍କର ସମାଲୋଚକ ଓ ସେ ଥିଲେ ମୋର ସମାଲୋଚକ।

ଦୁର୍ବଳ ଶରୀର ଓ କୋରାପୁଟରୁ ପାଳିଜ୍ୱର ଧରି ଆସିଥିବା ଯୋଗୁଁ ଅଷ୍ଟମ ଶ୍ରେଣୀରେ ମୁଁ ଧୀରେନ୍ଦ୍ରଙ୍କ ସହିତ ବେଶୀ ବୁଲାଚଲା କରିପାରୁନଥିଲି। ସ୍କୁଲ୍ ଛୁଟି ପରେ ସନ୍ଧ୍ୟାରେ ଦୁଇଚାରି ଘଣ୍ଟେ ବୁଲିବା ବେଳେ ମୁଁ ତାଙ୍କୁ ପଚାରୁଥିଲି ହେଡ୍‌ମାଷ୍ଟ୍ରେଙ୍କ ମାଡ଼କଥା ଓ ତାଙ୍କର ଅମଣିଷ ପଣିଆ କଥା। ନଭେମ୍ବର ମାସର ଦଶହରା ଛୁଟିରେ ମୁଁ ପୁଣି କୋରାପୁଟ ବାପାଙ୍କ ପାଖକୁ ଫେରିଗଲି। ବାପା ସେତେବେଳେ ନବରଙ୍ଗପୁର ବୋର୍ଡ ହାଇସ୍କୁଲ୍‌ରେ ପଢ଼ିବା ପାଇଁ ସୁଯୋଗ ଦେଲେ। ଘରକୁ ଲାଗି ବୋର୍ଡ ହାଇସ୍କୁଲ୍। ମୋର ମେଲେରିଆ ଚିକିତ୍ସା ମଧ୍ୟ ଚାଲିଲା। ଏ ହାଇସ୍କୁଲ୍‌ରେ ନବମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବା ବେଳକୁ ଭାରତ

ସ୍ୱାଧୀନ ହେଲା । ବାପାଙ୍କର ପୁଣି ବଦଳି ହେଲା ଏ.ଡ଼ି.ଏମ୍. ପାହ୍ୟାରେ । ମୋତେ ଲରମ୍ବା ଆବାସିକ ଇଂରାଜୀ ବିଦ୍ୟାଳୟକୁ ଫେରି ଆସିବାକୁ ପଡ଼ିଲା ଦଶହରାରେ, ୧୯୪୭ ମସିହା ଅକ୍ଟୋବର ମାସରେ । ମୁଁ ସେତେବେଳେ ଅନେକ ସୁସ୍ଥ ହୋଇଯାଇଥିଲି । ଛାତ୍ରାବାସରେ ପହଞ୍ଚିବା କ୍ଷଣି ହେଡ୍‌ମାଷ୍ଟ୍ରେ ବନ୍ଧୁ ଧୀରେନ୍ଦ୍ର ପାଢ଼ୀଙ୍କୁ ଡକାଇ ପଠାଇଲେ ମୋତେ କୌଣସି ଗୋଟିଏ କୋଠରୀରେ ରହିବାର ସ୍ଥାନ ଦେବା ପାଇଁ । ନିଜର ଛୋଟ କୋଠରୀରେ ଆଉ ଛଅ ସାତ ଜଣ ପିଲାଙ୍କ ସହିତ ସେ ମୋର ରହିବାର ବନ୍ଦୋବସ୍ତ କରିଦେଲେ । ଆଶ୍ଚର୍ଯ୍ୟ ହେଲି ବନ୍ଧୁ ଧୀରେନ୍ଦ୍ରଙ୍କୁ ଦେଖି । ସଂପୂର୍ଣ୍ଣ ନୂତନ ମଣିଷଟିଏ । ଛାତ୍ରାବାସର ଉପର କ୍ଲାସ୍‌ର ମନିଟର୍ । ଇଂରାଜୀ ଓ ଗଣିତରେ ଅଷ୍ଟମ ଶ୍ରେଣୀରେ ସବୁଠାରୁ ଅଧିକ ନମ୍ବର ରଖିଥିବା ସମୟାନୁବର୍ତ୍ତୀ ଛାତ୍ର । ସକାଳୁ ସ୍ନାନ ସାରି ଗୀତାପାଠ, ଯୋଗାସନ କରୁଥିବା, ବିଡ଼ି ଓ ଗଂଜେଇ ଠାରୁ ବହୁ ଦୂରରେ ନିରାମିଷ ଆହାରୀ ଜଣେ ବ୍ରହ୍ମଚାରୀ ! ବନ୍ଧୁଙ୍କୁ ପଚାରିଲି କେମିତି ଏ ପରିବର୍ତ୍ତନ ହେଲା । ତାଙ୍କର ଉତ୍ତର, "ହେଡ୍‌ମାଷ୍ଟ୍ରଙ୍କ ନିଷ୍ଠା ଯୋଗୁଁ ଏ ପରିବର୍ତ୍ତନ ମୋ ଭିତରେ ହୋଇଛି ।" ଗୋଟିଏ ଲୋକ ମାସ ମାସ ଧରି, ମୋତେ ଛାତ୍ରାବାସର ନିୟମ ଭଙ୍ଗ କରୁଥିବା ଦୋଷରେ ଦଣ୍ଡ ଦେବାରେ ଯେଉଁ କଷ୍ଟ ସ୍ୱୀକାର କରୁଥିଲେ - ସେଥିପାଇଁ ଏ ପରିବର୍ତ୍ତନ ! ମୁଁ ସ୍ତମ୍ଭୀଭୂତ ହୋଇଯାଇଥିଲି । ସ୍କୁଲ୍‌ର କୌଣସି ଛାତ୍ର ବର୍ତ୍ତମାନ ଧୀରେନ୍ଦ୍ର ନାଥ ପାଢ଼ୀଙ୍କୁ ଦୟା ବା ଅବଜ୍ଞା ଦେଖାଉନାହାନ୍ତି । ବିଦ୍ୟାଳୟର ପ୍ରତ୍ୟେକ ଛାତ୍ରମାନଙ୍କ କାର୍ଯ୍ୟରେ ସେ ନିର୍ଦ୍ୱନ୍ଦରେ ନେତା ଭାବରେ ନିର୍ବାଚିତ ହେଉଛନ୍ତି । ନିରପେକ୍ଷ, ନ୍ୟାୟୀ, ସାହସୀ, ଟିକିନିଖି ପଇସାର ହିସାବ ରଖୁଥିବା, ବିଦ୍ୟାଳୟର ସମସ୍ତ ନିୟମ ମାନୁଥିବା ମେଧାବୀ ଛାତ୍ର । ଦିନରାତି ସବୁ ସମୟରେ ପାଠ ନବୁଝି ପାରୁଥିବା ପିଲାଙ୍କୁ ସାହାଯ୍ୟ କରୁଥିବା ବ୍ଲକ୍ ମନିଟର୍ । ସମସ୍ତ ଶିକ୍ଷକ ଓ ଗ୍ରାମର ବୟୋଜ୍ୟେଷ୍ଠ ଲୋକଙ୍କ ଆଗ୍ରହ ଓ ସମ୍ମାନର ପାତ୍ର । ଦଶମ ଓ ଏକାଦଶ ଶ୍ରେଣୀରେ, ତେଣୁ, ତିନିଶହ ଛାତ୍ରଙ୍କ ଜେନେରାଲ ମନିଟର୍ ଥିଲେ ସେ ।

ଦଶମ ଓ ଏକାଦଶ ଶ୍ରେଣୀରେ ବନ୍ଧୁ ଧୀରେନ୍ଦ୍ର ଓ ମୁଁ ସେଇ ଗୋଟିଏ କୋଠରୀରେ ପାଖାପାଖି ଖଟ ଉପରେ ବସି ପାଠ ପଢ଼ିଛୁ । କିଏ କାହାଦ୍ୱାରା ପ୍ରଭାବିତ ହୋଇଥିଲୁ ଜାଣିନାହିଁ । କିନ୍ତୁ ତାଙ୍କର ଇଂରାଜୀ ଓ ଗଣିତ ବୁଝିବାର କ୍ଷମତା ମୋ ଠାରୁ ଯଥେଷ୍ଟ ବେଶୀଥିଲା । ମୋର ଓଡ଼ିଆ ସାହିତ୍ୟ, ଚିତ୍ର,

ହସ୍ତାକ୍ଷର, ଶାନ୍ତସ୍ୱଭାବ, ବିଜ୍ଞାନ ପ୍ରତି ଶ୍ରଦ୍ଧା ଓ କେରିକେଚ଼ର କରିବା ଗୁଣ ଯୋଗୁଁ ମୋତେ ଶିକ୍ଷକ, ଛାତ୍ରଙ୍କ ଛଡ଼ା ବାହାର ଲୋକେ ମଧ୍ୟ ପ୍ରଶଂସା କରୁଥିଲେ। ମୁଁ ସବୁବେଳେ ଶୃଙ୍ଖଳା ଭିତରେ ରହିବାକୁ ଭଲ ପାଉଥିଲି। ବନ୍ଧୁ ଧୀରେନ୍ଦ୍ର ବୋଧହୁଏ ସେଥିପାଇଁ ମତେ ଅନ୍ତରଂଗ ମନେ କରୁଥିଲେ। ଏକାଦଶ ଶ୍ରେଣୀବେଳେ ଖ୍ରୀଷ୍ଟମାସ ଛୁଟିରେ ଆମେ ଘରକୁ ନଯାଇ ମାଟ୍ରିକ୍ ପରୀକ୍ଷା କୋର୍ସକୁ ରିଭିଜନ୍ କରୁଥିଲୁ। ଏହା ସ୍କୁଲ୍‌ର ଏକ ନିୟମ। ମୋଟ ୩୦/୩୫ ଜଣ ଛାତ୍ର ଏତେବଡ଼ ହଷ୍ଟେଲ୍‌ରେ ବିଭିନ୍ନ କୋଣରେ ସକାଳେ ଓ ସନ୍ଧ୍ୟାରେ ପଢ଼ିବା ପାଇଁ ନିରୋଳା ଜାଗା ବାଛି ନେଉଥିଲେ। ଆମ ଶ୍ରେଣୀରେ ଦୁଇ ତିନିଜଣ ବିବାହିତ କୋଡ଼ିଏ ଓ ବାଇଶ ବର୍ଷର ପିଲା ମଧ୍ୟ ପଢୁଥିଲେ। ସେମାନେ କେଉଟ, ତେଲେଙ୍ଗୀ, ଖଜୁରିଆ ଜାତିର। ଗ୍ରାମୀଣ ସମାଜରେ ନିଜ ଜାତି ଭିତରେ, କେତେକ ଅଭ୍ୟାସ ସହିତ ଜଡ଼ିତ ଥିଲେ। ଯଥା ପାରା, ମୂଷା ଓ ପୋଖରୀର ପକ୍ଷୀଙ୍କୁ ମାରି ପୋଡ଼ି ଖାଇବା। ତାଡ଼ି ଓ ମହୁଲି ପରି ଜିନିଷ ପିଇବା ଇତ୍ୟାଦି। ଛାତ୍ରାବାସ ପିଲାଙ୍କ ପାଇଁ ଏ ସମସ୍ତ ପୁରାପୁରି ଏକ ଅନୈତିକ, ଅଭଦ୍ର ଓ ଦୋଷାବହ କାର୍ଯ୍ୟ ଭାବରେ ଗଣାଯାଉଥିଲା। ବନ୍ଧୁ ଧୀରେନ୍ଦ୍ର ଓ ମୁଁ କୌଣସି ନିଶାସକ୍ତ ନଥିଲୁ। ପାନ ମଧ୍ୟ ଖାଉ ନଥିଲୁ। କିନ୍ତୁ ଗ୍ରାମୀଣ ବନ୍ଧୁମାନେ କିଛି ନିରୋଳା ସମୟରେ ଏହିପରି ମୂଷା ଓ ପାରା ମାଂସ ତଥା ଖଜୁରି ଗଛର ତାଡ଼ି ବିଷୟରେ ଖବର ଅନ୍ତର ରଖୁଥିଲେ। ରାତ୍ରିର ଅନ୍ଧକାରରେ ଏ ପୋଡ଼ା ମାଂସ ଓ ତାଡ଼ି ଛାତ୍ରାବାସ ଭିତରକୁ ଆସୁଥିଲା। କେତେଜଣ ଅନ୍ତେଃବାସୀ ଆଖ ପାଖ ଗାଁର ଏମିତି କେଉଟ, ଖଜୁରିଆମାନଙ୍କ ସହିତ ଯୋଗାଯୋଗ ରଖିଥିଲେ। ଏହି ସମୟରେ ମୋର ଦୁଇଜଣ ବୟସ୍କ ସହପାଠୀ ଗୌରବ ଓ ସନ୍ନ୍ୟାସୀ, ତଳ ବ୍ଲକ୍‌ର ଡାଇନିଂ ହଲ୍‌ରେ ସନ୍ଧ୍ୟାରୁ ଦୁଇଟି ଚଟେଇ, ଦୁଇଟି ଲଣ୍ଠନ ନେଇ ବିରାଟ ହଲ୍‌ର ଗୋଟିଏ କବାଟ ପାଖରେ ମୁହାଁମୁହିଁ ବସି ବିଦ୍ୟାଭ୍ୟାସ କରୁଥିଲେ। ସେଦିନ ମୋତେ ସାହିତ୍ୟ ବୁଝେଇଦେବା ପାଇଁ ସେମାନେ ନିମନ୍ତ୍ରଣ କଲେ। ଛାତ୍ରାବାସର ଏହା ଥିଲା ନିୟମ।

ସନ୍ଧ୍ୟା ଛ' ଟା ସମୟରେ ମୁଁ ସେଠି ଉପସ୍ଥିତ ହେଲି। ସେଠି କେବଳ ଗୌରବ ଥିଲେ, କିନ୍ତୁ ସନ୍ନ୍ୟାସୀ ନଥିଲେ। ଗୌରବ ଜାତିରେ ଖଜୁରିଆ। ସେ ମୋତେ କବିତା ବହି ଖୋଲି ଭାବାର୍ଥ ବୁଝେଇ ଦେବାକୁ ଅନୁରୋଧ କଲେ। ସେ କାର୍ଯ୍ୟ ପ୍ରାୟ ଘଣ୍ଟାଏ ମଧ୍ୟରେ ସମାପ୍ତ ହେବା ପରେ ସନ୍ନ୍ୟାସୀ ଉପସ୍ଥିତ ହେଲେ।

ସେ ଜାତିରେ କେଉଟ। ପରସ୍ପରର ମୁହଁକୁ ଅନେଇ ଇଙ୍ଗିତରେ ଖୁସି ବ୍ୟକ୍ତ କଲେ। ମୁଁ ସେମାନଙ୍କର ହାବଭାବରୁ ଜାଣିଲି ସନ୍ନ୍ୟାସୀ କୌଣସି ଏକ ପଦାର୍ଥ ଆଣିବାକୁ ଛାତ୍ରାବାସ ବାହାରକୁ ଯାଇଥିଲେ। ଗୌରବ ପଚ଼ାରିଲେ, "କ'ଣ ? ମିଳିଲା ?" ସନ୍ନ୍ୟାସୀଙ୍କ ଉତ୍ତର, "ହଁ, ଦୁଇଟା"। ଗୌରବ ଖୁସି ହୋଇ କହିଲେ "ତା'ହେଲେ ଡେରି କାହିଁକି ? ଦି'ଟା ତାଟିଆ ନେଇଆସ।" ସନ୍ନ୍ୟାସୀ ମୋ ଆଡ଼କୁ ଅନେଇ ଟିକିଏ ହସିଲେ। ଗୌରବ ମଧ୍ୟ ହସିଲେ। ମୁଁ ସନ୍ଦେହରେ ପଡ଼ି ପଚ଼ାରିଲି, "କ'ଣ ହେଲା ? କ'ଣ ଆଣିଛ ?" ସନ୍ନ୍ୟାସୀ ପକେଟରୁ ଦୁଇଟି 'ହେମୋଗ୍ଲୋବିନ୍' ପରି ଔଷଧ ଟନିକ୍ ବୋତଲ କାଢ଼ି ଗୌରବଙ୍କୁ ଦେଲେ। ମତେ ଦେଖି ହସିଲେ। ମୋର ପ୍ରଶ୍ନ ହେଲା, "ଏଇଟା କ'ଣ ?" ଦୁହେଁ ସମସ୍ୱରରେ ଖୁସିରେ କହିଲେ 'ତାଡ଼ି'। ମୋର ହଂସା ଉଡ଼ିଗଲା। ମୁଁ ସେତେଦିନଯାଏ ପଢ଼ାପଢ଼ିରୁ ଜାଣିଥିଲି, ତାଡ଼ି କ'ଣ ? କେବେ ଦେଖିନଥିଲି ବା ଶୁଂଘି ନଥିଲି। ଗୌରବ ଗୋଟିଏ ବୋତଲର ଠିପି ଖୋଲି ନିଜେ ଶୁଂଘିଲେ, ମୋତେ ଟିକିଏ ଶୁଂଘେଇ ଦେଲେ। ଆମ୍ବିଳ ତୋରାଣିର ଉତ୍କଟ ବାସ୍ନାରେ ମୋର ବାନ୍ତି ଉଠିଲା। ଗୌରବ ଓ ସନ୍ନ୍ୟାସୀ ମୋ ସାମନାରେ ବସି, ତାଟିଆରେ ତାଡ଼ି ଡାଳି ପକେଟ୍‌ରୁ ଲୁଣ ଲଙ୍କା ପରି ମସଲା ପୁଡ଼ିଆଟିଏ ଖୋଲି ପୁନର୍ବାର ମୋତେ ଅନୁରୋଧ କଲେ ପିଇବାକୁ। ମୁଁ କୌତୁହଳବଶତଃ ଠିପିରୁ ଦୁଇ ତିନି ଟୋପା ପାପୁଲିରେ ଡାଳି ଶୁଂଘିଲି। ଜିଭ ଲଗେଇ ଚାଖିଲି। କହିଲି, "ମୋତେ ଏଇଟା ପୋସାଇବ ନାହିଁ।" ଏତିକି କହି ମୁଁ ଉପର ବ୍ଲକ୍‌ର ମୋ କୋଠରୀକୁ ଚାଲି ଆସିଲି।

ସେଦିନ ରାତ୍ରିଭୋଜନ ପରେ, ରାତିରେ ଖଟରେ ଶୋଇରହି ମୁଁ ବନ୍ଧୁ ଧୀରେନ୍ଦ୍ରଙ୍କୁ ମୋର ସନ୍ଧ୍ୟାରେ ପ୍ରଥମ ଅନୁଭୂତିର ସମସ୍ତ ବିଷୟ ବର୍ଣ୍ଣନା କରିଥିଲି। ବନ୍ଧୁ ଧୀରେନ୍ଦ୍ର ନିଦୁଆ ଢଙ୍ଗରେ ଚୁପ୍‌ଚାପ୍ ଶୋଇ ମୋ କଥା ଶୁଣି ସାରିବା ପରେ ହଠାତ୍ ଖଡ଼ବଡ଼ ହୋଇ ନିଜ ଖଟରେ ବସିଲେ। କହିଲେ, "ୟୁ ଇଡ଼ିଅଟ୍, ମୂର୍ଖ। ତୁ ତାଡ଼ି ପିଉଛୁ। ପୁଣି ହଷ୍ଟେଲ୍ ଭିତରେ। ତୋଠାରୁ ପାଞ୍ଚ ଛଅ ବର୍ଷର ବଡ଼ ପିଲାଙ୍କ ସଂଗରେ ମିଶି, ତୁ ଯାହା ଇଚ୍ଛା ତା' କରିବୁ ? ଖବରଦାର, ଏ ସବୁ ମୁଁ ହେଡ୍‌ମାଷ୍ଟ୍ରଙ୍କୁ ରିପୋର୍ଟ କରିବି।" ମୁଁ ଯୁକ୍ତି କଲି, "ଆରେ, ସେମାନେ ମୋତେ ପାଠ ବୁଝେଇଦେବା ପାଇଁ ତାଙ୍କ ଜାଗାକୁ ଡାକିଲେ ! ମୁଁ ତ ହଷ୍ଟେଲ୍ ବାହାରକୁ ଯାଇନାହିଁ। ତା'ପରେ ସେମାନେ କେଉଁଠାରୁ ତାଡ଼ି ଆଣିଲେ ମୁଁ

ଜାଣିନାହିଁ । ମୋ' ଆଗରେ ଠିପି ଖୋଲିବାରୁ ମୁଁ ଶୁଂଘିଲି । ପାପୁଲିରେ ଆଣି ଟିକିଏ ଚାଖିଲି । ମୁଁ ତ ତାଡ଼ି ପିଇନାହିଁ ।'' ଜେନେରାଲ୍ ମନିଟର୍ ଧୀରେନ୍ଦ୍ର ରାଗିଯାଇ କହିଲେ, ''ଖବରଦାର, ଆଉ ଦିନେ କାହାଠାରୁ ବା ତୋର ସେ ସାଙ୍ଗମାନଙ୍କ ପାଖରୁ ତୋ ତାଡ଼ି ପିଇବା କଥା ଶୁଣିଲେ ସିଧା ହେଡ୍‌ମାଷ୍ଟ୍ରଙ୍କୁ ରିପୋର୍ଟ କରିଦେବି ।'' ମୁଁ ରାଗିଯାଇ କହିଲି ''ଭାରି ରିପୋର୍ଟ କରିବାବାଲା'' ଆରେ ମୁଁ କ'ଣ ହେଡ୍‌ମାଷ୍ଟ୍ରଙ୍କୁ କହିପାରିବିନି ମୋ' ଅଭିଜ୍ଞତା ବିଷୟରେ । ମୁଁ କେବେ ତାଡ଼ି ଦେଖିନଥିଲି । ତାଡ଼ିରେ ''ଆଲ୍‌କହଲ୍ କଣ୍ଟେଣ୍ଟ୍'' ଅଛି ନା ନାହିଁ ଜାଣିବା ପାଇଁ କେବଳ ଜିଭ ଆଗରେ ଲଗେଇ ଚାଖିଲି ମାତ୍ର । ଆରେ ତମର ଏଠି ତ ସାଇନ୍‌ସ ଲ୍ୟାବ୍ ନାହିଁ । ତମେ କ'ଣ ଜାଣିବ ଆଲ୍‌କହଲ୍ କ'ଣ ? ''ଆରେ, ବଡ଼ ବଡ଼ ସ୍କୁଲ୍‌ରେ ସାର୍‌ମାନେ ଛାତ୍ରମାନଙ୍କୁ ଆଲ୍‌କହଲ୍ ଚାଖିବାକୁ ଦିଅନ୍ତି ।'' ଧୀରେନ୍ଦ୍ର ଆଉ ସମ୍ଭାଳି ପାରିଲେ ନାହିଁ । ବସିବା ଜାଗାରୁ ଉଠିପଡ଼ି କହିଲେ, ''ଶଳା - ମୋତେ ଶୁଣୋଉଛୁ ତୋର ବଡ଼ ବଡ଼ ସ୍କୁଲ୍ କଥା । ଦେଖ, ମୁଁ କ'ଣ କରୁଛି ।'' ସେଦିନ ରାତିରେ ସେତିକିରେ ଯବନିକା ପତନ ହେଲା । ତା' ପରଦିନ ସକାଳୁ ଆମେ ସେ ସବୁ କଥା ଭୁଲିଯାଇଥିଲୁ । କଥାଟା ତା'ର ଓ ମୋ' ଭିତରେ ଗୁପ୍ତ ରହିଲା ।

ଖ୍ରୀଷ୍ଟମାସ ଛୁଟି ପରେ ବିଦ୍ୟାଳୟ ଖୋଲିଲା । ନୂଆ ବର୍ଷରେ ଅନ୍ତେଃବାସୀ ସମସ୍ତ ପିଲା ପହଞ୍ଚିଗଲେ, ପ୍ରାୟ ଦିନେ ଦୁଇଦନ ପରେ, ପ୍ରତିଷ୍ଠାତା ବ୍ରଜମୋହନ ପଣ୍ଡା ସ୍କୁଲ୍ ଚାଲିଥିବା ସମୟରେ ଚାଲି ଚାଲି ସ୍କୁଲ୍ ଗେଟରେ ଭିତରକୁ ପଶିଲେ । କ୍ବଚିତ୍ ସେ ସ୍କୁଲ୍ ପରିଦର୍ଶନରେ ଆସନ୍ତି । ପିଲାମାନେ ସ୍କୁଲ୍‌ରେ ତାଙ୍କର ଉପସ୍ଥିତି ବେଳେ ସଂପୂର୍ଣ୍ଣ ନୀରବତା ପାଳନ କରିଥାନ୍ତି । ସେ ସିଧା ହେଡ୍‌ମାଷ୍ଟ୍ରଙ୍କ କୋଠରୀକୁ ପଶିଗଲେ । କିଛି ସମୟ ପରେ ଜେନେରାଲ୍ ମନିଟର୍ ଧୀରେନ୍ଦ୍ରନାଥ ପାଢ଼ୀଙ୍କୁ ତଲବ କରାଗଲା । ପ୍ରାୟ ଅଧଘଣ୍ଟାଏ ଯାଏଁ ସଂପୂର୍ଣ୍ଣ ନୀରବତା । ଘଣ୍ଟାଏ ପରେ ପ୍ରତିଷ୍ଠାତା ବ୍ରଜମୋହନ ବାବୁ ପ୍ରଥମେ ଏକା ହେଡ୍‌ମାଷ୍ଟ୍ରଙ୍କ କୋଠରୀରୁ ବାହାରି ଚାଲି ଚାଲି, ଗେଟ୍ ପାରି ହୋଇ ଗାଁ ରାସ୍ତା ଧରିଲେ । ସ୍କୁଲ୍‌ର ଛୁଟି ଘଣ୍ଟି ବାଜିବା ଯାଏ କିନ୍ତୁ ଜେନେରାଲ୍ ମନିଟର୍ ହେଡ୍‌ମାଷ୍ଟ୍ରଙ୍କ ସହିତ ମନ୍ତ୍ରଣା କରୁଥିଲେ । ସ୍କୁଲ୍ ଛୁଟି ପରେ ସବୁପିଲାଙ୍କ ଗହଳି ଭିତରେ, ମୁଁ ବନ୍ଧୁ ଧୀରେନ୍ଦ୍ରଙ୍କ ଅପେକ୍ଷାରେ ଆମ କୋଠରୀରେ ବସି ରହିଲି । ସେ କିଛି ସମୟ ପରେ ଆସିଲେ । ମୋତେ ଦେଖି ଟିକିଏ ତାଚ୍ଛଲ୍ୟ ହସ ହସିଲେ । ତା'ପରେ ଛାତ୍ରାବାସ ବାହାରକୁ

ଆମେ ଟିକିଏ ବୁଲିବାକୁ ଚାଲିଗଲୁ । ବାଟରେ ମୁଢ଼ି ଓ ଚିନାବାଦାମ କିଣି ଖାଇଖାଇ ଖେଳପଡ଼ିଆ ଆଡ଼କୁ ଗଲୁ । ସେ ବେଶୀ କଥାବାର୍ତ୍ତା କରୁନଥିଲେ । ବେଳେବେଳେ ଏକ ସୂକ୍ଷ୍ମ ହାସ୍ୟ ରେଖା ତାଙ୍କ ମୁହଁରେ ପ୍ରତିଫଳିତ ହେଉଥିଲା । ମୁଁ ଏହାର ରହସ୍ୟ ଉଦ୍‌ଘାଟନ କରିବାକୁ ଚାହିଁଲେ ମଧ୍ୟ ସେ କିଛି କହିଲେ ନାହିଁ । ସେ ଦିନ ସନ୍ଧ୍ୟାରେ ମୁଁ ଏକା କୋଠରୀରେ ରହିଲି । ସେ ତାଙ୍କର ମନିଟରିଂ କାର୍ଯ୍ୟ ପାଇଁ ରାତ୍ରିଭୋଜନ ସମୟ ଯାଏ କୋଠରୀକୁ ଫେରିଲେ ନାହିଁ । ରାତିରେ ଲଣ୍ଠନ ଲିଭେଇ ସାରି ଶୋଇବା ବେଳେ ସେ କହିଲେ, "ଆଜି ବ୍ରଜମୋହନ ବାବୁ କାହିଁକି ଆସିଥିଲେ ଜାଣିଛୁ ?" ମୁଁ କହିଲି, "ମୋର କ'ଣ ଦରକାର ?" ତାଙ୍କର ତାଚ୍ଛଲ୍ୟପୂର୍ଣ୍ଣ ଉତ୍ତର ହେଲା, "ଦରକାର । ଦରକାର । ତୋର ଜାଣିବା ଦରକାର । ସେ ଅଭିଯୋଗ ନେଇ ଆସିଥିଲେ । ଛାତ୍ରାବାସର ବହୁତ ପିଲା ତାଡ଼ି ପିଇବାରେ ଅଭ୍ୟସ୍ତ ଅଛନ୍ତି । ସେମାନେ ସବୁ କିଏ ତାହାର ତଦନ୍ତ କରିବାକୁ ସେ ହେଡ୍‌ମାଷ୍ଟ୍ରଙ୍କୁ କହିବାକୁ ଆସିଥିଲେ । ଆଉ ସେ ଦାୟିତ୍ୱ ମୋତେ ଦିଆଯାଇଛି । ମୁଁ ଦିନେ ଦୁଇ ଦିନ ଭିତରେ ସବୁ ଅନ୍ତେବାସୀ ପିଲାଙ୍କ ନାଁ ଯୋଗାଡ଼ କରି ସାର୍‌ଙ୍କୁ ଦେବି ।" ମୁଁ ଚୁପ୍ ହୋଇ ରହିଲି । କିଛି ସମୟ ପରେ ସେ କହିଲେ, "ଏ ଯାଏଁ, ମୁଁ କେବଳ ତୋ' ମୁହଁରୁ 'କନ୍‌ଫେସନ୍' ଶୁଣିଛି । ବାକି ସମସ୍ତଙ୍କର ଇନଭଲଭମେଣ୍ଟ ଜାଣିବା ପରେ ନାମ ତାଲିକା ତିଆରି କରିବି ।" ମୁଁ ପୁଣିଥରେ ଯୋର ଦେଇ କହିଲି ସେଇଟା ମୋର 'କନ୍‌ଫେସନ୍' ନୁହେଁ ।" "ତୋର କନ୍‌ଫେସନ୍ ନହେଲେ କ'ଣ ହେବ ? ଆମ କ୍ଲାସ୍‌ର ଆଠ ଜଣ ଏଥିରେ 'ଇନ୍‌ଭଲଭଡ଼' । ଗୌରବ ଓ ସନ୍ନ୍ୟାସୀ ମୋତେ ସେମାନଙ୍କ ନାଁ ଦେଇ ସାରିଛନ୍ତି । ପ୍ରାୟ ମାସେ ହେବେ ବିଭିନ୍ନ ସମୟରେ ଅଷ୍ଟମ, ନବମ, ଦଶମ ଶ୍ରେଣୀର ପିଲା ମଧ୍ୟ ତାଡ଼ି ପିଆରେ ସଂପୃକ୍ତ । କାଲି ସନ୍ଧ୍ୟା ସୁଦ୍ଧା ମୋତେ ସମସ୍ତଙ୍କ ନାଁ ମିଳିଯିବ ।" ମୋ ମୁଣ୍ଡରୁ ପିଠି ଦେଇ ଅଣ୍ଟାଯାଏ ଗୋଟାଏ ଶୀତଳ ଶୀହରଣ ଖେଳିଗଲା । ମୁଁ ଖଟରେ ଉଠି ବସିଲି । କହିଲି, "ଦେଖ, ମୋତେ ତୁ ସେମାନଙ୍କ ଭିତରେ ପୁରାନା । ମୁଁ ସଂପୂର୍ଣ୍ଣ ନିର୍ଦ୍ଦୋଷ ।" ଜେନେରାଲ୍ ମନିଟର୍ ଗୋଟାଏ କ୍ରୂର ହସ ହସି କହିଲେ, "ହେଡ୍‌ମାଷ୍ଟ୍ରଙ୍କ ଆଗରେ ତୁ ତୋର ନିର୍ଦ୍ଦୋଷ ପଣର ପ୍ରମାଣ ଦେବୁ ।" ମୁଁ ଚୁପ୍ ରହିଲି ।

ତହିଁ ଆରଦିନ ଦଶଟା ସୁଦ୍ଧା, ଧୀରେ ଧୀରେ ଛାତ୍ରାବାସର ପ୍ରତ୍ୟେକ କୋଠରୀରେ ଗୋଟିଏ ଚାପା ଗୁଞ୍ଜରଣ । ଜେନେରାଲ୍ ମନିଟର୍ ବୁଲି ବୁଲି

ପ୍ରତ୍ୟେକ ଶ୍ରେଣୀର ପିଲାଙ୍କ ନାଁ ଓ ସେମାନଙ୍କ ଗତିବିଧିସବୁକୁ 'କନ୍‌ଫର୍ମ' କରିନେଲେ। ସାଢ଼େଦଶଟା ବେଳେ ଆମ ଏକାଦଶ ଶ୍ରେଣୀରେ ମୁଁ ବସିଥିବା ଜାଗାରେ ଆସି ଗୋଟିଏ ଚାଳିଶ ଜଣିଆ ନାମ ତାଲିକା ମୋ ଆଗରେ ଆଣି ଦେଖାଇଲେ, କହିଲେ, "ତୋ' ନାଁ ଟା ଏଥିରେ ଲେଖିନାହିଁ। ତୁ ପରା କହୁଛୁ ତୁ ନିର୍ଦ୍ଦୋଷ। ତେବେ ଗୌରବ ଓ ସନ୍ନ୍ୟାସୀ ତୋ' ନାଁ କହିଲେ କାହିଁକି ?" ମୋର ସେଇ ଏକା ଜିଦ୍, "ମୁଁ ତାଡ଼ି ପିଇ ନାହିଁ। ଜିଭରେ ଟିକିଏ ଚାଖିଛି କେବଳ।" ଜେନେରାଲ୍ ମନିଟର କହିଲେ, "ତା' ମାନେ ତୋ ନାଁ ଟା ସେମାନେ ଦେଲେ ତୁ ହେଡ୍‌ମାଷ୍ଟ୍ରଙ୍କୁ ବୁଝେଇ ପାରିବୁ ?" ମୁଁ ଜିଦ୍‌ରେ କହିଲି- 'ହଁ'। ବନ୍ଧୁ ଧୀରେନ୍ଦ୍ର ତା'ପରେ ମୋ ପାଖକୁ ଆସିଲେ ନାହିଁ। କ୍ଲାସ୍ ଚାଲିଥାଏ। ସ୍କୁଲ୍ ଛୁଟି ହେବା ପୂର୍ବରୁ ସେ ମୋତେ ପ୍ରାୟ ଚାଳିଶଜଣ ଅନ୍ତେଃବାସୀଙ୍କର ଶ୍ରେଣୀ ଓ୍ବାରି ନାଁ ଲେଖା କାଗଜ ଖଣ୍ଡେ ଦେଖାଇଲେ। ସବା ଶେଷରେ ଏକାଦଶ ଶ୍ରେଣୀରେ ନାମ ତାଲିକାରେ ମୋ' ନାଁ ଟି ଲେଖିଲେ। ତାଲିକାଟି ହେଡ୍‌ମାଷ୍ଟ୍ରଙ୍କ ଅଫିସ୍‌ରେ ଦାଖଲ ହେଲା। ଏ ବିଷୟ ବୋଧହୁଏ ବନ୍ଧୁ ଧୀରେନ୍ଦ୍ର ଓ ମୋ ବ୍ୟତୀତ ସ୍କୁଲ୍‌ର ଅନ୍ୟ କୌଣସି ଛାତ୍ର ଜାଣିନଥିଲେ। ତହିଁ ଆରଦିନ ସକାଳ ପଢ଼ା। ପ୍ରାର୍ଥନା ପରେ ସବୁ ପିଲା ଯେ ଯାହାର ଶ୍ରେଣୀ ଭିତରେ ବସି ରହିଲେ। ଶିକ୍ଷକମାନେ ଆସି ପଢ଼ାଇବା କାର୍ଯ୍ୟ ଆରମ୍ଭ କଲେ। ପ୍ରାୟ ନଅଟା ବେଳେ ସ୍କୁଲ୍ ପିଅନ୍ ନୋଟିସ୍ ଖାତା ଧରି ସବୁ ଶ୍ରେଣୀରେ ଶିକ୍ଷକମାନଙ୍କ ଜରିଆରେ ପଢ଼େଇଲା। ସମସ୍ତ ପିଲାମାନଙ୍କୁ କେତେକ ଅନ୍ତେଃବାସୀ କିପରି ସ୍କୁଲ୍ ଓ ଛାତ୍ରବାସର ନିୟମ ଭଙ୍ଗ କରି, ଦଳ ଗଠନ କରି, ଆଖପାଖ ଗାଁରୁ ନିଶାଦ୍ରବ୍ୟ ଆଣି ବିଦ୍ୟାଳୟର ସମ୍ମାନରେ ଆଞ୍ଚ ଆଣିଛନ୍ତି ତାହାର ବର୍ଣ୍ଣନା ଥିଲା ନୋଟିସରେ। ଶେଷରେ, ଏ ଅନ୍ୟାୟ ଓ ଅଶିକ୍ଷିତ ବ୍ୟବହାର ସେମାନଙ୍କୁ ଦୋଷୀ ସାବ୍ୟସ୍ତ କରୁଛି। ତେଣୁ ସେମାନେ ଦଣ୍ଡ ପାଇବା ପାଇଁ ଉପଯୁକ୍ତ। ଏ ଦଣ୍ଡ ହେଡ୍‌ମାଷ୍ଟ୍ରେ ନିଜେ ପ୍ରତ୍ୟେକ ପିଲାଙ୍କୁ ନିଜ ନିଜ କ୍ଲାସ୍‌ରେ ଦେବେ। ସେଥିପାଇଁ ଶନିବାର ଦିନ ବାରଟା ପର୍ଯ୍ୟନ୍ତ ପ୍ରତ୍ୟେକ ଛାତ୍ର ଯେ ଯାହାର ଶ୍ରେଣୀରେ ବସି ରହିବେ। ସେମାନଙ୍କୁ ବାହାରକୁ ଆସିବାକୁ ଦିଆଯିବ ନାହିଁ। ପ୍ରତ୍ୟେକ ପିରିଅଡ୍ ଘଣ୍ଟା ବାଜୁଥିବ। ସମସ୍ତ ପିଲା ଦଣ୍ଡ ଭୋଗ କରି ନସାରିବା ପର୍ଯ୍ୟନ୍ତ ସ୍କୁଲ୍‌ର ଛୁଟି ଘଣ୍ଟା ବାଜିବ ନାହିଁ। ପ୍ରତ୍ୟେକ ଶିକ୍ଷକ ସବୁ ସମୟରେ କ୍ଲାସ୍‌ରେ ଉପସ୍ଥିତ ରହିବେ। ଏହାର ଏକକିତା ନକଲ ବିଦ୍ୟାଳୟର ମୁଖ୍ୟ ନୋଟିସ୍ ବୋର୍ଡରେ ମାରି ଦିଆଗଲା।

ନଅଟାରୁ ଦଶଟା ପର୍ଯ୍ୟନ୍ତ ସ୍କୁଲ୍‌ରେ ନୀରବତା ଘୋଟି ଗଲା । ଶିକ୍ଷକମାନେ ଧୀର ଗଳାରେ ପଢ଼ାଉଥାନ୍ତି । ପ୍ରାୟ ଦଶଟା ସମୟରେ ପିଅନ ହାତରେ ପ୍ରାୟ ପନ୍ଦର/ କୋଡ଼ିଏଟି କନିଅର ଛାଟ । ହେଡ୍‌ମାଷ୍ଟରଙ୍କ ଅଫିସ୍ ଆଗରେ ପିଅନ୍ କେତୋଟି କନିଅର ଛାଟ କୋଳରେ ଛୋଟ ଛୁଆଙ୍କୁ ଧରିଲା ପରି ଧରି ସାର୍‌ଙ୍କ ପଛେ ପଛେ ଚାଲିଲେ । ହେଡ୍‌ମାଷ୍ଟେ ପ୍ରଥମେ ଅଷ୍ଟମ ଶ୍ରେଣୀରେ ପଶିଲେ । ସେଠି ପ୍ରାୟ ଆଠ ଦଶ ଜଣ ଛାତ୍ର ଦୋଷୀ ଥିଲେ । ନବମ ଶ୍ରେଣୀରେ ଏଗାର ଜଣ । ଦଶମରେ ତେର ଜଣ ଓ ଏକାଦଶରେ ନଅଜଣ । ଗୋଟିଏ ଗୋଟିଏ ପିଲାଙ୍କ ନାମ ଶ୍ରେଣୀ ଶିକ୍ଷକ ଉଚ୍ଚାରଣ କରିବା ସଂଗେ ସଂଗେ ଛାତ୍ରଙ୍କୁ ପଛ କବାଟ ପଟେ ଶିକ୍ଷକ ପଶିବା କବାଟ ଦେଇ ଶ୍ରେଣୀଗୃହର ଟେବୁଲ୍ ପାଖକୁ ଯିବାକୁ ପଡୁଥିଲା । ଦୁଇଚ଼ାରି ଧାଡ଼ି ଭର୍ତ୍ସନା ପରେ ହାତରେ ଧରିଥିବା ଛାଟରେ ତଳଗୋଡ଼ରୁ ପିଠି ପର୍ଯ୍ୟନ୍ତ କ୍ଷୀପ୍ରଗତିରେ ହେଡ୍‌ମାଷ୍ଟେ ତାଙ୍କର ସମସ୍ତ ଶକ୍ତି ଲଗାଇ ପିଟିଦେଇ ଯାଉଥିଲେ । ପିଲାଙ୍କ କାକୁତି ମିନତି, ଛଟପଟ ହେବାର କୌଣସି ପ୍ରଭାବ ତାଙ୍କ ଉପରେ ପଡୁନଥିଲା । ଶ୍ରେଣୀର ସମସ୍ତ ଛାତ୍ର ଯେ ଯାହା ସ୍ଥାନରେ ବସି ଏ ଦୃଶ୍ୟ ଦେଖୁଥିଲେ । ସବୁ ପିଲା ଦଣ୍ଡ ଭୋଗ କରିସାରିଲା ପରେ, ସଂପୂର୍ଣ୍ଣ ହାଲିଆ ହୋଇପଡୁଥିବା ହେଡ୍‌ମାଷ୍ଟରଙ୍କୁ ଆଶୀଷବାଣୀ ଥିଲା "ଆମେ ନ କହିବା ପର୍ଯ୍ୟନ୍ତ କେହି କ୍ଲାସ୍‌ରୁ ବାହାରକୁ ଯିବେ ନାହିଁ । ଆମେ ତାଙ୍କ ମାଡ଼ ଜନିତ କ୍ଷତର ଚିକିତ୍ସା କରାଇବୁ ।" ଅଷ୍ଟମ ପରେ ନବମ । ସ୍ୱଷ୍ଟ ଭାବରେ ନ ହେଲେ ମଧ୍ୟ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଏ ବିକଳ ପ୍ରାର୍ଥନା, ଆର୍ତ୍ତନାଦ ଓ ବେତ୍ରାଘାତର ଶବ୍ଦ ପହଞ୍ଚିପାରୁଥିଲା । ଆମେ ଶ୍ରେଣୀ ଭିତରେ କେବଳ ଚୁପ୍ ହୋଇ ବସି ରହିଥିଲୁ । ସଂସ୍କୃତ ସାର୍ କାଳିଦାସଙ୍କ ଶ୍ଳୋକ ବୁଝାଉଥିଲେ । ମୋ ମନ ଭିତରେ ମୁଁ କଳ୍ପନା କରୁଥିଲି, ମୁଁ କିପରି କବାଟ ପାଖରୁ ମୋର ନିର୍ଦ୍ଦୋଷପଣ ବିଷୟରେ ହେଡ୍‌ମାଷ୍ଟରଙ୍କୁ କହିବି । କନିଅର ଛାଟ ମାଡ଼ ଶବ୍ଦ ନିକଟତର ହେଉଥାଏ । ଚିତ୍କାର, ବିକଳ ପ୍ରାର୍ଥନାର ପ୍ରକାରରୁ କମ୍ ବୟସର ଛାତ୍ର ଓ ବୟସ୍କ ଛାତ୍ରଙ୍କ ମଧ୍ୟରେ ପାର୍ଥକ୍ୟ ଜଣାପଡୁଥିଲା । ବଡ଼ମାନେ ପ୍ରାୟ କିଛି ଉଚ୍ଚାରଣ କରୁ ନଥିଲେ । ଛୋଟମାନେ ବେଶୀ ଚିତ୍କାର କରୁଥିଲେ । କିନ୍ତୁ ସବୁଠାରୁ ବେଶୀ ଜଣାପଡୁଥିଲା ହେଡ୍‌ମାଷ୍ଟେ ସେନ୍‌ଗୁପ୍ତ ବାବୁଙ୍କର ଅନ୍ତରର କୋହ ଓ କାଠୁରିଆ କାଠହାଣିବା ବେଳେ ଯେଉଁ ଅସ୍ପଷ୍ଟ 'ସିଃ' ଓ 'ହୁଃ' ଶବ୍ଦ । ସେ ସଂପୂର୍ଣ୍ଣ ହାଲିଆ ହୋଇ ସାରିଥିଲେ । ଆମେ ତାଙ୍କୁ ଦେଖି ପାରୁ ନଥିଲୁ । ମୁଁ ମୁଣ୍ଡପୋତି ଘଣ୍ଟାଏ କାଳ କ୍ଲାସ୍‌ର ଶେଷ ଧାଡ଼ିରେ ମୋ ଡେସ୍କରେ ବସିରହିଲି ।

ଆମ ଶ୍ରେଣୀକୁ ସାର୍ ପଶିଲା ବେଳେ ଜଣା ପଡୁଥିଲେ ସଂପୂର୍ଣ୍ଣ କ୍ଳାନ୍ତ ଓ ନିଷ୍ପ୍ରଭ। ମୁଣ୍ଡର ବାଳ, ମୁଣ୍ଡ, ଦେହ, କପାଳ, ଧଳାପଞ୍ଝାବି ସବୁ ଝାଳରେ ବୁଡ଼ି ଓଦା ହୋଇଯାଇଛି। ହାତରେ କନିଅର ଛାଟ ଖଣ୍ଡ ଖଣ୍ଡ ହୋଇ ଫାଟି ଗଲେ ସେ ବାରଣ୍ଡା ତଳକୁ ଫୋପାଡ଼ି ଦେଇ ନୂଆ ଛାଟ ପାଇଁ ପିଅନ ଗୋବିନ୍ଦଙ୍କ ଆଡ଼କୁ ହାତ ବଢ଼ାଇ ଦେଉଥିଲେ। ତାଙ୍କର ମୁଣ୍ଡ ଟେକି ରଖିବାର ଶକ୍ତି ନଥିଲା। କିନ୍ତୁ ଶ୍ରେଣୀ ଶିକ୍ଷକ ପିଲାର ନାଁଟି ପଢ଼ିବା ପରେ ତାଙ୍କ ଆଖିରେ ଜଳି ଉଠୁଥିଲା ଗୋଟିଏ ଜ୍ୟୋତି। ଅତି ତୀକ୍ଷ୍ଣ ଭାବରେ ସେ ପିଲାକୁ ଦେଖୁଥିଲେ। ତାକୁ ଏକ ମର୍ମଭେଦୀ ଭର୍ତ୍ସନାର ଦୁଇଚାରି ଧାଡ଼ି କଥା କହିବା ସଂଗେ ସଂଗେ ଦୁଇ ହାତରେ ମୁଠେଇ ଧରିଥିବା ଛାଟଟିକୁ ସେ କୁରାଢ଼ି ସଦୃଶ ପ୍ରହାର କରୁଥିଲେ ପିଲାର ପଛପଟେ ଓ ପିଠିପଟେ। ଯେ ହାତବଢ଼େଇ ମାଡ଼ରୁ ବଞ୍ଚିବାକୁ ଚାହୁଁଥିଲେ ତା'ର ବେଶୀ କ୍ଷତି ହେଉଥିଲା। ଆମ ଶ୍ରେଣୀର ଆଠ ଜଣଙ୍କ ମାଡ଼ରେ ଅନେକ ପ୍ରଭେଦ ଥିଲା। ବୟସ୍କ, ବିବାହିତ ଛାତ୍ରଙ୍କୁ ତିରିଶ ଚାଳିଶ ଛାଟ ପଡ଼ିବା ତୁଳନାରେ ଅନ୍ୟମାନଙ୍କୁ ଆଠ ଦଶ ଛାଟ ମିଳୁଥିଲା। ସାର୍‌ଙ୍କ ଭର୍ତ୍ସନା ଅନେକ ପ୍ରକାରର। ପିଲାର ମୁହଁକୁ ଦେଖିବା ସଂଗେ କାହାକୁ କହୁଥିଲେ- "ତୁମେ ପରା ବାହା ହୋଇ ବାପ ହେଲଣି", "ତୁମେ ପରା ବେଷ୍ଟ ଫୁଟ୍‌ବଲ ପ୍ଲେୟାର", "ତୁମ ବାପା କ'ଣ ଏଥିପାଇଁ ଲରମ୍ବା ସ୍କୁଲ୍‌ରେ ନାଁ ଲେଖାଇଛନ୍ତି", "ତୁମେ ପରା ଘରର ବଡ଼ ପୁଅ" "ତୁମର ଚାରିଟା ଭଉଣୀ, ତମେ ଗୋଟିଏ ଭାଇ", ଇତ୍ୟାଦି। ଏ ପ୍ରଶ୍ନମାନଙ୍କର ଉତ୍ତର ଦେବା ପୂର୍ବରୁ ସେ ହାତ ଚଲାଇ ଦେଉଥିଲେ। ସାତ ଜଣ ସହପାଠୀଙ୍କ ମାଡ଼ ପରେ ମୋ ନାମ ଉଚ୍ଚାରଣ ହେଲା। ମୁଁ ପଛ କବାଟରୁ ସାମନା କବାଟ ପାଖରେ ପହଞ୍ଚିବା କ୍ଷଣି, ମୋ ପାଇଁ ପ୍ରଶ୍ନଥିଲା, "ତୁମେ ପରା ବ୍ରାହ୍ମଣ ପିଲା ? ଏପରି ଚଣ୍ଡାଳ ପରି କାମ କଲ କାହିଁକି ?" ତା'ପରେ ଛାଟର ଶବ୍ଦ। ବୋଧହୁଏ ଆଠଥର ସେ ମୋ ଗୋଡ଼ ଓ ପିଠିକୁ ଲକ୍ଷ୍ୟ କରି ଦୁଇହାତରେ ଛାଟ ଚାଳନା କରିଛନ୍ତି। ତା'ପରେ ଝଡ଼ର ଅବସାନ।

କ୍ଳାନ୍ତ, ଦୁଃଖିତ ହେଡ୍‌ମାଷ୍ଟେ ଆମର ଶ୍ରେଣୀ ଟେବୁଲ୍ ଉପରେ ଦୁଇ ହାତ ରଖି ଥକା ମାରିଲେ। ଦୁଇହାତରେ ମୁଣ୍ଡବାଳକୁ ସାଉଁଳି ନେଲେ। ହାତର ବାଡ଼ିଟିକୁ ଫୋପାଡ଼ିଦେଇ ପିଅନକୁ ଚାଲିଯିବାକୁ କହିଲେ। ତା'ପରେ କହିଲେ "ଆମକୁ ବହୁତ ଲଜ୍ୟା ଲାଗୁଛି। ଆମ ସ୍କୁଲ୍‌ଛାତ୍ର ଏତେ ତଳକୁ ଖସିଯିବେ, ଆମର ଧାରଣା ନ ଥିଲା। ସେ ଯାହାହେଉ, ଯେଉଁମାନେ ଦଣ୍ଡ ପାଇ ଖଣ୍ଡିଆ

ଖାବରା ହେଇଛନ୍ତି, ପିଠି ଫାଟିଯାଇ ରକ୍ତ ବାହାରୁଛି, ସେମାନେ ଆମ ଦାଣ୍ଡଘରକୁ ଚାଲନ୍ତୁ । ଆମେ ସେମାନଙ୍କୁ ଗରମ ପାଣି ସେକ ଦେଇ, ଟିଂକଚ୍ଚର ଆଓଡ଼ିନ୍ ଲଗେଇ ଦେବୁ । ମନେ ରଖ ଏମିତି ଅନ୍ୟାୟ କାମ ଆଉ କେବେ କରିବ ନାହିଁ । ନିଜର ସମ୍ମାନ ହରାଇବ ନାହିଁ । ବାପା ମା'ଙ୍କ ମନରେ କଷ୍ଟ ଦେବ ନାହିଁ ।'' ଏତିକି କହି ସେ ଧୀରେ ଧୀରେ ଆମ ଶ୍ରେଣୀରୁ ବାହାରିଗଲେ । ପ୍ରାୟ ଦଶ ମିନିଟ୍ ପରେ ସ୍କୁଲ୍‌ର ଛୁଟି ଘଣ୍ଟା ବାଜିଲା । କ୍ଲାସ୍‌ର ସାର୍‌ମାନେ ଚାଲିଗଲେ । ମାଡ଼ଖିଆ ପିଲାଙ୍କୁ ଶ୍ରେଣୀର ପିଲାମାନେ ଘେରିଯାଇ କେଉଁଠି କେମିତି ଆଘାତ ଲାଗିଛି, ସେ ବିଷୟରେ ସମବେଦନା ଜଣାଇଲେ । ମୁଁ କିନ୍ତୁ ଗମ୍ଭୀର ହୋଇ ଶ୍ରେଣୀରୁ ବାହାରିଯାଇ ମୋ' କୋଠରୀରେ ବସି ରହିଲି । ବନ୍ଧୁ ଧୀରେନ୍ଦ୍ର ଆସି ମୋ' ପାଖରେ ବସିଲେ । ଆଶ୍ଚର୍ଯ୍ୟର କଥା ମୋତେ ତାଙ୍କ ଉପରେ ରାଗ ଲାଗିଲା ନାହିଁ । ମୋର ଏକମାତ୍ର ଦୁଃଖ ଥିଲା ଲରମ୍ବା ସ୍କୁଲ୍‌ରେ ଚାରିବର୍ଷ ରହିବା ସମୟ ଭିତରେ ମୋର ଏକାଦଶ ଶ୍ରେଣୀର ଶେଷ ଭାଗରେ ଏ ପ୍ରଥମ ଓ ଶେଷ ଦଣ୍ଡଭୋଗ କରିବାକୁ ମୋତେ ପଡ଼ିଲା ! ଏହା ସତେ କ'ଣ ଗୋଟାଏ ଦଣ୍ଡ ଥିଲା - ନାଁ ଶିକ୍ଷା !

ଅନେକ ମାଡ଼ଖିଆ ପିଲା, ହେଡ୍‌ମାଷ୍ଟରଙ୍କ ଦାଣ୍ଡଘରେ ଯାଇ ପିଠି, ହାତ, ଗୋଡ଼ ଫାଟିଯାଇ ରକ୍ତ ବୋହିବାର ଚିକିତ୍ସା ହେଡ୍‌ମାଷ୍ଟ୍ରେ ଓ ତାଙ୍କର ପତ୍ନୀଙ୍କ ହାତରେ କରାଇ ନେଲେ । ମୁଁ ସେମିତି କ୍ଷତାକ୍ତ ହୋଇ ନଥିଲି । ଅନେକ ସମୟ ପରେ ବନ୍ଧୁ ଧୀରେନ୍ଦ୍ର ପଚ଼ାରିଲେ, ''ତୁ ମୋତେ ନାଁ ଦେବା ପାଇଁ ବାଧ୍ୟ କାହିଁକି କଲୁ ?'' ମୋର ଉତ୍ତର ଥିଲା, ''ମୁଁ ଏବେବି ପ୍ରଥମରୁ ଯାହା କହିଥିଲି, ତାହାହିଁ କହିବି । ମୁଁ ତାଡ଼ି ପିଇ ନାହିଁ । ତୁ ତୋର କର୍ତ୍ତବ୍ୟ କଲୁ । ମୁଁ ମୋର କର୍ତ୍ତବ୍ୟ କଲି । ହେଡ୍‌ମାଷ୍ଟ୍ରେ ମଧ୍ୟ ତାଙ୍କର କର୍ତ୍ତବ୍ୟ କଲେ ।'' ଏ କଥା ମୋର ସାରାଜୀବନର ଗତିପଥକୁ ବଦଳାଇ ଦେଲା । ଚାରିମାସପରେ ଆମେ ସମସ୍ତେ ଲରମ୍ବାରୁ ବିଦାୟ ନେଲୁ । ଯେ ଯାହାର ଭାଗ୍ୟକୁ ଆଦରି ପାଠ ପଢ଼ିଲୁ, ଚାକିରି କଲୁ , ବେଉସା କଲୁ । ସମସ୍ତ ଛାତ୍ରଙ୍କ ଭିତରୁ ବୋଧହୁଏ ମୋ ଜୀବନରେ ସବୁଠାରୁ ବେଶୀ ବିଡ଼ମ୍ବନା ଲେଖାଥିଲା । ଆଜିକୁ ପ୍ରାୟ ଷାଠିଏ ବର୍ଷ ମୋର ବ୍ୟକ୍ତିଗତ ସଂଘର୍ଷମୟ ଜୀବନ ଭିତରେ ମୁଁ ସାର୍‌ଙ୍କଠାରୁ ଯେଉଁ କର୍ତ୍ତବ୍ୟ ଆପଣେଇ ନେବା ଶିଖିଲି, ତାହାହିଁ ମୋତେ ସମାଜରେ ପ୍ରତିଷ୍ଠା ଦେଇଛି । ମୁଁ ସାର୍‌ଙ୍କ ପରି କେବେ ହୋଇପାରିବ ନାହିଁ । କିନ୍ତୁ ମୋର ଲରମ୍ବାର ଅଧ୍ୟକ୍ଷତା କେବଳ ସାର୍‌ଙ୍କ ଦାନ ।

**ସ୍ମୃତିରେ ଶିକ୍ଷକ**

ଜୀବନର ଗତିପଥରେ ଅନେକ ଆହ୍ବାନ ଭେଟିଛି । ସବୁକୁ ସାମନା କରିଛି । ନିଜର ବିବେକ ଅନୁସାରେ ତା'ର ସମାଧାନ କରିଛି । କେବେ ନିଜର ସ୍ୱାଭିମାନ ହରାଇ ନାହିଁ । ପଦବୀର ପଦମର୍ଯ୍ୟାଦା ହରାଇବାକୁ ଦେଇନାହିଁ ।

ଆନନ୍ଦର କଥା, ୧୯୬୮ ମସିହାର ଲରମ୍ବା ସ୍କୁଲ୍‌ର ହେଡ୍‌ମାଷ୍ଟ୍ରେ ଓ ଲରମ୍ବା କଲେଜର ପ୍ରଥମ ଅଧ୍ୟକ୍ଷ ଖଗେନ୍ଦ୍ରନାଥ ସେନ୍‌ଗୁପ୍ତ ହଜାର ହଜାର ପ୍ରିୟ ମେଧାବୀ ଛାତ୍ରମାନଙ୍କ ମଧ୍ୟରୁ ମୋତେ ହିଁ ବାଛିଲେ । ଲରମ୍ବା କଲେଜର ଅଧ୍ୟକ୍ଷ ଦାୟିତ୍ୱ ନେବା ପାଇଁ । ଏ ସମ୍ବାଦ ମୋତେ ଅତାବିରା ବ୍ଲକ୍ ଚେୟାରମ୍ୟାନ୍ ଓ ବ୍ୟବସାୟୀ ଧୀରେନ୍ଦ୍ର ନାଥ ପାଢ଼ୀଙ୍କ କରିଆରେ ମିଳିଥିଲା । ଏହାକୁ ମୁଁ ଗ୍ରହଣ କରିଛି ଦୀର୍ଘ ଚବିଶ ବର୍ଷ ପର୍ଯ୍ୟନ୍ତ । ସାର୍ ୧୯୮୭ ମସିହାରେ ଦେହତ୍ୟାଗ କଲେ । ପ୍ରିୟ ବନ୍ଧୁ ଧୀରେନ୍ଦ୍ର ମଧ୍ୟ ୧୯୯୪ରେ ଅକସ୍ମାତ୍ ଦେଖା ନଦେଇ ଚାଲିଗଲେ । କିନ୍ତୁ ଦୀର୍ଘ ପଚ଼ାଶ ବର୍ଷର ଘଟଣା ପ୍ରବାହରେ ଗୋଟିଏ କଥା ସ୍ପଷ୍ଟ ଭାବରେ ମୋତେ ଦେଖାଯାଉଛି ଯେ ଲରମ୍ବା ସ୍କୁଲ୍‌ର ହେଡ୍‌ମାଷ୍ଟ୍ରେ ସେନ୍‌ଗୁପ୍ତ ଆଜ୍ଞା ଏବେ ବି ମୋ ଭିତରେ ଓ ତାଙ୍କର ଅସଂଖ୍ୟ ଛାତ୍ରମାନଙ୍କ ଭିତରେ ବଞ୍ଚିରହିଛନ୍ତି । ସମସ୍ତ ଯୁଗ ପରିବର୍ତ୍ତନ ସତ୍ତ୍ୱେ ସେ ବଞ୍ଚି ରହିବେ । ମୋର ପୁଅ, ନାତିନାତୁଣୀମାନଙ୍କ ମଧ୍ୟରେ । ଏହାହିଁ ଏକ ଆଦର୍ଶ ଶିକ୍ଷକର ପରିଚ଼ୟ !



# ମଣିଷ ଗଢ଼ିବା କାରଖାନା; ମଣିଷ ଗଢ଼ିବା କାରିଗର

**ରବୀନ୍ଦ୍ର ପ୍ରସାଦ ପଣ୍ଡା**

ମୋ ବାପା ନିଜେ ହେଡ୍‌ମାଷ୍ଟର ହେଇଥିଲେ; ତାଙ୍କ ପାଖରେ କିନ୍ତୁ ପଢ଼ିନାହିଁ; ଯଦିଓ ବଡ଼ହୋଇ ବୁଝିଥିଲି ପାଠ ସିଏ ଜାଣିଥିଲେ ଭଲ। ଜମାରୁ ଭଲ ମଣିଷ ନୁହେଁ; କୋଉ ବାଟରେ ରୋଜଗାର ବେଶି ହେବ, ସେଇ ଦିଗକୁ ଥିଲା ନଜର; ଯେପରି ପାଠ୍ୟପୁସ୍ତକ ବିକିବା, ଟିଉସନ୍ କରିବା ଇତ୍ୟାଦି। ସ୍କୁଲ୍‌କୁ ଯୋଉ ଗରିବ ପିଲା ଆସୁଥିଲେ, ସେମାନଙ୍କ ପ୍ରତି ତାଙ୍କ ନିଘା କମ୍, ସାମାନ୍ୟ ଦୋଷ ଦେଖିଲେ ମାରଧର କରିବେ। ଅତଃପର, ଗୋଟିଏ ମାଇନର୍ ସ୍କୁଲ୍ ଓ ଦୁଇଟି ହାଇସ୍କୁଲ୍‌ରେ ପଢ଼ିଛି; ଶିକ୍ଷକ ଅଧିକାଂଶ ଥିଲେ ଯୁବକ, ମାତ୍ର ସବୁବେଳେ ଲାଗୁଥିଲା ଭଲ କିଛି ପାଇନାହାନ୍ତି ବୋଲି ବାଧ୍ୟହୋଇ ମାଷ୍ଟର ହୋଇଛନ୍ତି। ସେଥିପାଇଁ କ୍ରୋଧ ଓ ଅବହେଳା ହେଇଛି ନିତ୍ୟ ସଙ୍ଗୀ। ପିଲାଙ୍କ ପାଖରୁ ଦୂରତ୍ୱ ରଖି ଗମ୍ଭୀର ଭାବେ ଚଳପ୍ରଚଳ କରନ୍ତି, ସତେ ଯେମିତି ପିଲା ତାଙ୍କ ପ୍ରଜା। ଚାନ୍ଦବାଲିରେ ସୋମନାଥ ମହାରଣା ଏକେଲା ଆମ ସାଙ୍ଗରେ ମିଳାମିଶା କରୁଥିଲେ, ସିଏ ହୋଇଥିଲେ ମୋ. ଗୃହ ଶିକ୍ଷକ; କଲିକତାରୁ (ବୋଧହୁଏ ବଙ୍ଗବାସୀ କଲେଜରୁ) ଆଇଏସ୍‌ସି ପାସ୍ କରି ଆସିଥିଲେ; ବିଜ୍ଞାନ ପଢ଼ାନ୍ତି, କିନ୍ତୁ ଗୀତ ବି ଲେଖିପାରନ୍ତି, ମୃଦଙ୍ଗ ବଜାନ୍ତି, ହସ୍ତାକ୍ଷର ସୁନ୍ଦର, ନମ୍ର ସ୍ୱଭାବ। ପରେ ବୋର୍ଡସ୍କୁଲ୍‌ରେ ହେଡ୍‌ମାଷ୍ଟର ହୋଇଥିଲେ। ଟ୍ୟୁସନ୍ କରି ଢେର୍ ଟଙ୍କା ରୋଜଗାର କରିଛନ୍ତି। ମାଷ୍ଟର୍‌ମାନେ କିନ୍ତୁ ମୋତେ ବହୁତକଷ୍ଟ ଦେଇଛନ୍ତି, କାହିଁକି ନା, ପିଲାଙ୍କ ଭିତରେ ଥିଲି ନେତା ଆଉ ବେଢ଼ଙ୍ଗ ଦେଖିଲେ ସ୍କାଉଟ୍-ଠେଙ୍ଗା ଉଞ୍ଚାଇବା ଥିଲା ମୋ ଅଭ୍ୟାସ। ଏ ମାଷ୍ଟର ବେଶିଭାଗ ଫେଲ୍‌ଫାଲ୍ ହୋଇ ବାହାରୁ ଆସିଥାନ୍ତି, ମେସ୍‌ରେ ରହନ୍ତି, ହୋଟେଲ୍‌ରେ ଖାଆନ୍ତି, ଟିଉସନ୍ ଖୋଜନ୍ତି ଦିନରାତି। ଚାନ୍ଦବାଲି ପୁରୁଣା ବନ୍ଦର, ମାରୁଆଡ଼ି ବେପାରି ଜାଗାବର ଜାଗା, ଧାନମିଲ୍ ବି ଥିଲା ଛ'ଟା, କୁଲିଯାକସବୁ ସାନ୍ତାଳ ଯୁବତୀ, ତିନିଟା ଜାହାଜ ଆସେ, ଦାରିପଡ଼ା ଥାଏ ପାଖରେ। ସେହି ମାରୁଆଡ଼ି ଟୋକାଙ୍କୁ ଟିଉସନ୍ କରନ୍ତି ମାଷ୍ଟରମାନେ, ତାଙ୍କ ଭିତରୁ ଅନେକେ ପରେ ରାଷ୍ଟ୍ରପତିଙ୍କ ପୁରସ୍କାର

ମଧ୍ୟ ପାଇଛନ୍ତି । ଟିଉସନ୍ ହେଉଥିବା ପିଲାଙ୍କୁ ପ୍ରଶ୍ନ କହିଦିଅନ୍ତି, ସିଏ ହୁଅନ୍ତି ପରୀକ୍ଷାରେ ଫାଷ୍ଟ୍-ସେକେଣ୍ଡ୍ । ନବମଶ୍ରେଣୀ ବାର୍ଷିକ ପରୀକ୍ଷା ବେଳକୁ ମସୁଧା ହେଲା, ଏଥର ମାଷ୍ଟରଙ୍କ ମେସ୍‌ଘରେ ନିଆଁ ଲଗାଇଦେବା; ସେଇଠି ଆଚାରବୟମ ପାଖକୁ ବେଞ୍ଚ୍‌ଉପରେ ପରୀକ୍ଷାଖାତା ବିଡ଼ା ବନ୍ଧାହୋଇ ଥୁଆ ହୋଇଥାଏ । ଆଠ-ଦଶଜଣ ଅଗ୍ନି ସଂଯୋଗରେ ଅଂଶ ଗ୍ରହଣକରିବାକୁ ରାଜି ହେଲେ; ମାତ୍ର ସେଦିନ ପାଖରୁ ଚିରଦିନପାଇଁ ମୋ ଈଶ୍ୱରବିଶ୍ୱାସ ବି ଧୂଆଁ ହୋଇଗଲା । ଜାଗର ଅମାବାସ୍ୟାକୁ ସମସ୍ତଙ୍କୁ ଆରଡ଼ି ନେଇ ଆଖଣ୍ଡଳମଣିଙ୍କ ମୁଣ୍ଡଉପରେ ହାତରଖି ଶପଥ କରାଇଥିଲି, ପିଣ୍ଡରେ ପ୍ରାଣଥିବା ଯାଏଁ କାହାରି ନାଁ କହିଦେବେନାହିଁ । ଘର ପୋଡ଼ିଗଲା, ଖାତା ପୋଡ଼ିଗଲା, ମାଷ୍ଟରଙ୍କୁ ପ୍ରାଣରେ ମାରିଲୁ ନାହିଁ, ମାତ୍ର ବିଭୀଷଣ ଯାଇ ହେଡ୍‌ମାଷ୍ଟରଙ୍କୁ ନାଁ କହିଦେଲା । ଫେଲ୍ ହୋଇଥିଲା, ହେଡ୍‌ମାଷ୍ଟରଙ୍କ ଗୋଡ଼ତଳେ ପଡ଼ିଗଲା । ବିଚକ୍ଷଣ ଶିକ୍ଷକ ରବିନାରାୟଣ ଜେନା, ଗୋଟିଏ ସର୍ତ୍ତରେ କ୍ଲାସ୍‌ଉଠାଇ ଦେବାକୁ ରାଜି ହେଲେ; ଯଦି ଘରପୋଡ଼ାଙ୍କ ନାଁ କହିଦିଏ ! ତାଙ୍କ ପାଖରେ ସକାଳେ ପଢ଼େଁ, ମୋତେ କେବେ କିଛି ପଚାରି ନାହାନ୍ତି । ଆଦର୍ଶ-ଫାଦର୍ଶ ମୁଁ ବୁଝେନା, କିନ୍ତୁ ସେମିତି ଜଣେ ଶିକ୍ଷକ ଆଉ ଦେଖିନାହିଁ ।

ପ୍ରାୟ ଦଶବର୍ଷ ବିତିଯାଇଛି; ସେତେବେଳକୁ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ମୁଁ ଟ୍ରେସରି ଅଫିସର । ଦିନେ ଖଣ୍ଡିଏ ପୋଷ୍ଟକାର୍ଡ ଚିଠି ପାଇଲି; ବୁଝାପଡୁଛି ଲେଖିଲାବେଳେ ହାତ ଥରିଛି; ବାପାଙ୍କଠୁଁ ବୟସରେ ବଡ଼, ବାପା ର୍ୟାଭେନ୍‌ଶ କଲେଜରେ ଆଇ.ଏ. ପଢ଼ିଲାବେଳେ ସିଏ ବି.ଏ. ପଢୁଥିଲେ, ଏବଂ ତାଙ୍କ ସହପାଠୀ ଥିଲେ କନିକା ଟିକାୟତ୍ ଶୈଳେନ୍ଦ୍ରନାରାୟଣ ଭଞ୍ଜ । ମୁଁ ସ୍କୁଲ୍‌ଛାଡ଼ି ଚାଲିଯିବାପରେ ବାପା ବି ଚାନ୍ଦବାଲି ଛାଡ଼ି ଦେଇଥିଲେ । ତେଣୁ କୁଆଡ଼େ ଗଲି, କ'ଣ କଲି, କିଛିହେଲେ ଜାଣିବାକୁ ପାଇନାହାନ୍ତି; ଲୋକମୁଖରୁ ହାକିମ ହୋଇଛି ଶୁଣି ଗୌରବ ଅନୁଭବ କରୁଛନ୍ତି, ଯଦି କେବେ ଯାଇ ସାକ୍ଷାତକରେଁ ଆନନ୍ଦିତ ହେବେ । ମନେପଡ଼ିଲା, ସିଏ ଚାକିରି ଆରମ୍ଭ କରିଥିଲେ ଭଦ୍ରକ ହାଇସ୍କୁଲ୍‌ରେ; ମହତାବ୍ ତାଙ୍କୁ ହେଡ୍‌ମାଷ୍ଟର କରି ନେଇଗଲେ ଆଗରପଡ଼ା । ଶୈଳେନ୍ଦ୍ର ଭଞ୍ଜ କିନ୍ତୁ ତାଙ୍କୁ ନେଇଆସିଲେ ରାଜକନିକା, ଯେତେବେଳେ ରାଜା ସେଠି ହାଇସ୍କୁଲ୍ ବସାଇଲେ । କାଳକ୍ରମେ ହେଲେ ଆସିଷ୍ଟାଣ୍ଟ୍ ଦେୱାନ । ଚେହେରା, ପୋଷାକ, କଥାବାର୍ତ୍ତା ଚାଲିଚଳଣିରେ ସେ ଭବ୍ୟତା, ସେ ଆଭିଜାତ୍ୟ କ୍ୱଚିତ୍ ଦେଖାଯାଏ;

ରାଜାଙ୍କ ନିର୍ବାଚନ ଭୁଲ୍ ହୋଇନାହିଁ; ମାତ୍ର ମୁଣ୍ଡକୁ କୁଟିଲା ରାଜନୀତି, ଏକାବନ ସାଲ୍ ନିର୍ବାଚନରେ ସ୍ୱାଧୀନ ପ୍ରାର୍ଥୀ ହୋଇ ହାରିଗଲେ; ଏବଂ ସର୍ବସ୍ୱାନ୍ତ ହୋଇ ଚାନ୍ଦବାଲି ଆସିଥିଲେ ଫେର୍ ହେଡ୍‌ମାଷ୍ଟର ହୋଇ। ଆମକୁ ପଢ଼ାନ୍ତି ଇଂରାଜୀ ଆଉ ଇତିହାସ। ମାତ୍ର ତାଙ୍କ ବସାକୁ ଯାଇ ମୁଁ ପଢ଼େଁ ଖାଲି ଇଂରାଜୀ। ପହଞ୍ଚିବାକ୍ଷଣି ଆଗେ ଦେବେ ଉଖୁଡ଼ା ଆଉ ନଡ଼ିଆ, ଏକା ସାଙ୍ଗରେ ଖାଇବୁଁ। ତା'ପରେ ହିନ୍ଦୁସ୍ଥାନ୍ ଷ୍ଟାଣ୍ଡାଡ଼ ପଢ଼ିବାକୁ ଦେବେ, ବଡ଼ପାଟିରେ ପଢ଼ିବି, ଉଚ୍ଚାରଣ ଠିକ୍ କରିଦେବେ, ମାନେ ବତାଇ ଦେବେ। ତା'ପରେ ଯାହା ପଢ଼ିଲି ତା'ର ଓଡ଼ିଆ ଅନୁବାଦ। ସେତେବେଳେ ଜବାହାରଲାଲ୍‌ଙ୍କ Discovery of India ପଢୁଥାନ୍ତି, ନବମଶ୍ରେଣୀ ପିଲାଙ୍କୁ କହିବେ ଓଡ଼ିଆରେ ଅନୁବାଦ କରିବାକୁ। ତା'ପରେ, ଦୁନିଆଯାକର ଗପସପ, ସତେଅବା ଛାତ୍ର ତାଙ୍କ ସମସ୍କନ୍ଧ !

ଘର ଯିଏ ପୋଡ଼ିଥିଲେ ସମସ୍ତଙ୍କୁ ଟ୍ରାନ୍‌ସଫର୍ ସାର୍ଟିଫିକେଟ୍ ଦେଇ ବିଦା କରିଦେଲେ, ସମସ୍ତଙ୍କ ଚରିତ୍ର ଅତିଶୟ ସୁଶୀଳ ବୋଲି ମଧ୍ୟ ଲେଖିଦେଲେ; ମାତ୍ର ମୁଁ ଟେର୍‌ପାଇଲି ବାପା ଯେତେବେଳେ ହୋଷ୍ଟେଲ୍‌କୁ ଆସି ଡାକିନେଇଗଲେ, ସେଇ ରାତିରେ ତାଙ୍କରି ମଶାରିତଳେ ଶୋଇଲି; ହେଡ୍‌ମାଷ୍ଟ୍ରେ କୁଆଡ଼େ କହିଥିଲେ ମୁଁ ହୁଏତ ଜାହାଜ ଜେଟି ଉପରୁ ନଈକୁ ଡେଇଁ ପଡ଼ିପାରେଁ ! ତହିଁ ଉତାରୁ ଆସିଲି ଭଦ୍ରକ ହାଇସ୍କୁଲ୍‌କୁ। ହେଡ୍‌ମାଷ୍ଟର ସେଠି ସ୍ୱନାମଧନ୍ୟ ଉପେନ୍ଦ୍ର ପ୍ରସାଦ ମହାନ୍ତି, କବିଶେଖର ଚିନ୍ତାମଣି ମହାନ୍ତିଙ୍କ ଏକମାତ୍ର ପୁତ୍ର ଓ ସ୍ୱୟଂ କବି। କିନ୍ତୁ ଏପରି ଖେଚଡ଼ା ଲୋକ ଜୀବନରେ ଦେଖିଲିନାହିଁ। ପାଠ ଯା ପଢ଼ାନ୍ତି ଆମେ ଶୁଣିପାରୁନା ଭଲ, କାହିଁକି ନା, ଛାମୁଦାନ୍ତ କେତେଟା ପଡ଼ିଯାଇଥିଲା। ସେଥିରେ ପୁଣି ତେଜ କାହୁଁ କାହାଁତକ, ଧମକାଇ ଚମକାଇ କଥା କହନ୍ତି। ଜାଣିଥିଲେ ମୁଁ ଘରପୋଡ଼ିଛି, ଦୂରରେ ରଖନ୍ତି; ମୋର ତ କୋପେ ବର ! ଦିନେ କଟ୍ରିବିକାରରୁ କିଣିଆଣିଲି ଲାଉସା-ଙ୍କ How to be a good Communist; ସିଏ ଅକ୍ଷାଂଶ ଦ୍ରାଘିମା କଥା କହୁଥିଲାବେଳେ ପଛବେଞ୍ଚ୍‌ରେ ବସି ପୃଷ୍ଠା ଓଲଟାଉଛି। ନାକଉପରକୁ ଚଷମା ଟେକିଦେଇ ଧାଇଁଆସିଲେ, ଚିଲ ଭଳି ବହିଟାକୁ ଝାମ୍ପିନେଇ ଚାଲିଗଲେ ନିଜ ଟେବୁଲ୍ ପାଖକୁ। ମାତ୍ର କ୍ରୋଧ ପରିବର୍ତ୍ତେ କୁଞ୍ଚିତ ଚର୍ମ ହାଡୁଆ ମୁହଁରେ ଫୁଟିଉଠିଲା ତ୍ରାସ। ମନେପଡ଼ିଗଲା, ଚାନ୍ଦବାଲିରେ ରବିନାରାୟଣ ଜେନା ମୋ ପାଇଁ ମଗାଇ ଦେଇଥିଲେ ରେଭରେଣ୍ଡ୍ ଲାଲ୍‌ବିହାରୀ ଦେ'ଙ୍କ ବିଖ୍ୟାତ ଦୁଇଟି ବହି : ଫୋକଟେଲଜ୍ ଅବ୍ ବେଙ୍ଗଲ ଆଉ ବେଙ୍ଗଲ୍ ପେଜାଣ୍ଟ୍‌ସ୍ ଲାଇଫ୍। ଦିନେ

ଲୁଚାଇ ଓମର୍‌ଖୈୟାମ୍ ପଢୁଥିଲି, ଦେଖି ହସିଥିଲେ। ସେ ହସରେ ଥିଲା ପ୍ରଶ୍ରୟ। ଉପେନ୍ଦ୍ରବାବୁ ବହି ଛଡ଼ାଇନେଇ, କ୍ଲାସ୍‌ଶେଷରେ ଫେରାଇ ଦେଇଥିଲେ ଅବଶ୍ୟ, କିନ୍ତୁ ହାବଭାବରୁ ବୁଝିପାରୁଥିଲି ଆଉ ନିରାପଦ ମନେ କରୁନାହାନ୍ତି ସେମାନେ। ଚାନ୍ଦବାଲି ଘର ପୋଡ଼ିଯିବା ଘଟଣାକୁ ନେଇ ପୁଲିସ୍ ଆସିଥିଲା ପିଲାଙ୍କୁ ପଚରାଉଚରା କରିବାକୁ; ହେଡ୍‌ମାଷ୍ଟର୍ ଘଉଡ଼ାଇ ଦେଇଥିଲେ; କଲେକ୍ଟରଙ୍କୁ ଜଣାଇ ଦେଇଥିଲେ, ନିହାତି ଆକସ୍ମିକ ଅଗ୍ନ୍ୟୁତ୍‌ପାତ ! ଆସେମ୍ଲିରେ ପ୍ରଶ୍ନ ପଚାରିଥିଲେ ଚକ୍ରଧର ବେହେରା; କଲେକ୍ଟର୍ ମହାରାଜକୁମାର ପ୍ରମୋଦ ସିଂହଙ୍କର ସେଇ ଏକା ଉତ୍ତର ; ଆକ୍‌ସିଡ଼େଣ୍ଟ। ମାତ୍ର, ଭଦ୍ରକରେ ମୁନ୍‌ସିଫଙ୍କ ପୁଅ ପଢୁଥିଲା ଆମ ସାଙ୍ଗରେ। ଉପେନ୍ଦ୍ରବାବୁ ତାକୁ ଫାଷ୍ଟ୍ ନ କରି ଛାଡ଼ିବେନାହିଁ, ଯଦିଓ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ସ୍କୁଲ୍‌ରୁ ସିଏ ଫାଷ୍ଟ ହେଇପାରିନାହିଁ। ସେ ବର୍ଷ, ମାନେ ଯୋଉବର୍ଷ ଇଉନିଭର୍‌ସିଟି ପରୀକ୍ଷାରେ ବସିବୁଁ, ଗ୍ରୀଷ୍ମମାସ ଛୁଟିରେ ହୋଷ୍ଟେଲ୍‌ରେ ରହିଗଲୁଁ ପଢ଼ାପଢ଼ି କରିବା ଲାଗି। ଆମ ହତାକୁ ଲାଗିଛି ରାୟ ସାହେବ କିଶୁ ରାୟଙ୍କ ଘର, ତାଙ୍କ କୁକୁଡ଼ା-ବତକ ଆମ ହତା ଭିତରେ ଆସି ଚରନ୍ତି। ଛୋଟ ବତକ ଗୋଟାଏ ଥିଲା କୋଣପଟିଆ ହୋଇ। ସେଥିରୁ ଗୋଟିଏ ଧରିଆଣି କଳାରଙ୍ଗର ପଶମଚାଦର ତଳେ ଲୁଚାଇ ନେଇଆସିଥିଲି, ଏବଂ ସଭିଏଁ ମିଶି ଫିଷ୍ଟ୍ କରିଥିଲୁଁ ଦ୍ୱିପହରେ। ଜଣେ ଥିଲା ମାଇଚିଆ, ତାକୁ ମୁଁ ଚିଡ଼ାଏଁ, ସେଇ ଯାଇ ଡାକିଆଣିଲା ଗୌରବାବୁଙ୍କୁ (ସହକାରୀ ପ୍ରଧାନଶିକ୍ଷକ ଗୌରଗୋପାଳ କେନା)। ଗୌରବାବୁ ମୋ ବାପାଙ୍କ ଛାତ୍ର; ନିଜେ କିଛି ନକରି ହେଡ୍‌ମାଷ୍ଟ୍ରଙ୍କୁ ରିପୋର୍ଟ କରିଦେଲେ। ସଞ୍ଜବେଳକୁ ବାଞ୍ଛା ପିଅନ୍ ଗୋଟାଏ ମୋଟା ରେଜିଷ୍ଟର ଧରି ମୋ ପାଖରେ ଆସି ହାଜର। ପଢ଼ିଦେଖିଲି ହେଡ୍‌ମାଷ୍ଟର ଚବିଶଘଣ୍ଟା ଭିତରେ ହଷ୍ଟେଲ୍ ଛାଡ଼ି ଚାଲିଯିବାକୁ ନୋଟିସ୍ ଜାରି କରିଛନ୍ତି। ଦସ୍ତଖତ୍ କଲିନାହିଁ; ଜାଣିଛି, ମୋ ପରମାୟୁ ଏଠି ଆଉ ମାସେ କି ଦି'ମାସ, ବୁଢ଼ା କ'ଣ ଉପାଡ଼ିବ ଉପାଡୁ। ସକାଳୁ ଉଠି ଚାଲିଗଲି ଏସ୍‌ଡିଓଙ୍କ କୋଠିକି, ବ୍ରଜେଶଚନ୍ଦ୍ର ମାଥୁର୍ ଥିଲେ ସ୍କୁଲ୍ ପରିଚାଳନା କମିଟିର ପ୍ରେସିଡେଣ୍ଟ୍। ହସି ହସି ଗଡ଼ିଗଲେ, ଖାଲି ତାଙ୍କ ସ୍ତ୍ରୀ ପଚାରିଲେ କୁକୁଡ଼ାଟା କେତେ ନମ୍ବର ! କହିଲି, ଛୁଟି ହୋଇଛି ବୋଲି ହୋଷ୍ଟେଲ୍‌ରେ ରନ୍ଧାବଢ଼ା ହେଉନାହିଁ; ଚାନ୍ଦବାଲିରେ ଥରେ ଖାସୀ ମାରିଥିଲୁଁ। ଏ ପିଲାଟା ବେଆଦ୍‌ବି ନକରିଥିଲେ କାକପକ୍ଷୀ ବି ଜାଣନ୍ତା ନାହିଁ; ମାଲିକ ତ କେବେହେଲେ ନାଲିସ୍ କରିବ ନାହିଁ। ମାଥୁର୍ କହିଲେ, ଯାଅ,

ମନଦେଇ ପଢ଼ାପଢ଼ି କର, ପରୀକ୍ଷା ତ ପାଖେଇ ଆସିଲା ! ମୋ ମନ କିନ୍ତୁ ଦକଦକ ହେଉଥାଏ, ବୁଢ଼ା ଯଦି ରାଗରଖି ସେଣ୍ଟଅପ୍ ନ କରେ ! ତାଙ୍କ ରଚିତ ଓ ଆମ ପାଠ୍ୟ "ତ୍ୟାଗୀ ଗୋପବନ୍ଧୁ" ମନେ ପଡ଼ିଲା । ଦୁଃଖକଷ୍ଟର ଦାବଦାହ ମଧ୍ୟରେ ମହାପୁରୁଷମାନଙ୍କ ଜୀବନ ଶୁଦ୍ଧ ସୁବର୍ଣ୍ଣ ପରି କାଜ୍ଜ୍ୱଲ୍ୟମାନ ହୁଏ... । ଯା ହେଉ କାନ୍ଦିକୁଛେଇ ସେ ଗ୍ରହସଙ୍କଟ ପାରହୋଇଗଲି; ମାତ୍ର କଲେଜରେ ଆସି ଦେଖିଲାବେଳକୁ ଅବସ୍ଥା ଆହୁରି ସଙ୍ଗୀନ୍; ମାଷ୍ଟର୍‌ମାନେ ବେବାକ୍ ସାହେବ, ସମସ୍ତେ ସୁଟ୍‌ପିନ୍ଧି ପାଠପଢ଼ାଇବାକୁ ଆସନ୍ତି(ସଂସ୍କୃତ/ ଆର୍ବି/ ଫାର୍ସି/ ବଙ୍ଗଳା ବାଦ୍‌ଯିବେ) । କଥାକହନ୍ତି ଇଂରାଜୀରେ, କ୍ଲାସ୍ ସରିଲେ, ତାଙ୍କ ବାଟରେ ସିଏ, ଆମ ବାଟରେ ଆମେ। ପୁରା ଆବହାଓ୍ୱାଟା କୃତ୍ରିମ ଓ ହାସ୍ୟକର। ର୍‍ୟାଭେନ୍‌ଶ' କଲେଜଟା ସତେ ଯେମିତି ଓଡ଼ିଶାର ଭୌଗୋଳିକ ପରିସର ବାହାରେ !

ପାଠ ଜାଣିଥିଲେ ଅତି ଅଳ୍ପ ଶିକ୍ଷକ; ପ୍ରଶ୍ନ ପଚାରିଲେ ବିରକ୍ତ ହୁଅନ୍ତି ଆଉ ବ୍ଲାକ୍‌ବୋର୍ଡରେ ଲେଖିଦେବେ କାଣ୍ଡିଏ ବହିର ନାଁ, ଯା ଲାଇବ୍ରେରୀରେ ନାହିଁ, କିଣିବା ଭଳି ସାମର୍ଥ୍ୟ ବି ପିଲାଙ୍କର ନାହିଁ; ଏକ ପ୍ରକାର ନିଷ୍ଫଳା ବିଦ୍ୟା ପ୍ରଦର୍ଶନ। ଛିଗୁଲେଇ ଛିଞ୍ଚାଡ଼ି କଥା କହିବେ। ଏକମାତ୍ର ଉଦ୍ଦେଶ୍ୟ, ସୂକ୍ଷ୍ମ ପ୍ରଣାଳୀରେ ଜିଜ୍ଞାସାକୁ ଦମନ। ସତେ ଯେମିତି ବାଧ୍ୟ ବଶମ୍ବଦ ନାଗରିକ ତିଆରିକରିବା ଅଭିପ୍ରାୟରେ ଉଦ୍‌ବୁଦ୍ଧ ଏଇ ଅଧ୍ୟାପକ ! ଦୁଇ ତିନି ବର୍ଷ ପର୍ଯ୍ୟନ୍ତ ଆମ ନାଁ ତ ଜାଣି ନଥିଲେ, ଅଧିକାଂଶ ପିଲାଙ୍କୁ ବାଟରେ ଦେଖିଲେ ଚିହ୍ନି ବି ପାରନ୍ତିନାହିଁ। ପରିଜା ସେତେବେଳେ ଥିଲେ ଭାଇସ୍ ଚାନ୍‌ସ୍‌ଲର, ଇଉନିଭର୍‌ସିଟି ଅଫିସ୍ ବି ଥିଲା କଟକରେ। ଏମ୍.ଏ. ପଢ଼ିବାକୁ ବାହାରକୁ ଯିବି ବୋଲି ସାର୍ଟିଫିକେଟ୍ ମାଗିଥିଲି; ଫୋନ୍ କଲାରୁ ଗମ୍ଭୀର କଣ୍ଠରେ କବାବଦେଲେ, Well, certificate does not go through the telephone line। ମୁଁ କିନ୍ତୁ ଓଡ଼ିଆରେ ପଚାରିଥିଲି, କେତେବେଳେ ଦେଖାକରିବି। ମୋ ଛାତ୍ରାବସ୍ଥାରେ ପ୍ରିନ୍‌ସପାଲ୍ ତିନିଜଣ; ଗୋଲକ ବାନାର୍ଜି, ବାମାଚରଣ ଦାସ ଓ ସଦାଶିବ ମିଶ୍ର। ବାମାବାବୁ ଏକେଲା ଓଡ଼ିଆ କହନ୍ତି ଆଉ ବୁସ୍‌ସାର୍ଟ ପିନ୍ଧି କଲେଜକୁ ଆସନ୍ତି। ବାକି ଦୁଇଜଣ ସାହେବ, ସେଥିରୁ ସଦାଶିବବାବୁଙ୍କ ବାଗବର୍ଗ ହେଲା ଦିଗଗ୍‌ଜ ପଣ୍ଡିତ, ମହାଦାମ୍ଭିକ, ବିଶୁଦ୍ଧ ବୁଦ୍ଧିବାଦୀ ! ଛାତ୍ରରାଜନୀତି କରୁଥିଲି, ଦିନେ ପଚାରିଲେ, ତୁମେ କ'ଣ ରାତିରେ ଶୋଉନା, ନା ତାଳଦଣ୍ଡା କେନାଲ୍‌କୂଳରୁ

ମଣାଯାଇ ଶୁଆଇ ଦେଉନାହାନ୍ତି । ତାଙ୍କ ବସା ମଧ୍ୟ କେନାଲ୍‌କୂଳରେ, ହତାରେ କେତେଟା ଆମ୍ବଗଛ । କହିଲି, ନାଁ ସାର୍, ରାତିସାରା କୋଇଲି ଆମ୍ବଗଛ ଡାଳରୁ ଡାକୁଛି, ନିଦ ଆସିବ କେମିତି ? ଆଉଥରେ କହିଲେ, ସତ୍ୟବାଦୀ ବନବିଦ୍ୟାଳୟରେ ଗୋଦାବରୀଶ ମିଶ୍ର କେମିତି ଆରସୀରେ ଦାନ୍ତ ଜିଭ ଓ ଓଠ ପ୍ରଭୃତି ବ୍ୟବହାର ଦେଖାଉଥିଲେ ଇଂରେଜୀ ଉଚ୍ଚାରଣ ଶିଖାଇବାବେଳେ । ନଜରରେ ପଡ଼ିଲା ତାଙ୍କ ବାଁ ପଟ ନାକପୁଡ଼ା ଉପରକୁ ନାତିଦୀର୍ଘ ଏକ ଛିଦ୍ର । ପଚାରିଲେ, ନାକ ଫୋଡ଼ାଇଥିଲେ ତେବେ କାହିଁକି ? କହିଲେ, ଯାତ୍ରା କରୁଥିଲି ପିଲାବେଳେ, ବସୁଣୀ ପିନ୍ଧିବାଲାଗି ଫୋଡ଼ାଇଥିଲି । ବାଳିକା ଭୂମିକାରୁ ବର୍ଣ୍ଣାଢ଼ଶ' - ବହୁ ଯୋଜନ ପଥ ପରିକ୍ରମ କରିଛନ୍ତି ଷୋଳଶାସନର ଏହି ବ୍ରାହ୍ମଣ ସନ୍ତାନ । ଇଂରେଜୀ ଅନର୍ସ କ୍ଲାସ୍‌ରେ ଜାଗାଥିଲା ୧୬ଟା, ସବୁ ଜାଗାବି ଭର୍ତ୍ତି ହୁଏନା । ଛାତ୍ର ଆଉ ଶିକ୍ଷକ ପରସ୍ପର ନିକଟତର ହେବା ସ୍ୱାଭାବିକ । ମାତ୍ର ଜିଲ୍ଲାକଲେଜରୁ ଯୋଉ ଶିକ୍ଷକ ଆସୁଥିଲେ ବଦଳିହୋଇ, ଅନର୍ସକ୍ଲାସ୍‌ରେ ପଢ଼ାଇବା ଅଭିଜ୍ଞତା ତାଙ୍କର ନଥିଲା, ଭାରି ଅପଦସ୍ତ ହୁଅନ୍ତି; ତେଣୁ ଯୋଉ ଦି'ଜଣଙ୍କ ଉପରେ ଭରସାକରି ପାଠ ପଢୁଥିଲୁଁ, ସେଥିରୁ ଜଣେ ଅକ୍ସଫୋର୍ଡ଼ ପ୍ରତ୍ୟାଗତ ବିଧୁଭୂଷଣ ଦାସ, ଆଉ ଜଣକ ପ୍ରଫୁଲ୍ଲ କୁମାର ପତି (ସେତେବେଳକୁ ମିନେସୋଟାରୁ ଡକ୍ଟରେଟ୍ କରିନାହାନ୍ତି); ବିଧୁବାବୁ ବେଜାଏ ପଢ଼ିଥିଲେ, ମାତ୍ର ନିଜସ୍ୱ କୋଉ ଅନ୍ତର୍ଦୃଷ୍ଟି ନଥିଲା । ଆଜି ଯାହା କହିଥିବେ, କାଲି ଯଦି ନୂଆ କୋଉ ବହି ହାତକୁ ଆସେ, ଓଲଟା କଥା କହିବେ । କେବଳ ପ୍ରଫୁଲ୍ଲ ବାବୁ କହିବେ, ଆଗେ text ପଢ, do not read books about books, ଏମିତି ହେଲା ଯେ ଷ୍ଟୁଡେ଼ଣ୍ଟ୍‌ସ ଫେଡେ଼ରେସନ୍ କାମରେ ଏପଟସେପଟ ହେଉହେଉ ପରୀକ୍ଷା ବେଳକୁ ହାତରେ ଆଉ ବେଳ ନାହିଁ । ଅଗତ୍ୟା ପ୍ରଫୁଲ୍ଲ ବାବୁଙ୍କୁ ଯାଇ କହିଲି, ସାର୍, ମିଲ୍‌ଟନ୍ ଉପରେ ଖଣ୍ଡିଏମାତ୍ର ବହି ପଢ଼ିବା ଭଳି ସମୟ ମୋ ହାତରେ ଅଛି; ଆପଣ ଏପରି ଗୋଟିଏ ବହି ବତାଇଦିଅନ୍ତୁ ଯା ପଢ଼ି ମିଲଟନ୍ ବିଷୟରେ ସବୁରକମ ଉତ୍ତର ଲେଖି ଦେଇପାରିବି । ବିଗିଡ଼ିଗଲେ, ନାନାପ୍ରକାର ପରିହାସ କଲେ, ଶେଷକୁ ଦେଖିଲେ ବସିରହିଛି ମୂର୍ତ୍ତିମନ୍ତ ହୋଇ ଧୈର୍ଯ୍ୟ ଧରି । କହିଲେ, ଲୋଗାନ୍ ପିୟରସାଲ୍ ସ୍ମିଥ୍ ଲେଖିଛି, ମିଲ୍‌ଟନ୍ ଆଣ୍ଡ୍ ହିଜ୍ କ୍ରିଟିକଜ୍; ବହିଟା କନିକା ଲାଇବ୍ରେରୀର ଅମୁକ ନମ୍ବର ଆଲ୍‌ମାରିରେ ଅଛି, 'ଭାବ' ପିଅନ୍‌କୁ କହିଲେ କାଢ଼ିଦେବ । ଦେଖିଲାବେଳକୁ ସେ ବହି ଥରେମାତ୍ର ଇସ୍ୟୁ ହୋଇଛି ଏବଂ ଗ୍ରହୀତା

ଏକମାତ୍ର ଶ୍ରୀ ପି.କେ. ପତି । ଭଲ ନମ୍ବର ପାଇଥିଲି । ଛାତ୍ର ହିସାବରେ ନିଷ୍ଠାପର ନଥିଲି ଆଦୌ, ତଥାପି ପ୍ରଫୁଲ୍ଲବାବୁଙ୍କ ସ୍ନେହରୁ ବଞ୍ଚିତ ହୋଇନାହିଁ ଅଦ୍ୟାବଧି ।

ଅର୍ଥାତ୍, ସ୍କୁଲ୍‌ରେ ରବିନାରାୟଣ କେନା ଓ କଲେଜରେ ପ୍ରଫୁଲ୍ଲ କୁମାର ପତି - ଏଇ ଦୁଇଜଣ ଶିକ୍ଷକଙ୍କୁ ଛାଡ଼ିଦେଲେ ଅନ୍ୟକେହି ମନଉପରେ ଦାଗ କାଟିପାରିନାହାନ୍ତି । ଏମାନଙ୍କୁ ଆଦର୍ଶ ଶିକ୍ଷକ କହିବି ନାହିଁ, କାହିଁକି ନା, ଜୀବନ ଏମାନଙ୍କ ପ୍ରତି ସଦୟ ହୋଇଥିଲେ ଅନେକ ବଡ଼କାମ ଏମାନେ କରିପାରିଥାନ୍ତେ; ଏବଂ ସେକଥା ନିଜେ ମଧ୍ୟ ଜାଣିଥିଲେ; ଜାଣିଥିଲେ ବୋଲି, ତୁଚ୍ଛତା ତାଙ୍କୁ ବାନ୍ଧିପାରିନାହିଁ; ପେସାକୁ ଅତିକ୍ରମ କରିଯାଇଛି ବ୍ୟକ୍ତିତ୍ୱ । ସେଥିପାଇଁ କହିବିନାହିଁ ଯେ ଆମବେଳେ ମାଷ୍ଟର ବେଶି ନିଷ୍ଠାପର ଥିଲେ ବା ଅଧିକ ଅନୁରାଗ ସହିତ ପାଠ ପଢ଼ାଉଥିଲେ । ଓଡ଼ିଶାରେ ଶିକ୍ଷାପ୍ରସାର ଘଟିଛି ୧୮୬୫ରେ ପ୍ରିଣ୍ଟିଙ୍ଗ୍ ପ୍ରେସ୍ କଟକରେ ବସିବା ଉତାରୁ, ଅର୍ଥାତ୍ ଦେଢ଼ଶ' ବର୍ଷ ବି ପୂରିନାହିଁ । ସାକ୍ଷରତା ହାର ଏବେ ବି ରହିଛି ଶତକଡ଼ା ୩୦ । ଏ ଅବସ୍ଥାରେ 'ଆଦର୍ଶ' ବିଷୟରେ ବିଦଗ୍ଧ ଆଲୋଚନା ବିଳାସିତା ମାତ୍ର, କାହିଁକି ନା, ଶିକ୍ଷା ଓ ଶିକ୍ଷକତାର ଅଭିଭାବକ ବଜାର; ଲୋକ ଅନ୍ୟଜାଗାରେ ନିଜକୁ ବିକାଇ ନପାରିଲେ ଏଠିକି ଆସେ । ସେଥିରେ ମଧ୍ୟ କେତେ ଥାକ, କେତେ ପାହାଚ । ସେଗୁଡ଼ାକୁ ଡେଇଁ ଡେଇଁ ଯେଉଁ ଜୀବନର ଫଳପ୍ରସୂ ବର୍ଷଗୁଡ଼ାକର ଅପଚୟ ହୁଏ, ଆଉ ମଧ୍ୟବୟସରେ ସ୍ଥିରହୋଇ ବସିଲାବେଳକୁ ମୋହଭଙ୍ଗ ଘଟିଯାଇଥାଏ । ଆଦର୍ଶ ପ୍ରତି, ଅବଶ୍ୟ ଯଦି ବିନ୍ଦୁମାତ୍ର ଅବଶିଷ୍ଟ ଥାଏ, ଆନୁଗତ୍ୟ ତେଣୁ ଶୀତଳ ଓ ଶିଥିଳହେବାକୁ ଡେରିହୁଏନା । କିନ୍ତୁ ଆଦର୍ଶ ନିଷ୍ଠାର ପ୍ରତିଶ୍ରୁତି ବହନକରି ଯିଏ ବାହାରନ୍ତି ପରିବେଶର ପ୍ରତିକୂଳତା ତାଙ୍କୁ ଟାଣି ନେଇଯାଏ ଓଡ଼ିଶା ବାହାରକୁ; ସେଠି ବିଚାରର ମାନଦଣ୍ଡ ଅଲଗା, ଅର୍ଥାତ୍ ପ୍ରତିଯୋଗିତା । ଓଡ଼ିଶାରେ ପାଠପଢ଼ି ବା ପଢ଼ାଇ ସେଇ ସୋପାନରେ ଯାଇ ଉପଗତହେବା କାଠିକର ପାଠ । ଅନ୍ତତଃ ପ୍ରଚଳିତ ବିଧିବ୍ୟବସ୍ଥାରେ ।

କିନ୍ତୁ ସନ୍ଦେହ ନାହିଁ, ପ୍ରଜନ୍ମ ପଛକୁ ପ୍ରଜନ୍ମ ଶିକ୍ଷିତ ଓଡ଼ିଆ ବାଧ୍ୟ ଓ ବଶମ୍ବଦ ଭୂମିକାରେ ଭାରତରେ ରହିଛନ୍ତି ଅପ୍ରତିଦ୍ୱନ୍ଦ୍ୱୀ, ଏବଂ ସେଇ ଐତିହ୍ୟ ରକ୍ତସ୍ରୋତରେ ବହନକରି ଓଡ଼ିଆ-ସମାଜ ରହିଛି ନିରୁପଦ୍ରବ ଓ ନିଷ୍ଫଳ ।



# ତସ୍ମୈ ଶ୍ରୀ ଗୁରୁବେ ନମଃ

ପ୍ରତିଭା ରାୟ

**ବଳଭଦ୍ର ଓ ଜଗନ୍ନାଥ - ବଡ଼ ମାଷ୍ଟ୍ରେ ଓ ସାନ ମାଷ୍ଟ୍ରେ :**

ଅଳକା ନଈର ହାତ ପାଆନ୍ତାରେ ଥିଲା ସେ ଦିନର ବାଲିକୁଦା ନିମ୍ନ ପ୍ରାଇମେରୀ ସ୍କୁଲ୍ । ସେଇଠି ପଢ଼ିଥିଲା ମୋ ପାଠପଢ଼ାର ମୂଳଦୁଆ । ଆମ ସ୍କୁଲ୍‌ର ବଡ଼ ମାଷ୍ଟ୍ରେ ଥିଲେ ଶ୍ରୀ ଦୁର୍ଗାଚ଼ରଣ ମହାନ୍ତି ଓ ସାନ ମାଷ୍ଟ୍ରେ ଥିଲେ ଶ୍ରୀ ନଟବର ନାୟକ । ବଡ଼ ମାଷ୍ଟ୍ରେଙ୍କୁ ବଡ଼ ଭକ୍ତି ଓ ସାନ ମାଷ୍ଟ୍ରଙ୍କୁ ସାନ ଭକ୍ତି ବୋଲି ବାହାରକୁ ଦିଶୁଥିଲା, ପ୍ରକୃତରେ କିନ୍ତୁ ଭକ୍ତିର ଅର୍ଥ ବୁଝିବାର ବୟସ ସେ ନଥିଲା, ସେ ଥିଲା ଭୟର ବୟସ । ତେଣୁ ବଡ଼ ମାଷ୍ଟ୍ରଙ୍କୁ ବଡ଼ ଭୟ ଓ ସାନ ମାଷ୍ଟ୍ରଙ୍କୁ ସାନ ଭୟ ଥିଲା ମନରେ । ସ୍କୁଲ୍‌ରେ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ, ଚାରିଟି ଶ୍ରେଣୀକୁ ଦୁଇଜଣ ଶିକ୍ଷକ ଥିଲେ - ବଡ଼ ମାଷ୍ଟ୍ରେ ଓ ସାନମାଷ୍ଟ୍ରେ ।

ବଡ଼ମାଷ୍ଟ୍ରଙ୍କ ଘର ବାଲିକୁଦାର ଦୁରାସାହି । ଆମ ସ୍କୁଲ୍ କ୍ୱାଟରକୁ ତାକେ ବାଟ । ପ୍ରାୟ ପ୍ରତିଦିନ ନାଳ ସେପାରି ସ୍କୁଲ୍‌ରୁ ଫେରିଲା ବେଳକୁ ଆମ ଘରକୁ ଆସନ୍ତି । ବୋଉଙ୍କୁ ଡାକନ୍ତି ଖୁଡ଼ି, ବାପାଙ୍କୁ ଡାକନ୍ତି ଦାଦା, ସେତେବେଳେ ସମସ୍ତେ ସମସ୍ତଙ୍କର ସମ୍ପର୍କୀୟ । ଆମେ ସମସ୍ତେ ତାକୁ ଦୂରଭାଇ । କିନ୍ତୁ ସେ ମୋର ବଡ଼ ମାଷ୍ଟ୍ରେ ହୋଇଥିବାରୁ ମୁଁ ଭରସିକରି ତାଙ୍କ ମୁହଁରେ କେବେ ହେଲେ ଦୁରଭାଇ ବୋଲି ଡାକିନି ।

ବଡ଼ ମାଷ୍ଟ୍ରେ ବଡ଼ କଡ଼ା ଲୋକ, ବଡ଼ ନୀତିନିଷ୍ଠ ଓ ଶୃଙ୍ଖଳିତ ଥିଲେ । ପିଲମାନଙ୍କ ପାଠକୁ କେବଳ ଜଗି ନଥା'ନ୍ତି । ଜଗିଥା'ନ୍ତି ପିଲାମାନଙ୍କର ଶାନ୍ତି, ଶୃଙ୍ଖଳା, ପରିଛନ୍ନତା, ସମୟାନୁବର୍ତ୍ତିତା, ନିୟମିତ ଉପସ୍ଥାନ ଓ ଗୃହପାଠକୁ । ସର୍ବୋପରି ପରୀକ୍ଷା ଫଳକୁ । ତେଣୁ ତାଙ୍କୁ ସେ ବୟସରେ ଆଉ ଭୟ ନକରି ଅନ୍ୟ ଗତି ଥିଲା କ'ଣ ? ପରବର୍ତ୍ତୀ କାଳରେ ମାଷ୍ଟ୍ରଙ୍କ ମହାନତା ବୁଝିବାପରେ ବଡ଼ ମାଷ୍ଟ୍ରେଙ୍କ ପ୍ରତି ବଡ଼ ଭୟଟି ଅନାୟାସରେ ପରିଣତ ହୋଇଥିଲା ବଡ଼ ଭକ୍ତିରେ । ବଡ଼ ମାଷ୍ଟ୍ରେ ସେ ସମୟରେ ସେ ଅଞ୍ଚଳରେ ପୁରୁଷମାନଙ୍କ ହାରାହାରି

ଉଚ୍ଚତା ତୁଳନାରେ ଥିଲେ ଢେଙ୍ଗା, କୃଶାଙ୍ଗ, ବର୍ଣ୍ଣ ସଫା, ବାଳ ଛୋଟ ଛୋଟ ହୋଇ କଟା, ଲମ୍ବାଳିଆ ଦୃଢ଼୍ ପ୍ରତିଜ୍ଞ ମୁହଁରେ ଅସ୍ପଷ୍ଟ ବସନ୍ତ ଦାଗ, ଅପାନୁଆ ଦାନ୍ତ, ଧୋବ ଫରଫର ଧଳା ଖଦଡ଼ ଧୋତି ଓ ଅଧାହାତ ଖଦଡ଼ କୁର୍ତ୍ତା। ପାଦଠାରୁ କେଶଯାଏ, ପୋଷାକଠାରୁ ଅକ୍ଷରଯାଏ ଏକ କର୍ତ୍ତବ୍ୟନିଷ୍ଠ ସଂଯତ ନିର୍ମଳ ଭାବମୂର୍ତ୍ତି ଆଙ୍କିଦିଏ ଶିଶୁ ପ୍ରାଣରେ। ଏହିଭଳି ନୀତିବାନ୍ ଆଦର୍ଶ ମାଷ୍ଟ୍ରଙ୍କ ପାଖରେ ଆରମ୍ଭ ହୋଇଥିଲା ମୋର ସାହିତ୍ୟ ପଢ଼ା। ସାନ ମାଷ୍ଟ୍ରେ ଦ୍ୱିତୀୟ ଶ୍ରେଣୀରେ ଏପରି ଚମତ୍କାର ମିଶାଣ ଫେଡ଼ାଣ ଶିଖାଉଥିଲେ ଯେ ତୃତୀୟ ଶ୍ରେଣୀର ବଡ଼ ମାଷ୍ଟ୍ରଙ୍କ ସାହିତ୍ୟ ପଢ଼ାଠାରୁ ଗଣିତ ବଳିପଡ଼ିଲା ବୋଲି ସାହିତ୍ୟ ମନ ମାରିଦେବା ସ୍ୱାଭାବିକ କଥା ଥିଲା। କିନ୍ତୁ ଦୁଇ ମାଷ୍ଟ୍ରଙ୍କ ଭିତରେ ଯେମିତି ପ୍ରୀତି ଓ ସହଯୋଗ ଶିଶୁ ଦୃଷ୍ଟିକୁ ସ୍ପଷ୍ଟ ଦିଶୁଥିଲା ଗଣିତ ଓ ସାହିତ୍ୟ ମଧ୍ୟରେ ସେମିତି ଏକ ମଧୁର ବୁଝାମଣା ହୋଇଯାଇଥିଲା ଦୁଇ ମାଷ୍ଟ୍ରଙ୍କ ଚମତ୍କାର ଶିଶୁ ମନଛୁଆଁ ଶିକ୍ଷାଦାନ ଶୈଳୀରେ। ତଫାତ୍ ଭିତରେ ଏତିକି ସାନ ମାଷ୍ଟ୍ରେ ପାନଖିଆ ନାଲି ଦାନ୍ତ ଖୋଲି ହସି ହସି ଗଣିତ ପଢ଼ାନ୍ତି, ବଡ଼ ମାଷ୍ଟ୍ରେ ଅଭଙ୍ଗା ମୂର୍ତ୍ତିଭଳି ଠିଆ ହୋଇ ଗୁରୁ ଗମ୍ଭୀର ବାଣୀରେ ସାହିତ୍ୟ ପଢ଼ାନ୍ତି, ଦିଶନ୍ତି ନିଜ ନିଷ୍ଠାରେ ଅଚଳ, ଅଟଳ ବ୍ୟାକରଣ ପରି, ମାତ୍ର ଦୁର୍ବୋଧ୍ୟ ବା ଜଟିଳ ନୁହନ୍ତି, ସ୍କୁଲ୍‌ର ନିତିଦିନିଆ ପ୍ରାର୍ଥନାର ଗୀତ "ଆହେ ଦୟାମୟ ବିଶ୍ୱ ବିହାରୀ" ଭଳି ସରଳ, ତରଳ ମନ ଉପରେ ଛାପଟିଏ ଆଙ୍କିଦେବା ଭଳି ପ୍ରଭାବଶାଳୀ। ଏହିଭଳି ଏକ ଅବିସ୍ମରଣୀୟ ମାଷ୍ଟ୍ରଙ୍କ ହାତ ବାଜିଥିଲା ମୋଠି, ଯିଏ କେବଳ ପାଠ ପଢ଼ାଇ ଦେଇ କର୍ତ୍ତବ୍ୟ ଶେଷ କରି ଦେଉନଥିଲେ। ତାଙ୍କର ଥିଲା ଆହୁରି ଅନେକ ସାମାଜିକ, ନୈତିକ କର୍ତ୍ତବ୍ୟ। ସେ ସବୁ ସେ ନିଷ୍ଠାର ସହ ସମ୍ପାଦନ କରୁଥିଲେ।

ସାନ ମାଷ୍ଟ୍ରେ ଶ୍ରୀ ନଟବର ନାୟକ। ବାଲିକୁଦାର ନାହାକ ସାହିରେ, ଏଲ୍.ପି. ସ୍କୁଲ୍‌କୁ ଖଣ୍ଡେ ବାଟ ଛାଡ଼ି ତାଙ୍କ ଘର। ସେ ଆମର ପୂର୍ବ ପରିଚିତ। ଜାତକ ପତ୍ର ଦେଖିବା ପାଇଁ ସେ ଓ ତାଙ୍କ ସାନ ଭାଇ ମଙ୍ଗୁଳି ଅବଧାନ ଆମ ଘରକୁ ଆସନ୍ତି। ନଟମାଷ୍ଟ୍ର ମୋ ଅପା ଓ ଭାଇଙ୍କୁ ପଢ଼ାଉଥିଲେ ଚତୁର୍ଥରେ ନାମ ଲେଖାଇବା ପର୍ଯ୍ୟନ୍ତ।

ନଟମାଷ୍ଟ୍ରେ ତ୍ରିପଣ୍ଡ କଳା। ସୁସ୍ଥ ସବଳ ମଧ୍ୟମ ଉଚ୍ଚତାର ମଣିଷ। ବଳିଲା ବଳିଲା ଖମ୍ବ ଭଳି ହାତ ଗୋଡ଼, ବିଶାଳ ଉଦର, ପ୍ରଶସ୍ତ ଉଦାର ଛାତି। ଶରୀର ଉପରେ ମସ୍ତକଟି ଯେପରି ଖଂଜା ହୋଇଥାଏ। ବେକ ସାନ। କେବଳ ତୁଳସୀ

ମାଳି ଦି'ସରି ଦିଶେ, ବେକ ଦିଶେ ନାହିଁ। ଚକା, ଚିକ୍କଣ ମୁହଁ, ଚଉଡ଼ା କପାଳ, ବଡ଼ ବଡ଼ ସ୍ନେହ ସ୍ନିଗ୍ଧ ଚକ୍ଷୁ, ପାନଖିଆ ନାଲିଦାନ୍ତ, ଓଷାର ନାକ, ଗୋଲ ମୁଣ୍ଡ, ଘାନ ଘାନ ହୋଇ ବାଳ କଟା ହୋଇଥାଏ। ଲଣ୍ଡା ମୁଣ୍ଡରେ ବାଳ ଉଠିଲା ପରି ଚିରକାଳ ଦିଶେ। ନାକ ଉପରେ ତିଳକ ଗାର, କପାଳରେ ଟଙ୍କା ଆକାରର ଚନ୍ଦନ ଟୋପା। ପରିଧାନ ଧଳା ଫତେଇ, ପେଣ୍ଡା ଉପରକୁ ଧଳା ଧୋତି, ଚଉଡ଼ା ଖାଲି ପାଦ। ସବୁ ମିଶି ନଟ ମାଷ୍ଟ୍ରେ ଦିଶନ୍ତି ଜଗନ୍ନାଥଙ୍କ ମୂର୍ତ୍ତି ପରି ନିଦା ଓ ନିର୍ଭରଯୋଗ୍ୟ। ସେଇ ନିଦା ଦୋରସ୍ତ ଜବରଦସ୍ତ ଚେହେରାରୁ ବ୍ରହ୍ମାଣ୍ଡ ଯାକର ବରାଭୟ ଓ ସ୍ନେହ ମମତା ଝରି ପଡ଼ିଲା ଭଳି ଦିଶେ, ଏକା ମତେ ନୁହଁ ସମସ୍ତଙ୍କୁ। ଖରାଦିନେ ସକାଳୁଆ ସ୍କୁଲ୍ ଛୁଟି ହେଲା ବେଳକୁ ଧୁ ଧୁ ଖରା। ନଟମାଷ୍ଟ୍ର ଦିନେ ଦିନେ ଖରା ବେଳେ ମତେ ଅଟକେଇ ଦିଅନ୍ତି। ମାଷ୍ଟ୍ରଙ୍କ ସଂଗେ ମୁଁ ଖାଏ। ଛାଇ ଲେଉଟିଲେ ମାଷ୍ଟ୍ରେ ଆଣି ଘରେ ଛାଡ଼ିଦେଇ ଯାଆନ୍ତି। କାରଣ ଘରକୁ ଫେରିବା ରାସ୍ତାରେ ବୁଢ଼ାପୀରଙ୍କ ବରଗଛରେ ମାଙ୍କଡ଼ ପଲ, ତା' ପରକୁ ବାଲିକୁଦା ଡାକ୍ତରଖାନାରେ ରୋଗୀ ଓ ମୁର୍ଦ୍ଦାର, ତା' ପରକୁ ମାଛ ଗାଁ, କେନାଲ ଉପରେ ଦଦରା କାଠ ପୋଲ, ଏସବୁକୁ ମୋର ପ୍ରାଣେ ଭୟ। ନଟମାଷ୍ଟ୍ରେ କେବେ ରାଗିଛନ୍ତି କି କାହା ଉପରେ ? ଆଜି ସ୍ମରଣ କଲେ ମନେ ପଡ଼େନା। ପିଲାଙ୍କ ଦେହରେ ବେତ ନ ଛୁଆଇଁ, ପିଲାଙ୍କ କାନ ନ ମୋଡ଼ି, ଆଣ୍ଠେଇବା ପାଇଁ ନ କହି, ପିଲାଙ୍କ ପିଠି ଆଉଁସି ପାଠ ପଢ଼ାଇବାର କଳା ନଟ ମାଷ୍ଟ୍ରେଙ୍କୁ ଜଣା ଥିଲା। ମୋ ମନ ଭିତରେ ନଟ ମାଷ୍ଟ୍ରେ ଜଗନ୍ନାଥଙ୍କ ଭଳି ଆସ୍ଥାନ ଜମାଇ ବସିଛନ୍ତି ବଡ଼ ମାଷ୍ଟ୍ରେ; ଆଉ ଜଣେ ଦୁର୍ଗାଚରଣ ମାଷ୍ଟ୍ରେ ଏକାବେଳେ ଜନ୍ମ ହୋଇଛନ୍ତି କି ନା ମୋତେ ଜଣା ନାହିଁ ! ନଟମାଷ୍ଟ୍ରଙ୍କୁ ନାୟକ କରି ମୋର ଏକ କଳ୍ପିତ ଗଳ୍ପ "ଭଦ୍ରଲୋକ" ବହୁ ଚର୍ଚ୍ଚିତ।

**ଅଭିଳାଷର ପ୍ରଥମ ପାଖୁଡ଼ା ଅଭିଳାଷ ସାର**

କୋମଳ କବିତାର ବୀଜଟିଏ କେଜାଣି କେଉଁଠୁ ଆସି କେଉଁ ମୁହୂର୍ତ୍ତରେ ମନୋରାଜ୍ୟରେ ଭୂମିଷ୍ଠ ହୋଇଗଲା ଆଜି ମଧ୍ୟ ଜାଣେନା। ବୟସ ନଅ ବା ଦଶ। କବି ହେବାର ସ୍ୱପ୍ନ ନୁହେଁ। କବିତା ହୋଇ ଲେଖି ହୋଇଯିବାର ସ୍ୱପ୍ନରେ ପ୍ରାୟ ମଗ୍ନ ହୋଇଯାଇଥିଲି ସେତେବେଳେ। ରାତି ଅଧରେ କବିତା ହିଁ ନିଦ ଭାଙ୍ଗି ଦେଉଥିଲା। ଭୋଅର ନ ହେଉଣୁ କବିତା ହିଁ ମନ ଭିତରେ ଗୁଣୁ ଗୁଣୁ ହେଉଥିଲା। ପାଠରୁ ସାମୟିକ ହୁରୁଡ଼ିଯାଇ ଏଣୁତେଣୁ ଅନାବନା କବିତାର ପଂକ୍ତି

ଗାରେଇବା ଯେ ସାଧାରଣ ଛାତ୍ରୀର କର୍ତ୍ତବ୍ୟର ସୀମାଲଂଘନ କରୁଥିଲା ଏମିତି ଏକ ଗୋପନ କୁଣ୍ଠାରେ ଜଡ଼ସଡ଼ ହୋଇ ଗୋପନ ପ୍ରେମପତ୍ର ପରି ଲୁଚେଇ ଲୁଚେଇ କବିତା ଲେଖା ହେଉଥିଲା । ମାତ୍ର ସେଗୁଡ଼ିକ କବିତା କି ନୁହେଁ, ତାହା ଜାଣିବାର ଉପାୟ ନଥିଲା । କିନ୍ତୁ ତା' ବୋଲି କବିତା ଠାରୁ ତ୍ରାହି ନଥିଲା । ଚତୁର୍ଥ ଓ ପଞ୍ଚମ ଶ୍ରେଣୀର ବେଶ୍ କିଛି ପୃଷ୍ଠା କବିତା ମନେକରି ଯତିପାତ କରିବାର ପ୍ରୟାସ କରି ପଂକ୍ତି ପରେ ପଂକ୍ତି ଲେଖା ଚାଲିଲା । ଏକ ସଂଗୀତ ସାହିତ୍ୟ ପରିବେଶ ଭିତରେ ବାଲ୍ୟକାଳ କଟୁଥିଲା । କିନ୍ତୁ ତା' ଭିତରେ କବିତା ଲେଖିବା ଯେ ଶୃଙ୍ଖଳାଭଙ୍ଗ ନୁହେଁ ଏଇ ପ୍ରତିଶ୍ରୁତି ଓ ଭରସା କାହାଠାରୁ ମିଳିବ ବୁଝିନଥିବାରୁ କବିତା ଓ କୁଣ୍ଠା ହାତ ଧରା ଧରି ହୋଇ ଗୋପନ ଅଭିସାର ରଚିଥିଲେ ମୋର ଏକ ସାନ କବିତା ଖାତାରେ । ମୋର ପଞ୍ଚମ ଶ୍ରେଣୀର ଆମ ସ୍କୁଲ୍‌ର ଇତିହାସ ଶିକ୍ଷକ ଶ୍ରୀ ଅଭିଳାଷ ନାୟକଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧାଭାବ ଭିତରେ ତାଙ୍କ ଉପରେ ଭରସା କରାଯାଇପାରିବ ବୋଲି ମନରେ ବିଶ୍ୱାସ ଜନ୍ମିଥିଲା । ଦୀର୍ଘ ଦେହ, ସୌମ୍ୟ ରୂପ, ଜ୍ଞାନ ଓ ଶ୍ରଦ୍ଧାର ସମନ୍ୱୟରେ ତାଙ୍କର ବ୍ୟକ୍ତିତ୍ୱ ଥିଲା ନିଦା ଓ ଗମ୍ଭୀର ଯାହା କବିପ୍ରାଣ ବାଳିକାକୁ ପ୍ରଭାବିତ କରିଥିଲା । ତାଙ୍କୁ ଦିନେ ଭରସା କରି କହିଲି, "ସାର୍ ଯଦି ବାପାଙ୍କୁ ନ କହିବେ ତେବେ ଆପଣଙ୍କୁ ଗୋଟେ କଥା କହିବି ।" "ତେବେ ଘଟଣାଟି କ'ଣ ଖୋଲି କହ । ଯେତେବଡ଼ ଅପ୍ରାଧ ହେଲେ ହେଁ ତା'ର ଉପାୟ କରିହେବ ।"

"ସାର୍ ! କବିତା ଲେଖିବା କ'ଣ ଅପ୍ରାଧ ? ମାନେ କେହି ଯଦି ପାଠ ପଢ଼ିବା ସମୟରେ କବିତା ଲେଖା ଲେଖି କରେ ତେବେ ଆପଣ ରାଗିବେ କି ?" ସାର୍‌ଙ୍କ ମୁଖ ପ୍ରସନ୍ନ ଦିଶିଲା । କହିଲେ "ଓହୋ, ତୁ ତେବେ ବାପାଙ୍କୁ ଲୁଚେଇ ଲୁଚେଇ କବିତା ଲେଖୁଛୁ, ଖୁବ୍ ଭଲ କଥା । କିନ୍ତୁ 'ସାର୍' ଶୁଣିଲେ ଭାରି ଖୁସି ହେବେ । ସେ ତ ନିଜେ ସାହିତ୍ୟ ରସିକ । ତୋ ଉପରେ ରାଗିବେ କାହିଁକି ?" ଭରସା ପାଇ କହିଲି "ମୁଁ ଅନେକ କବିତା ଲେଖିଛି । ସକାଳ ହେଲା, ଫଗୁଣ ଆସିଲା, ସନ୍ଧ୍ୟାରାଣୀ, ନୀଳକଇଁ, ଝରଝର ବର୍ଷା, ଅଳକା ନଇ, ମୋ ବୋଉ, ଗରିବର ଦିଅଁ, ଅଛୁଆଁ କିଆଁ ?, ଟିକି ଚଢ଼େଇ, ଦୋଳଯାତରା, ଆମ୍ବ ବଉଳ, କୁହୁକୁହୁ ଇତ୍ୟାଦି ।" "ଇରେ ବାପା, ଏତେ କବିତା", ସାର୍‌ଙ୍କ ମୁଖ ମଣ୍ଡଳରେ ଆଶ୍ଚର୍ଯ୍ୟର ଚିହ୍ନ । ମାତ୍ର ସେଗୁଡ଼ିକ ଭଲ କବିତା ନୁହେଁ । ମୋ ମନକୁ ପାଉନି । ଯେଉଁଦିନ ମୁଁ ଭଲ କବିତା ଲେଖିପାରିବି ଆପଣ ସେଦିନ ବାପାଙ୍କୁ ମୋ କବିତା ଲେଖିଥିବା

କଥା ଜଣେଇଦେବେ। ସେହିଦିନ ଆପଣ ମଧ୍ୟ ମୋ କବିତା ଦେଖିବେ। ଅଭିଳାଷ ସାର୍ ମୋ ପିଠି ଥାପୁଡ଼େଇ କହିଲେ - ସାବାସ୍ ତୁ ତ ସତକୁ ସତ ପ୍ରତିଭା। ତୋ ନିଜ ଭାଷାରେ ଯେମିତି ପାରୁଛୁ ସେମିତି ଲେଖ। ହଁ ତୋ କବିତାଗୁଡ଼ାକ ଛପାଯିବା ମଧ୍ୟ ଦରକାର। ସେତେବେଳେ ସାର୍ ତୋର କବିତା ପଢ଼ି ଆଶ୍ଚର୍ଯ୍ୟ ହେବା ସଂଗେ ସଂଗେ ଅତ୍ୟନ୍ତ ଖୁସି ହେବେ। ତେଣୁ ଏ କଥାଟି ଗୋପନ ରଖିଲି। ମାତ୍ର ମନେରଖ କବିତା ଲେଖିବା ଆଦୌ ଅପ୍ରାଧ ନୁହେଁ। କବିତାଗୁଡ଼ିକ 'ମୀନା ବଜାର'କୁ ନିୟମିତ ପଠାଇଦେ।

'ଏଣିକି ପ୍ରଜାତନ୍ତ୍ର'କୁ ନିୟମିତ କବିତା ପଠାଇଲି ଓ ଗୁରୁବାର ପ୍ରଜାତନ୍ତ୍ର ଶୁକ୍ରବାର ଦିନ ନିୟମିତ ମୋ ହାତକୁ ଆସିଲା। ମାତ୍ର ମୋର କବିତା ଛପା ଅକ୍ଷରରେ ଦେଖିବାର ଭାଗ୍ୟ ଉଦୟ ହେଲା ନାହିଁ। ଗୁରୁବାର ରାତିରେ ଆଖିରେ ନିଦ ନଥାଏ - ଯେତେବେଳେ ନିଦ ଆସେ ମୀନାବଜାର ପୃଷ୍ଠାରେ ନିଜ କବିତା ନିଜେ ପଢୁ ପଢୁ ସପନ ତୁଟେ - ସକାଳ ହୁଏ ଡାକ ଆସେ - 'ମୀନାବଜାର' ହାତକୁ ଆସେ। ପରୀକ୍ଷା ଫଳ ଦେଖିଲା ପରି ଦାଉଁ ଦାଉଁ ପଡୁଥିବା ଛାତି ଓ ଥର ଥର ହାତ ନେଇ କ୍ରୋଡ଼ପତ୍ର ଖୋଲି ଏ ମୁଣ୍ଡ ସେ ମୁଣ୍ଡ ଦେଖି ନିରାଶ ହୋଇଯାଏ। ଆମ ସାହିତ୍ୟ ବହିରେ ପଢ଼ାଯାଉଥିବା କବିତାରେ ଆମେ ନବୁଝିପାରୁଥିବା କଷ୍ଟ ଶବ୍ଦ ପରି କିଛି କଷ୍ଟ ଶବ୍ଦ ରହି କବିତା ଲେଖିଲେ ମୀନାବଜାରରେ ଅଲବତ ବାହାରିବ ବୋଲି ମନେ ହେଲା। ଘରେ ଥିବା ଓଡ଼ିଆ ଅଭିଧାନଟିଏ ଧରିଲି। କବିତାରେ ମୁଁ ପ୍ରାୟ ବ୍ୟବହାର କରୁଥିବା ସୂର୍ଯ୍ୟ, ଚନ୍ଦ୍ର, ଆକାଶ, ପୃଥ୍ୱୀ, ପବନ ଇତ୍ୟାଦି ଶବ୍ଦମାନଙ୍କର କେତେକ କଠିନ ପ୍ରତିଶବ୍ଦ ଯଥା ଅର୍କ, ସୁଧାଂଶୁ, ବ୍ୟୋମ, ମହାଦ୍ରୁମ, ବଲ୍ଲି ଇତ୍ୟାଦି ଅଭିଧାନ ଦେଖି ତାଲିକା କଲି। କବିତାଟି ଲେଖିବା ପୂର୍ବରୁ ଶୀର୍ଷକଟିଏ ଦେଲି 'ଅଭିଶପ୍ତା'। କବିତାଟି ପଠାଇ ଦେଲି ମୀନାବଜାରକୁ। ସ୍ଥିର ନିଶ୍ଚିତ ଯେ ଆସନ୍ତା ସଂଖ୍ୟାରେ କବିତାଟି ନିଶ୍ଚିତ ପ୍ରକାଶ ପାଇବ। ସେଭଳି ଏକ କଷ୍ଟ ଶବ୍ଦ ସମ୍ବଳିତ କବିତା ମୀନାବଜାର ପତ୍ରିକାରେ ନ ବାହାରିବାର କୌଣସି କାରଣ ନଥିଲା ବୋଲି ମୁଁ ଦୃଢ଼ ନିଶ୍ଚିତ ଥିଲି। ଅଭିଳାଷ ସାର୍‌ଙ୍କୁ କହିଦେଇଥିଲି ଯେ ଆସନ୍ତା ଗୁରୁବାର ମୀନାବଜାରରେ 'ଅଭିଶପ୍ତା' କବିତାଟି ପ୍ରକାଶ ପାଇବ, କିନ୍ତୁ ଗୁରୁବାରଟି ଥିଲା ମୋ ପାଇଁ ଅଭିଶପ୍ତ ଗୁରୁବାର। ଶ୍ରେଷ୍ଠ କବିତା ମନେକରୁଥିବା 'ଅଭିଶପ୍ତା' କବିତାଟି ପ୍ରକାଶ ପାଇନଥିଲା। ନୈରାଶ୍ୟରେ ଭାଙ୍ଗିପଡ଼ି ଅଭିଳାଷ ସାର୍‌ଙ୍କୁ କହିଲି-

"ସାର୍ ମୋ ଲେଖାଗୁଡ଼ିକ କବିତା ନୁହେଁ । ସହଜ କବିତା ପ୍ରକାଶ ପାଇଲା ନାହିଁ ଓ ଓଡ଼ିଆ ଡିକ୍ସନାରୀ ଦେଖି କଷ୍ଟ ଶବ୍ଦ ସମ୍ବଳିତ କବିତା ଲେଖି ପଠାଇଲି, ତା' ମଧ୍ୟ ପ୍ରକାଶ ପାଇଲା ନାହିଁ । ମୋ ଦ୍ୱାରା ଆଉ କବିତା ହେବ ନାହିଁ ।" ସାର୍ ସ୍ନେହାର୍ଦ୍ର ସ୍ୱରରେ କହିଲେ- "ତୁ ଶହେଟି କବିତା ଗଣି ଗଣି ମୀନାବଜାରକୁ ପଠା । ତା'ପରେ ଯଦି କବିତା ପ୍ରକାଶ ନପାଇବ, ତେବେ କହିବୁ ଯେ ତୋ ଦ୍ୱାରା କବିତା ହେବ ନାହିଁ । ରାତାରାତି କେହି କବି ପାଲଟି ଯାଏ ନାହିଁ । ହଁ ଡିକ୍ସନାରୀ ଦେଖି କବିତା ଲେଖାଯାଏନି । ମନ ଭିତରୁ ନିଜ ଭାଷାରେ ଯେଉଁ କବିତା ଲେଖାଯାଏ, ତାହାହିଁ ଭଲ କବିତା ଭାବରେ ସମସ୍ତଙ୍କ ମନକୁ ଛୁଏଁ । ତତେ କିଏ କହିଲା ଡିକ୍ସନାରୀ ଦେଖି କବିତା ଲେଖିବା ପାଇଁ । ମୋର ବିଶ୍ୱାସ ତୋର କବିତା ନିଶ୍ଚୟ ବାହାରିବ । ସେଥିପାଇଁ କିନ୍ତୁ ଧୈର୍ଯ୍ୟ ଓ ସାଧନା ଦରକାର । ଅଭିଳାଷ ସାର୍‌ଙ୍କ କଥା ମାନି ମୁଁ ମୀନାବଜାରକୁ କବିତା ପଠାଉଥାଏ । ୧୯୫୫ ମସିହା ମୋର ସପ୍ତମ ଶ୍ରେଣୀ ଆରମ୍ଭ ହୋଇଥାଏ । ମୋର ପ୍ରଥମ କବିତା ମୀନାବଜାରରେ ବାହାରିଥାଏ । ଏ କଥା ସ୍କୁଲ୍‌ରେ ରାଷ୍ଟ୍ର ହୋଇଗଲା । ଅଭିଳାଷ ସାର୍ ମୋ ପିଠିରେହାତ ମାରି କହିଲେ "ଏଣିକି ତୁ ତ କବି ହୋଇଗଲୁ । କବିତା ଲେଖା ଛାଡ଼ିବା କଥା ମନରେ ଆଉ ଧରିବୁନି ।" ଅଭିଳାଷ ସାର୍ ମୋତେ ଉତ୍ସାହ ନ ଦେଇଥିଲେ କେଜାଣି ମୁଁ କବିତା ଲେଖା ଜାରି ରଖିଥା'ନ୍ତି କି ନା । ଅଭିଳାଷ ସାର୍ ହେଉଛନ୍ତି ମୋ କବିତାର ପ୍ରଥମ ପ୍ରେରଣା । ତା'ପରକୁ ମୋ ବାପା - ତା'ପରେ ଆଉ ସମସ୍ତେ । ଏଭଳି ଶିକ୍ଷକ ସବୁ କବିଙ୍କୁ ମିଳିଛନ୍ତି କି ନାଁ ମୋତେ ଜଣା ନାହିଁ ।

**ମଥାନ ମଣିଷ ନରୋତ୍ତମ ସାର୍**

କେବଳ ନାମରେ ନୁହେଁ, ଯଥାର୍ଥରେ ସେ ଥିଲେ ନରୋତ୍ତମ - ଜଣେ ଅତ୍ୟନ୍ତ ଉତ୍ତମ ବ୍ୟକ୍ତି । ସବୁରିପାଇଁ ସେ ଥିଲେ ଜଣେ ଭଲ ମଣିଷ । ଭଲ ଏକ ଆପେକ୍ଷିକ ଶବ୍ଦ । ଏ କଥା ତାଙ୍କ ପାଇଁ ଲାଗୁ ହୋଇ ନଥିଲା । ସବୁରି ପାଇଁ ସେ ଥିଲେ ଶୁଭାକାଂକ୍ଷୀ, ସ୍ନେହୀ, ଅମାୟିକ, ଗୁଣଗ୍ରାହୀ, ପ୍ରତିଭାନୁରାଗୀ ମଣିଷଟିଏ । ଛାତ୍ରମାନଙ୍କ ପାଇଁ ସେ ଗୁରୁ, ବଂଧୁ, ପରାମର୍ଶଦାତା, ଦେବତୁଲ୍ୟ ଉଦାର ଅଭିଭାବକ । ଅଗଣିତ ଛାତ୍ର, ତେତିଶ ବର୍ଷର ଶିକ୍ଷକତାର ଡାଏରୀରେ ସମସ୍ତଙ୍କ ନାମ, ରୂପ, ଅଲିଭା ଅକ୍ଷରେ ଲେଖା । କଟକ, ଭୁବନେଶ୍ୱର, ଗାଁ ଗଣ୍ଡା, ସାରା

ଓଡ଼ିଶା ଘୁରି ବୁଲିଥା'ନ୍ତି ପୁରାତନ ଛାତ୍ରଙ୍କୁ ଶଂଖୋଳି। ଛାତ୍ରମାନଙ୍କୁ ବେଳ ନଥାଏ ସାର୍‌ଙ୍କୁ ଶଂଖୋଳି ଯିବାକୁ। ସେଥିପାଇଁ ମନରେ ଅଭିମାନ ନାହିଁ, ଖେଦ ନାହିଁ। ଅବରଣିଆ ପହଞ୍ଚିଯିବେ ସମସ୍ତଙ୍କ ଘରେ। ନିରୁତା କଲ୍ୟାଣ ଡାଳିଦେବେ ପାତ୍ର, ଅପାତ୍ରରେ। ଏପରି ସମଭାବପନ୍ନ ମଣିଷ ହିଁ କେବଳ ଗୁରୁ ପଦବାଚ୍ୟ। ପୁରାତନ କଟକ ଜିଲ୍ଲା, ଆଜିର ଜଗତ୍‌ସିଂହପୁର ଜିଲ୍ଲାର ବେଣାହାର ବାଲିକୁଦା ଥାନା ଅନ୍ତର୍ଗତ ବଣିଆ ଗ୍ରାମର ସ୍ୱର୍ଗତ ପ୍ରାଣକୃଷ୍ଣ ମହାନ୍ତି ଓ ସ୍ୱର୍ଗତା ରତ୍ନମଣି ମହାନ୍ତିଙ୍କର କୁଳ ଉଜ୍ଜ୍ୱଳ କରି ସ୍ୱର୍ଗତ ନରୋତ୍ତମ ମହାନ୍ତି ଜନ୍ମ ଲାଭ କରିଥିଲେ ତା ୨୮.୦୧.୧୯୨୪ ଖ୍ରୀଷ୍ଟାବ୍ଦରେ। ବାପା ତାଙ୍କର ଥିଲେ ଇଂରାଜୀ ଅମଳର ପୋଲିସ୍ ଅଫିସର୍। ତାଙ୍କର ସ୍କୁଲ୍ ଶିକ୍ଷା ବାଙ୍କି, ଅନୁଗୁଳ ଓ ରେଭେନ୍‌ସା କଲିଜିଏଟ୍ ସ୍କୁଲ୍‌ରେ ସମାପ୍ତ ହୋଇଥିଲା। କଲେଜ ଶିକ୍ଷା ଲାଭ କରିଥିଲେ ରେଭେନ୍‌ସା କଲେଜରେ। ବି.ଏ. ପଢୁଥିବା ସମୟରେ ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ କଲେଜ ବର୍ଜନ କରିଥିଲେ। ଇଂରେଜ ସରକାରଙ୍କ ଅଧୀନରେ ପୋଲିସ୍ ଅଫିସର୍ (ସବ୍‌ଇନିସ୍‌ପେକ୍ଟର)ଙ୍କ ପୁତ୍ରଙ୍କ ହାତରେ ପଡ଼ିଥିଲା ହାତକଡ଼ି। କଟକ ଜେଲ୍‌ରେ ଛ' ମାସ ଜେଲ୍ ଭୋଗିଥିଲେ। ସେତେବେଳେ ତାଙ୍କ ସଂଗେ ଜେଲ୍‌ରେ ଥିଲେ ବାଙ୍କବିହାରୀ ଦାସ, ନିଶାମଣି ଖୁଣ୍ଟିଆ ଓ ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରଭୃତି। ୨୬.୦୬.୧୯୪୬ ରୁ ୦୮.୦୯.୧୯୪୯ ପର୍ଯ୍ୟନ୍ତ ଖ୍ରୀଷ୍ଟ କଲିଜିଏଟ୍ ସ୍କୁଲ୍‌ରେ ଶିକ୍ଷକତା କରିଥିଲେ। ୧୦.୦୯.୧୯୪୯ରେ ସେତେବେଳର ବାଲିକୁଦା ହାଇସ୍କୁଲ୍‌ରେ ସହକାରୀ ଶିକ୍ଷକ ଭାବେ ଯୋଗ ଦେଇଥିଲେ। ସେ କିଛି କାଳ ବାଲିକୁଦା ମାଇନର୍ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ଥିଲେ ଓ ଅବସର ଗ୍ରହଣ ପର୍ଯ୍ୟନ୍ତ ଥିଲେ ଏନ୍.ସି.ସି. ଅଫିସର୍। ସେ ଥିଲେ ଜଣେ ଦକ୍ଷ ଇଂରାଜୀ ଶିକ୍ଷକ। ଛାତ୍ରମାନଙ୍କୁ ପୁତ୍ରବତ ମଣି ସେ ଶୃଙ୍ଖଳିତ ଜୀବନ ଯାପନ କରିବା ପାଇଁ ଉପଦେଶ ଦେଉଥିଲେ। ସମୟାନୁବର୍ତ୍ତିତା ଓ ଶୃଙ୍ଖଳାଜ୍ଞାନ ତାଙ୍କ ଚରିତ୍ରର ବିଶେଷତ୍ୱ ଥିଲା। ଶୃଙ୍ଖଳା ଭଙ୍ଗକାରୀ ପାଇଁ ସେ ଥିଲେ ଅତ୍ୟନ୍ତ କଠୋର। ଏହି ଲେଖିକା ତାଙ୍କର ଛାତ୍ରୀ ଥିଲା ବେଳେ ୧୯୫୬ ସୀମା ଆନ୍ଦୋଳନ ସମୟର ଏକ ଘଟଣା ସ୍ମରଣକୁ ଆସୁଛି। ଲେଖିକା ସେତେବେଳେ ସପ୍ତମ ଶ୍ରେଣୀର ଛାତ୍ରୀ। ନରୋତ୍ତମ ସାର୍ କ୍ଲାସ୍ ଟିଚ଼ର। ସ୍କୁଲ୍ ପିଲା ହରତାଳ କରି ସଭାକରିବା ପାଇଁ କାଦୁଅପଡ଼ା ସ୍କୁଲ୍‌କୁ ପ୍ରୋସେସନ୍ କରି ଗଲେ। ଛାତ୍ରୀମାନଙ୍କୁ ଘରକୁ ଫେରିଯିବା ପାଇଁ କୁହାଗଲା। ସେ ସମୟରେ

ଛାତ୍ରୀମାନେ ହରତାଳରେ (ଗ୍ରାମାଞ୍ଚଳରେ) ଭାଗ ନେଇ ପ୍ରୋସେସନରେ ବାହାରୁ ନଥିଲେ। ସବୁ ଛାତ୍ରୀ ଘରକୁ ଫେରିଥିଲେ। ମାତ୍ର ଏହି ଲେଖିକାର ପ୍ରରୋଚ଼ନାରେ ୧୦/୧୨ ଜଣ ଛାତ୍ରୀ ପ୍ରୋସେସନ କରି କାଦୁଅପଡ଼ା ପର୍ଯ୍ୟନ୍ତ ଚାଲିଯାଇ ସଭାରେ ଯୋଗଦେଲେ। ଏହାଥିଲା ଏକ ମାରାତ୍ମକ ଶୃଙ୍ଖଳାଭଙ୍ଗ। ତା' ପରଦିନ ନରୋତ୍ତମ ସାର୍ ଏ ଅପରାଧର ବିଚ଼ାର କରି ରାୟ ଦେଲେ ଯେ ଏହି ଲେଖିକା ତାଙ୍କରି ପିରିୟଡ଼ରେ ମାସକ ପାଇଁ ବେଞ୍ଚ୍ ଉପରେ ଠିଆ ହୋଇ ରହିବ। ଏହି ଲେଖିକା ତତ୍କାଳୀନ ପ୍ରଧାନ ଶିକ୍ଷକ ପରଶୁରାମ ଦାସ୍ଙ୍କର କନ୍ୟା ଓ ନରୋତ୍ତମ ସାର୍ଙ୍କ ଅତ୍ୟନ୍ତ ଆଦରଣୀୟା। ତା' ସତ୍ତ୍ୱେ ଶାସ୍ତି କୋହଳ ହେଲାନାହିଁ। ଏହି ଲେଖିକା ମାସେ କାଳ ପ୍ରଥମ ପରିୟଡ଼ରେ ବେଂଚ଼ ଉପରେ ଛିଡ଼ା ହୋଇ ରହୁଥିଲା। ପରେ ସେ ଆଦର ସହକାରେ ବୁଝାଇ ଦେଇଥିଲେ ଯେ ଦେଶକାମ ହେଲେ ମଧ୍ୟ ଶୃଙ୍ଖଳାଭଂଗ ସ୍ପୃହଣୀୟ ନୁହେଁ, ନିୟମଭଂଗ ସ୍ୱାଗତଯୋଗ୍ୟ ନୁହେଁ। ସେଦିନର ଶାସ୍ତି ଆଜି ବରଦାନ ପରି ମନେ ହେଉଛି। ମାତ୍ର ଯିଏ ବ୍ୟକ୍ତିତ୍ୱରେ ଗୁରୁ ତାହାର ଅବସର କାହିଁ ? ସେ ଥିଲେ ବାଲିକୁଦା ଅରବିନ୍ଦ ପାଠଚ଼କ୍ରର ଆଦ୍ୟ ପ୍ରବର୍ତ୍ତକ। ବାଲିକୁଦା ପୂଜ୍ୟପୂଜା ସଂସଦର ସଭାପତି, ନାଗପୁର ଅରବିନ୍ଦ ପୂର୍ଣ୍ଣାଙ୍ଗ ବିଦ୍ୟାଳୟର ପ୍ରତିଷ୍ଠାତା ସଭ୍ୟ ଥିଲେ। ବାଲିକୁଦା ଅଂଚ଼ଳରେ ଶିକ୍ଷା ଓ ସାଂସ୍କୃତିକ ଜୀବନ ସହ ମୃତ୍ୟୁ ପର୍ଯ୍ୟନ୍ତ ସେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିଲେ। ସେ ଥିଲେ ଆଶାବାଦ ଓ ଜୀବନବୋଧର ସ୍ୱତଃସ୍ଫୂର୍ତ୍ତ ପ୍ରତୀକ। ତାଙ୍କୁ ଏବେ ବି ଖୋଜୁଛନ୍ତି ତାଙ୍କର ଅଗଣିତ ଛାତ୍ର। ଖୋଜୁଛି ମୁଁ। ଖୋଜୁଛି ବାଲିକୁଦା। ହାଇସ୍କୁଲ୍ର ଶ୍ରେଣୀଗୃହରେ, ଘାସ ପଡ଼ିଆରେ, ନେସ୍ଫିଲ୍ଡ ଗ୍ରାମାର ବହିରେ, ବାଲିକୁଦା ବଜାରରେ, ହାଟରେ, କେନାଲ ବନ୍ଧରେ ତାଙ୍କ ନିଜ ଗାଁ କଣିଆଁର ଧୂଳି ମାଟିରେ। ସବୁଠି ସେ ଯେମିତି ବିରାଜମାନ। ତାଙ୍କ ଅବର୍ତ୍ତମାନରେ ମାଡ଼ି ଆସୁଥିବା ଅନ୍ଧାରର ସାମ୍ନା କରିବା ପାଇଁ ହାତ ଧରି ବାଟ କଢ଼ାଇ ନେବେ ସେ !

## ପିତା ପରମ ଗୁରୁ - ପରଶୁରାମ

ଜଣେ ଆଦର୍ଶ ବାପା ଏବଂ ଆଦର୍ଶ ଶିକ୍ଷକ ପାଇଲେ ପିଲାର ଜୀବନ ଧନ୍ୟ ହୁଏ। କାରଣ ପିଲାର ଆଦ୍ୟ ଗୁରୁ ହେଉଛନ୍ତି ମାତାପିତା। ସ୍କୁଲ୍କୁ ଗଲେ ଦ୍ୱିତୀୟ, ତୃତୀୟ ... ଗୁରୁ, ତା'ର ବ୍ୟକ୍ତିତ୍ୱର ବିନ୍ଧାଣୀ। ଖୁବ୍ କମ୍ ଲୋକଙ୍କର ଭାଗ୍ୟରେ

ଆଦର୍ଶ ପିତା ମିଳନ୍ତି । ଆହୁରି ଭାଗ୍ୟ କରିଥିଲେ ତା' ସାଙ୍ଗକୁ ଆଦର୍ଶ ଶିକ୍ଷକ ବି ମିଳନ୍ତି । ଈଶ୍ୱର ମୋ ପ୍ରତି ଏପରି ଦୟାଶୀଳ ଥିଲେ ଯେ ମୁଁ ଜଣେ ଆଦର୍ଶ ପିତାଙ୍କର ଝିଅ ହୋଇ ଜନ୍ମ ହେଲି । ସେ ପୁଣି ଥିଲେ ଜଣେ ଆଦର୍ଶ ଶିକ୍ଷକ । ମୋ ବାପା ଶ୍ରୀ ପରଶୁରାମ ଦାସ ୧୯୦୮ ମସିହାରେ ଜନ୍ମଗ୍ରହଣ କରିଥିଲେ । ପାଟନା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ବି.ଏସ୍.ସି. ପାସ୍ କରି ସେ ଟାଟା ଆଇରନ୍ ଆଣ୍ଡ୍ ଷ୍ଟିଲ୍ କମ୍ପାନୀରେ ଚାକିରି ପାଇଲେ । ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନ ସମୟରେ ଟାଟାରୁ ଚାକିରି ଛାଡ଼ି ବାଲିକୁଦା ମାଇନର୍ ସ୍କୁଲ୍‌ରେ ପ୍ରଥମ ହେଡ୍‌ମାଷ୍ଟର ହୋଇ ଯୋଗଦେଲେ । ଏହା ପଛରେ ଥିଲା ବିଶ୍ୱବିଖ୍ୟାତ ବୈଜ୍ଞାନିକ ଡଃ ପ୍ରାଣକୃଷ୍ଣ ପରିଜାଙ୍କର ପ୍ରେରଣା । ପରଶୁରାମ ଦାସ ମଧ୍ୟ ବୁଝିଥିଲେ ଲୋକେ ଶିକ୍ଷିତ ନହେଲେ ସ୍ୱାଧୀନତାର ଅର୍ଥ ବୁଝିବେ ନାହିଁ । ତେଣୁ ଶିକ୍ଷକତା ମାଧ୍ୟମରେ ସେ ପରୋକ୍ଷରେ ସ୍ୱରାଜ ଆନ୍ଦୋଳନକୁ ତେଜିଲେ । ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଗୋପନରେ ଘରେ ପୋଲିସ୍ ଆଖିରୁ ଲୁଚାଇ ରଖିବା, ବାନର ସେନା ଗଢ଼ିବା, ଜନଜାଗରଣ ପାଇଁ ଦେଶାତ୍ମବୋଧକ ଗୀତ ଲେଖିବା, ସ୍ୱର ଦେଇ ସମସ୍ତଙ୍କୁ ଶିଖାଇବା କାର୍ଯ୍ୟ କଲେ । ୧୯୪୨ କ୍ରାନ୍ତିଅବ୍ଦରେ ଜାନୁୟାରୀ ୧' ତାରିଖରେ ସେ ନୂତନ ବାଲିକୁଦା ହାଇସ୍କୁଲ୍‌ର ପ୍ରଧାନ ଶିକ୍ଷକ ଦାୟିତ୍ୱ ନେଲେ । ଜୀବନ ସାରା କ୍ରାନ୍ତି ପଥରେ ଶାନ୍ତିର ଅବକାଶ ପାଇଲେ ନାହିଁ । ଗାନ୍ଧି ଏବଂ ବିନୋବାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସାରାଜୀବନ ସେ ଅନ୍ୟାୟ ଅନୀତି ବିରୁଦ୍ଧରେ ଲଢ଼ି ଲହୁଲୁହାଣ ହେଲେ । କାଉଁରିଆ କାଠି ଭଳି ଭାଙ୍ଗିଯାଉଥିଲେ ପଛକେ, ଅନ୍ୟାୟ ଓ ଦୁର୍ନୀତି ପାଖରେ ନଇଁ ପଡୁନଥିଲେ । ଅଳାବୋଳ ଗାଁର ପୈତୃକ ସଂପତ୍ତିକୁ ପଦେ କଥାରେ ସାନ ଭାଇ ବଟକୃଷ୍ଣଙ୍କୁ ଛାଡ଼ି ଦେଇ "ମାଟିର ମଣିଷ"ର ବରକୁ ସାଜିଲେ । ଗାଁ ଛାଡ଼ି ବାଲିକୁଦା ସ୍କୁଲ୍ କ୍ୱାଟରରେ ରହି କିଣିଖିଆ ହେଲେ । ଅବସର ନେବା ବେଳକୁ କୋଉଠି ଘର ଖଣ୍ଡିଏ କରିନଥିଲେ । ପୋଷ୍ଟ ଅଫିସ୍ ଜମା ଖାତାରେ ପାଞ୍ଚ ଟଙ୍କା ବି ନଥିଲା । ବାଲିକୁଦାରେ ଶିକ୍ଷକ ଥିଲା ବେଳେ ଏବଂ ଅବସର ପରେ କଟକରେ ବଡ଼ପୁଅର ଭଡ଼ାଘରେ ରହିବା ବେଳେ ଗୋଠେ ପିଲାଙ୍କୁ ମାଗଣାରେ ଟିଉସନ୍ କରୁଥିଲେ । "ଯିଏ ପାଠରେ ଦୁର୍ବଳ ତାକୁ ସବଳ କରିବା ମାଷ୍ଟରର ଧର୍ମ । ସେଥିପାଇଁ ପାଉଣା ନେଲେ ଧର୍ମ ନଷ୍ଟ ହୁଏ", ଏହାହିଁ ଥିଲା ତାଙ୍କ ଜୀବନର ଘୋଷାପଦ । ଓଡ଼ିଆ, ଇଂରାଜୀ, ଗଣିତ, ସଂସ୍କୃତ, ବିଜ୍ଞାନ, ଭୂଗୋଳ ଏହି ଛଅଟି ବିଷୟରେ ତାଙ୍କର

ପ୍ରବେଶ ଥିଲା । ଇଂରାଜୀ ବ୍ୟାକରଣ ଓ ସାହିତ୍ୟ ଏବଂ ସଂସ୍କୃତ ବ୍ୟାକରଣ ଓ ସାହିତ୍ୟରେ ତାଙ୍କ ସମକକ୍ଷ ଶିକ୍ଷକ ସେତେବେଳେ କେହି ନଥିଲେ । ଫଳରେ ଶିକ୍ଷକମାନେ ଭଲ ଭାବରେ ନିଜକୁ ପ୍ରସ୍ତୁତ କରି ସ୍କୁଲ୍‌କୁ ଯାଉଥିଲେ । କୌଣସି କ୍ଲାସ୍ ଖାଲି ପଡ଼ିଲେ ସେ ପଶିଯାଇ ସେହି ବିଷୟଟିକୁ ପଢ଼ାଉଥିଲେ । ଏହି ପ୍ରତିଭା ସଂପର୍କରେ ଅଲଣାହାଟ, ଜଗତସିଂହପୁର ଇତ୍ୟାଦି ସମସ୍ତ ସ୍କୁଲ୍‌ରେ ସମସ୍ତେ ଅବଗତ ଥିଲେ ।

ମୋର ଜନ୍ମ ବେଳକୁ ବାପା ମାଷ୍ଟର ହୋଇ ସାରିଥିଲେ । ତେଣୁ ସେ ମଧ୍ୟ ମୋର ମାଷ୍ଟର ହେଲେ । ଗାନ୍ଧି ଆଦର୍ଶ ଅନୁସରଣ କରି ବାପା ଆମ ଘରଟାକୁ ସର୍ବଧର୍ମ ସମନ୍ୱୟର ପୀଠ କରିଥିଲେ । ତାଙ୍କର ମୁସଲ୍‌ମାନ ସାଙ୍ଗଙ୍କ ସଂଗେ ଏକାଠି ଭାତ ଖାଉଥିଲେ । ଆମର ହରିଜନ ସାଙ୍ଗମାନଙ୍କୁ ଡାକିଆଣି ଘରେ ବସାଉଥିଲେ । ଆମ ଘରେ ଜାତି, ଧର୍ମ, ଛୁଆଁଛୁତି ବାରଣ ନଥିଲା । ‘‘ଅନ୍ୟାୟ ପାଖରେ ମୁଣ୍ଡ ନୁଆଁଇବା ପାପ, ଅସତ୍ୟ ପାଖରେ ବଶ୍ୟତା ସ୍ୱୀକାର କରିବା ପାପ’’ ଏହାହିଁ ଥିଲା ତାଙ୍କ ଜୀବନର ଆଦର୍ଶ ଯାହା ତାଙ୍କର ଛାତ୍ରଛାତ୍ରୀ ଓ ପିଲାମାନଙ୍କୁ ପ୍ରଭାବିତ କରୁଥିଲା । ରାତିର ଆକାଶରେ ଗ୍ରହନକ୍ଷତ୍ର ମାନଙ୍କୁ ଚିହ୍ନାଇବା ସହ ଦିନର ଆଲୁଅରେ କବି ଲେଖକମାନଙ୍କୁ ଚିହ୍ନାଇ ଦେବା ଥିଲା ତାଙ୍କର କାମ । ପ୍ରତି ସନ୍ଧ୍ୟାରେ ଆମ ଘରେ ଶାସ୍ତ୍ର ଓ ସାହିତ୍ୟ ଆଲୋଚନା ହେଉଥିଲା । ଗୋଟିଏ ଛୋଟ କାଟର ବନ୍ଧୁ ଆସର କହିଲେ ଚଳେ । ଏହାହିଁ ମୋତେ ପ୍ରଭାବିତ କରିଥିଲା ବାଲ୍ୟକାଳରୁ । ବାପାଙ୍କୁ ଲୁଚେଇ ଲୁଚେଇ କବିତା ଲେଖୁଥିଲି ପଞ୍ଚମ ଶ୍ରେଣୀରୁ । ପ୍ରଜାତନ୍ତ୍ର ମୀନାବଜାରରେ ପ୍ରଥମ କବିତା ପ୍ରକାଶ ପାଇଲା ୧୯୫୫ ମସିହାରେ । ବାପାଙ୍କ ଆଖିରେ କାଗଜଟି ପଡ଼ିବା ମାତ୍ରେ ବାପା ଆନନ୍ଦରେ କୁରୁଳି ଉଠି ଉଦାତ୍ତ କଣ୍ଠରେ ଘୋଷଣା କଲେ - ‘‘ସମସ୍ତେ ଶୁଣ ମୋ ଝିଅ ଗୋଟେ କବି ହୋଇଗଲା ।’’ ଏହି ପଦିକ କଥା ମୋତେ ଲେଖିକା ହେବା ପାଇଁ ଦୃଢ଼ପ୍ରତିଜ୍ଞ କରିଥିଲା । ମୋ ଜୀବନର କେତୋଟି ଘଟଣା ମୋ ବାପାଙ୍କୁ ମତେ ଭଲ କରି ଚିହ୍ନାଇ ଦେଲା । ମୋର ବ୍ୟକ୍ତିତ୍ୱର ସାଦା କାଗଜରେ ଅଲିଭା ଅକ୍ଷର ଲେଖିଦେଲା । ଏହା ପରଠୁ ବାପା ହେଲେ ମୋ ପ୍ରକାଶିତ ଲେଖାର ପ୍ରଥମ ପାଠକ ଓ ସମାଲୋଚକ । ରେଭେନ୍‌ସା କଲେଜ ହଷ୍ଟେଲ୍‌ରେ ଥିବାବେଳେ ବାପାଙ୍କର ଏକ ସାନ ଚିଠି ମତେ ବଡ଼ ହୋଇ ଦିଶୁଥିଲା । ଚିଠିଟି ଏହିପରି ଥିଲା-

ବାଲିକୁଦା

ଆୟୁଷ୍ମତୀ ଝୁନା,　　　　　　　　　　　　୨୮.୧୧.୧୯୬୨

କାଲି ଅକସ୍ମାତ୍ ରେଡ଼ିଓର ତୂର୍ଯ୍ୟନାଦ କାର୍ଯ୍ୟକ୍ରମରେ ତୋ ଲେଖାଟି ଶୁଣିବାକୁ ପାଇ ମୁଁ ଓ ବୋଉ ଯେପରି ଆନନ୍ଦ ଅନୁଭବ କଲୁ ତାହା ବର୍ଣ୍ଣନାତୀତ। ତୋ ପରି ଝିଅ ଜନ୍ମ କରିଥିବାରୁ ମୋ ପିତୃହୃଦୟ ଗୌରବରେ ଫୁଲି ଉଠୁଛି। ସାହିତ୍ୟରେ ପ୍ରକାଶିତ ଭାବ, କାର୍ଯ୍ୟରେ ପ୍ରତିଫଳିତ ହେଲେ ଜୀବନ ପୂର୍ଣ୍ଣାଙ୍ଗ ହୁଏ। ତୋ ହୃଦୟରେ ଦେଶମାତୃକା ପ୍ରତି ଯେ ପ୍ରେମ ତୋ ଭାଷାରେ ଫୁଟି ଉଠିଛି ସେଥିରେ ଯେ କୌଣସି ପିତାମାତା ଗୌରବାନ୍ୱିତ ହେବେ। ଭଗବାନ ତତେ ଦୀର୍ଘାୟୁ କରି ତୋର ପ୍ରତିଭାକୁ ଉତ୍ତରୋତ୍ତର ବିକଶିତ କରାନ୍ତୁ, ଏହାହିଁ ମୋର ତାଙ୍କ ଶ୍ରୀଚରଣରେ ପ୍ରାର୍ଥନା। କଳାଚର୍ଚ୍ଚା ସଂଗେ ସଂଗେ କଲେଜପାଠ ପ୍ରତି ମଧ୍ୟ ସମାନ ଦୃଷ୍ଟି ରହିବା ଦରକାର। କଳାର ମାଦକତାରେ ଭାସି ନଯାଇ ବାସ୍ତବତା ପ୍ରତି ତୋର ଯେ ଦୃଷ୍ଟି ରହିଥିବ ସେଥିରେ ମୁଁ ନିଃସନ୍ଦେହ। ଶେଷରେ ଅନ୍ତରର ଗଭୀରତମ ପ୍ରଦେଶରୁ ଆଶୀର୍ବାଦ ଜଣାଇ ରହିଲି।

ଇତି

ବାପା

ଏହା ଥିଲା ଭାରତଚୀନ ଯୁଦ୍ଧ ବେଳର ଏକ ଦେଶାତ୍ମବୋଧ କାହାଣୀ।

**ମଣିଷକୁ ଭଲ ପାଅ**

ଆମେ ସ୍କୁଲ୍ କ୍ୱାଟରରେ ରହୁଥାଉ। ଚାରିପଟେ ମୁସଲ୍‌ମାନ୍ ବସ୍ତି, ଗଉଡ଼ ଓ ଚମାର ଘର। ମୁସଲ୍‌ମାନ୍ ଝିଅମାନେ ଥିଲେ ଆମ ସାଙ୍ଗ। ମୋ ବୋଉର ମନ ଭିତରେ ଟିକିଏ ଛୁଆଁ ଅଛୁଆଁ ଭାବ ଥାଏ। ସେଦିନ ଦୁଇଜଣ ମୁସଲମାନ୍ ସାଙ୍ଗଙ୍କ ସହ ଆମେ ଖେଳୁଥିଲୁ ଅଗଣାରେ। ଏତିକିବେଳେ ମେଘ ଆରମ୍ଭ ହୋଇଗଲା। ଆମେ ଭଉଣୀମାନେ ଘର ଭିତରକୁ ପଳାଇଲୁ। ମୁସଲ୍‌ମାନ ଝିଅ ଦିଓଟି ବାରଣ୍ଡାରେ ଜାକି ଜୁକି ହୋଇ ବସି ରହିଲେ। ଝଡ଼ ବତାଶ ମାଡ଼ି ଆସିଲା। କବାଟ ଝରକା ବାଡ଼େଇ ହେବାରୁ ଭିତରୁ କବାଟ କିଳି ଆମେ ରହିଲୁ। ସାଙ୍ଗ ଦୁଇଜଣଙ୍କ ପାଇଁ ମନ ଖରାପ ହେଉଥାଏ କିନ୍ତୁ ଘରକୁ ଡାକିବା ଉପାୟ ନାହିଁ। ମାଳି ଗଡ଼ୁଥିବା ଆମ ଆଇ ମା' ବି ଜଗି ବସିଥାଏ। ଏତିକିବେଳେ କିଏ କବାଟ ବାଡ଼େଇଲା। ବାପାଙ୍କ ପାଟି ଶୁଭିଲା। କବାଟ ଖୋଲା ହେଲା। ବାପା ତିନ୍ତିବୁଡ଼ି ଅଫିସ୍‌ରୁ ଆସିଥିଲେ। ମୁସଲ୍‌ମାନ୍ ଝିଅ ଦୁହିଁଙ୍କୁ କୁଣ୍ଢାଇ ଧରି ବାରଣ୍ଡାରୁ ଘର

ଭିତରେ ପଶିଲେ। ଆଈ ମା' ହାଁ ହାଁ କହୁକହୁ ବାପା ଆଦେଶ ଦେବା ସ୍ୱରରେ ବୋଉକୁ କହିଲେ, "ଏମାନଙ୍କୁ ପୋଛି ପାଛି ଶୁଖିଲା ଜାମା ପ୍ୟାଣ୍ଟ୍ ପିନ୍ଧିବାକୁ ଦିଅ। କେମିତି ମା' ହୋଇଛ ତୁମେ ...? ତୁମ ଝିଅମାନଙ୍କୁ ଏବେ ମୁଁ ବାରଣ୍ଡାରେ ବସାଇ ଦେଉଛି। କେମିତି ଲାଗିବ ତୁମକୁ ?" ଅନୁତପ୍ତ ବୋଉ ଝିଅମାନଙ୍କର ମୁଣ୍ଡ ତଉଲିଆରେ ପୋଛି ଦେଉଥିଲା। ଆଈ ମା' ହାତର ମାଳିଗଡ଼ା ବନ୍ଦ ହୋଇଯାଇଥିଲା। ରାତିରେ ବାପା ରାଗରେ ଖାଇ ନଥିଲେ। ତେଣୁ ବୋଉ ଖାଇ ନଥିଲା। ଆଈ ମା' ପ୍ରତିଜ୍ଞା କରିଥିଲା ପୁରୀ ଯାଇ ଜଗନ୍ନାଥ ଦର୍ଶନ କରି ପବିତ୍ର ହୋଇ ଆସିଲେ ଯାଇ ଖାଇବ। ଏହି ଘଟଣା ମୋର ମନର କଞ୍ଚା ସିଲଟରେ ଗାର ଟାଣି ଦେଲା ଯେ ସବୁ ମଣିଷ ସମାନ। ଜାତି, ଧର୍ମ ମଣିଷ ସୃଷ୍ଟି କରିଛି। ଏହି ନୀତିକୁ ଜୀବନ ସାରା ପାଳନ କରିଚାଲିଛି। ବାପା କହୁଥିଲେ "ମଣିଷକୁ ଭଲ ପାଇଲେ ଠାକୁର ପୂଜା ହେଲା। ମନ୍ଦିର ଯିବା ଲୋଡ଼ା ନାହିଁ।" ବାସ୍ତବରେ ବାପା ଈଶ୍ୱର ବିଶ୍ୱାସୀ ଥିଲେ ମଧ୍ୟ କର୍ମକାଣ୍ଡର ବିଶ୍ୱାସୀ ନଥିଲେ। ଅନ୍ଧବିଶ୍ୱାସଠୁ ଦୂରରେ ଥିଲେ। ତା'ର ପ୍ରଭାବ ଢେର ଥିଲା ମୋ ଉପରେ।

**ମଣିଷକୁ ବିଶ୍ୱାସ କର**

ସେଦିନ ଥିଲା ଶାମ୍ବ ଦଶମୀ। ଶୀତ ସନ୍ଧ୍ୟା ମାଡ଼ି ଆସୁଥାଏ। ବୁଜୁଳିଟିଏ ଧରି ଥୁରୁ ଥୁରୁ ହୋଇ ଆସି ଆମ କ୍ୱାଟର ପାଖ ବାରଣ୍ଡାରେ ବୁଢ଼ୀଟିଏ ବସିଲା। ଖବର ପାଇ ବୋଉ ପିଠାପଣା କରି ବୁଢ଼ୀ ପାଖକୁ ଗଲା। ତାକୁ ଖାଇବାକୁ ଦେଲା, ତା'ର ଭଲ ମନ୍ଦ ପଚାରିଲା। ବୁଢ଼ୀ କହିଲା ଯେ ତା'ର ଘର ଏରସମାର ଆମ୍ବିକି ଗାଁରେ। ପୁଅ ବୋହୂ ପଚାରନ୍ତି ନାହିଁ। ଗଲା ଖରାଦିନେ ଘର ପୋଡ଼ିଗଲା। ମାଗିଯାଚି ଚଳେ। ଆଜି ରାତିଟି କୋଉଠି ଶୋଇ ପଡ଼ିଲେ ସକାଳକୁ ଆପଣା ବାଟରେ ଚାଲିଯିବ। ସ୍କୁଲ୍ ଘରଟା ପୋଖରୀ କୂଳରେ। ପୁଷମାସର ପଞ୍ଚରାଥରା ଶୀତ ଭୁଷ୍ ଭୁଷ୍ ପଶିଆସୁଥାଏ ପୋଖରୀ ହତାରୁ। ସ୍କୁଲ୍ ଘରଟାର ଝରକା କବାଟ ଭାଙ୍ଗି ଯାଇଥାଏ। ଖୋଲା ଘରଟାରେ ବୁଢ଼ୀ ଶୋଇବ କେମିତି ? ବୋଉ ବୁଢ଼ୀକୁ ଘର ଭିତରକୁ ଡାକିଲା। କିନ୍ତୁ ସାଇ ପଡ଼ିଶା ଓ ସ୍କୁଲ୍ ପିଅନ୍ ଦୁଇଜଣ ବୋଉକୁ ଡରେଇ ଦେଇ କହିଲେ, ଆଜିକାଲି ଘରପୋଡ଼ି ନଈବଢ଼ି ଇତ୍ୟାଦି କହି ଡକାୟତ ଦଳର ସ୍ତ୍ରୀମାନେ କେତେ ବେଶରେ ଘର ଘର ବୁଲି ଓର ଉଣ୍ଡୁଛନ୍ତି। ପରେ ଦଳବଳ ହୋଇ ଆସି ଡକାୟତି କରୁଛନ୍ତି। ବୁଢ଼ୀକୁ ଘରେ ପୂରେଇଲେ ବିପଦ। ବୋଉ ସେମାନଙ୍କୁ ବିଶ୍ୱାସ କଲା।

ବୁଢ଼ୀଟିର ସ୍କୁଲ୍ ଘରେ ଶୋଇବାର ବ୍ୟବସ୍ଥା କଲା। ବ୍ଲାକ୍‌ବୋର୍ଡଟିଏ ଚଟାଣରେ ପକାଇ ଦିଆଗଲା। ବୁଢ଼ୀ ତା' ଉପରେ ତା' ଛିଣ୍ଡାଲୁଗା ପକାଇ ଶୋଇଲା। ବୋଉ ପୁରୁଣା ଚଦର ଖଣ୍ଡେ ଦେବାରୁ ବୁଢ଼ୀ ଘୋଡ଼େଇ ହୋଇ ଶୋଇଲା। ରାତି ଦଶଟାରେ ବାପା ଘରକୁ ଫେରିଲେ। ବୋଉ ବୁଢ଼ୀ କଥା କହିଲା। ବାପା ସଂଗେ ସଂଗେ ଟର୍ଚ୍ଚ ଧରି ସ୍କୁଲ୍ ଘରକୁ ଗଲେ। କାଲୁଆ ପବନରେ ବୁଢ଼ୀ ବରଡ଼ାପତ୍ର ଭଳି ଥରୁଥାଏ। ବୁଢ଼ୀକୁ ଟେକି ଟେକି ଧରି ବାପା ଘର ଭିତରକୁ ନେଲେ। ସାଇ ପଡ଼ିଶା କାହାରି ମନା ମାନିଲେ ନାହିଁ। ଆମ ଝିଅମାନଙ୍କ ଶୋଇବା ଘରର ଗୋଟିଏ କୋଣରେ ଦଉଡ଼ିଆ ଖଟଟିଏ ପଡ଼ିଲା। ତା' ଉପରେ କନ୍ଥାଟିଏ ପଡ଼ିଲା। ବୁଢ଼ୀକୁ ଶୁଆଇ କମ୍ବଳ ଘୋଡ଼ାଇ ଦିଆଗଲା। ବୁଢ଼ୀ କେତେ କଲ୍ୟାଣ କରୁଥାଏ। ବାପା 'ମାଉସୀ' 'ମାଉସୀ' ହୋଇ ତା' ସଂଗେ ଦୁଃଖ ସୁଖ ହେଉଥା'ନ୍ତି। ଆମକୁ ବଡ଼ ମଜା ଲାଗୁଥାଏ। ଡକାୟତ ସ୍ତ୍ରୀଲୋକଟା ଘରେ ଶୋଇଲା ବୋଲି ଡ଼ର ବି ଲାଗୁଥାଏ। ଆମ ଆଖିରେ ନିଦ ନଥାଏ। ଏତିକିବେଳେ ବାପା ମତେ ଏବଂ ଗୁଲୁ (ମୋ ସାନଭାଇ)କୁ ଆଦେଶ ଦେଲେ "ଚାଲ ମାଉସୀର ଗୋଡ଼ ମୋଡ଼ି ଦେବ, କେତେବାଟ ଚାଲି ଚାଲି ଆସିଥିବ..." ଆମକୁ ସିନା ଘଟଣାଟା ମଜା ଲାଗୁଥିଲା, କିନ୍ତୁ ଡକାୟତ ବୁଢ଼ୀଟାର ଗୋଡ଼ ମୋଡ଼ି ଦେବା କାମ ଆଦୌ ଭଲ ଲାଗିଲା ନାହିଁ। ବାପା ଆଉ ଥରେ ଗୋଟିଏ ଆଦେଶପୂର୍ଣ୍ଣ ଦୃଷ୍ଟିରେ ଆମକୁ ଚାହିଁଲେ। ଆମେ ଦୁଇ ଜଣ ଚୁପ୍‌ଚାପ୍ ବୁଢ଼ୀର ଗୋଡ଼ ମୋଡ଼ିବାକୁ ଆରମ୍ଭ କଲୁ। ଏତିକିବେଳେ ସ୍କୁଲ୍‌ର ପିଅନ୍ ଝାଟୁ ଆଜ୍ଞାବହ ହନୁମାନ ସାଜି ବୁଢ଼ୀର ଗୋଡ଼ ମୋଡ଼ିବାକୁ ଆରମ୍ଭ କଲା। ବୁଢ଼ୀ ବିହ୍ୱଳ ହୋଇ ସମସ୍ତଙ୍କୁ କଲ୍ୟାଣ କରି ଚାଲିଥାଏ। ବୁଢ଼ୀ ସକାଳୁ ଦାନ ଦକ୍ଷିଣା ନେଇ ବିଦା ହୋଇଗଲା। ତା'ପର ଠାରୁ ସେ ହୋଇଗଲା ବାପାବୋଉଙ୍କ ଧରମ ମା'। ତା'ପରେ ଅନେକଥର ଗାଁରୁ ଆମ୍ବ, କୋଳି, ଶୁଖୁଆ ନେଇ ଆମ ଘରକୁ ଆସିଛି। ଯୋଉ ବର୍ଷ ବୁଢ଼ୀ ନଆସେ ବୋଉ ପଚାରେ "ତମ ଡକାୟତ ମା'ର କାହିଁକି ଦେଖା ନାହିଁ। ବାପା ସଂଗେ ସଂଗେ ଉତ୍ତର ଦିଅନ୍ତି "ମୋ ପାଇଁ ସେ ଡକାୟତ ନୁହେଁ, ଖାଲି ମା'। ମଣିଷକୁ ଏତେ ଅବିଶ୍ୱାସ କଲେ ସଂସାରରେ ବଞ୍ଚିବ କାହାକୁ ନେଇ ! ସେଦିନ ରାତିରେ ଯଦି ବୁଢ଼ୀଟା ମରିଯାଇଥା'ନ୍ତା, ନିଜକୁ କ୍ଷମା ଦେଇପାରିଥା'ନ୍ତ ତ ଜୀବନସାରା ?" ଏହି ଘଟଣାଟି ମତେ ପ୍ରଭାବିତ କରିଥିଲା। ପ୍ରାୟ ତିରିଶ ବର୍ଷ ପରେ "ଅମୃତ ମଣୋହି" ଗଳ୍ପଟି ଲେଖିବାର ପ୍ରେରଣା ଦେଇଥିଲା।

## ଜୀବନର ଅସଲ ପରୀକ୍ଷା

ଦଶମ ଶ୍ରେଣୀ ବାର୍ଷିକ ପରୀକ୍ଷା ଆରମ୍ଭ ହୋଇଥାଏ। ସକାଳୁଆ ପରୀକ୍ଷା। ସେଦିନ ଥାଏ ଗଣିତ। ବାପା ଆମର ଗଣିତ ଶିକ୍ଷକ। ତା' ପୂର୍ବଦିନ ଅଫିସ୍‌ରେ ବସି ପ୍ରଶ୍ନପତ୍ର ତିଆରି କରିଥା'ନ୍ତି। ସକାଳୁ ସକାଳୁ ସାଇକ୍ଲୋଷ୍ଟାଇଲ୍ ହୋଇ ପ୍ରଶ୍ନପତ୍ର ବଣ୍ଟା ହେବ। ପାହାନ୍ତିଆରେ ଉଠି ପଢୁ ପଢୁ ଗୋଟିଏ ଜ୍ୟାମିତି ଅଙ୍କନ ହେଲା ନାହିଁ। ବାପାଙ୍କୁ ଯାଇ ପଚାରିଲି। ବାପାତ ଆମ ଆଗରୁ ଉଠି ସାରିଥା'ନ୍ତି। ବାପା ମଧ୍ୟ ସେହି ଜଟିଳ ଅଙ୍କଟିକୁ କରିବା ପାଇଁ ବେଶ୍ କିଛି ସମୟ ନେଲେ। ଶେଷରେ ଅଙ୍କନଟି ପକାଇଛନ୍ତି। ନ ପକାଇଥିଲେ ପରୀକ୍ଷାର ଅବ୍ୟବହିତ ପୂର୍ବରୁ ମୋର ଏତେ ସମୟ ନେଇ ନଥା'ନ୍ତେ। ସେତେବେଳକୁ ସ୍କୁଲ୍‌ର ପ୍ରାର୍ଥନା ଘଣ୍ଟି ବାଜି ସାରିଥିଲା। ବାପା ଏବଂ ମୁଁ ତରବର ହୋଇ ସ୍କୁଲ୍‌କୁ ବାହାରିଲୁ। ଖୁସି ମନରେ ପ୍ରଶ୍ନପତ୍ର ପଢ଼ିଲି। ମାତ୍ର ସେ ଅଙ୍କନଟି ପରୀକ୍ଷାରେ ପଡ଼ି ନଥିଲା। ତା'ଠାରୁ ଯଥେଷ୍ଟ ସହଜ ଅଙ୍କନଟିଏ ପଡ଼ିଥିଲା। ବାପା କହିପାରିଥା'ନ୍ତେ "ଯାଆ ଯାଆ, ପରେ ବୁଝିବୁ ଏବେ ଅନ୍ୟ ପାଠ ପଢ଼"। ବାପାଙ୍କର ଶିକ୍ଷାଦାନ ପରୀକ୍ଷାଭିମୁଖୀ ନଥିଲା, ଜୀବନାଭିମୁଖୀ ଥିଲା।

## ଭ୍ରମ ସଂଶୋଧନ

ମୋର ନବମ ଶ୍ରେଣୀର କଥା। ବାର୍ଷିକ ପରୀକ୍ଷାରେ ଗଣିତର ଗୋଟିଏ ପ୍ରଶ୍ନର ସମାଧାନର ଉତ୍ତର ତରବରରେ ଓଲଟାଇ ୫୬ କୁ ୬୫ ଲେଖି ଦେଇଥିଲି। ପରୀକ୍ଷା ହଲ୍‌ରୁ ବାହାରି ଆସି ମୋର ଭୁଲ୍ ବୁଝିପାରିଲି। ତରବରିଆ ଭୁଲ୍ ମୋର ପ୍ରାୟ ହୋଇଥାଏ, ଏବଂ ସେଥିପାଇଁ ବାପାଙ୍କର ବିରକ୍ତିକୁ ହଜମ କରିବାକୁ ପଡ଼େ। ବାପା ସେ ଭୁଲ୍ ପାଇଁ ବହୁତ ନମ୍ବର କାଟିଦେବେ ବୋଲି ଆଶଙ୍କାହେଲା। ପରୀକ୍ଷା ପରେ ବାପା ଖାତା ବିଡ଼ାଟି କାଖରେ ଜାକି ଘରକୁ ଗଲେ ଓ ତାଙ୍କ ଆଲମାରିରେ ରଖି ଚାବି ପକାଇଲେ। ତା'ପରେ ଚାବିଟି ତାଙ୍କ ପଞ୍ଜାବୀ ପକେଟରେ ରଖି ବାପା ପାଇଖାନା ଗଲେ। ବାପା ପାଇଖାନାରେ ଅପେକ୍ଷାକୃତ ବେଶୀ ସମୟ ନିଅନ୍ତି। ତା'ପରେ ଗାଧୁଆ ପାଧୁଆ କରନ୍ତି। ମୋ ମନରେ ଏକ ଅନୁଚିତ ଇଚ୍ଛା ବଳବତ୍ତର ହେଲା। ଗୋଟିଏ ବଡ଼ ପାପ କରିବା ପାଇଁ ନିଜକୁ ଦୃଢ଼ କଲି। ବାପାଙ୍କ ପକେଟରୁ ଚାବିଆଣି ଆଲମିରାରୁ ଖାତା ବିଡ଼ାଟି ବାହାର କଲି ଉତ୍ତରଟି ଠିକ୍ କରି ଲେଖିଦେବା ଉଦ୍ଦେଶ୍ୟରେ। ମାତ୍ର ଦେଖିଲି ବାପା ଅଫିସ୍‌ରୁ ଘରକୁ ଖାତା ଆଣିବା ପୂର୍ବରୁ ମୋ ଖାତା ଓ ମୋ ଦାଦା ଶ୍ରୀ ଲକ୍ଷ୍ମୀ

ନାରାୟଣ ଦାସ (ବର୍ତ୍ତମାନ ପୋଷ୍ଟାଲ୍ ଡାକ୍ତର) ଙ୍କ ଖାତା ଉପରେ ନମ୍ବର ଚଢ଼ାଇ ଘରକୁ ଆଣିଛନ୍ତି। ମୋର ତରବରିଆ ଭୁଲ୍ ଉପରେ ନାଲି ପେନ୍‌ସିଲ୍‌ରେ ଗୋଟିଏ ମୁଣ୍ଡଳା ବୁଲାଇ ପାଞ୍ଚ ନମ୍ବର କାଟି ଦେଇଛନ୍ତି। ପରୀକ୍ଷା ଖାତାରେ ଭ୍ରମ ସଂଶୋଧନ କରିବାକୁ ଯାଇ ନିଜର ଭ୍ରମ ସଂଶୋଧନ ହୋଇଗଲା। ସେ ଦିନ ବାପା ମତେ ଏକ ବଡ଼ ଅପରାଧରୁ ରକ୍ଷା କଲେ।

ମୋ ବାପାଙ୍କର ପରଲୋକ ହେଲା ୧୯୭୬ ମସିହାରେ। ବାପାଙ୍କର ସ୍ମରଣିକା ପାଇଁ ଡଃ ହରେକୃଷ୍ଣ ମହତାବ ଲେଖିଥିଲେ, "ଶିକ୍ଷକ ଜଣେ ସ୍ଥାନୀୟ ନେତା ହୋଇପାରେ। ଏହାର ଜ୍ୱଳନ୍ତ ଉଦାହରଣ ବାଲିକୁଦା ହାଇସ୍କୁଲ୍‌ର ଜଣେ ମାଷ୍ଟର ଶ୍ରୀ ପରଶୁରାମ ଦାସ। ସ୍କୁଲ୍‌ରେ ଶିକ୍ଷା କାର୍ଯ୍ୟ ବ୍ୟତୀତ ସେ ସ୍ଥାନୀୟ ସମସ୍ତ ସମସ୍ୟା ସହିତ ଅଭିହିତ ରହୁଥିଲେ ଏବଂ ଯଥାଶକ୍ତି ସମସ୍ୟାଗୁଡ଼ିକର ସମାଧାନ କରୁଥିଲେ। ସବୁ ରାଜନୈତିକଦଳ ତାଙ୍କର ନୈତିକତା ସ୍ୱୀକାର କରି ସମ୍ମାନ ଦେଉଥିଲେ। ବାଲିକୁଦା ଅଂଚଳରେ କିଛି କରିବାକୁ ହେଲେ ମୁଁ ପରଶୁରାମ ବାବୁଙ୍କ ପରାମର୍ଶ ଲୋଡୁଥିଲି। ସେ ଚାଲିଗଲା ପରେ ବାଲୁକୁଦାରେ ଆଉ ସେପରି ସର୍ବମାନ୍ୟ ବ୍ୟକ୍ତି ନାହାନ୍ତି। ତାଙ୍କର ଆଦର୍ଶ, ଶିକ୍ଷକମାନେ ଅନୁକରଣ କରିବା ବିଧେୟ।"

ଶିକ୍ଷକଙ୍କର ମୃତ୍ୟୁ ନାହିଁ କାରଣ ସେ ବଞ୍ଚିରହନ୍ତି ଅଗଣିତ ଛାତ୍ରଙ୍କର ବ୍ୟକ୍ତିତ୍ୱ ଭିତରେ। ଆଜିର ଶିକ୍ଷକମାନେ କାହିଁକି କେଜାଣି ଏମାନଙ୍କୁ ଆଉ ଥରେ ଖୋଜିବାକୁ ହେବ, ଉଜୁଡ଼ିଯାଉଥିବା ଗାଁ ଗଣ୍ଡା, ସ୍କୁଲ୍ କଲେଜ ଓ ସମାଜର ମଥାନରେ ତାଙ୍କୁ ଥାପିଦେବାକୁ ହେବ। ଆଶୀର୍ବାଦ ଭିକ୍ଷା କରିବାକୁ ହେବ ମଣିଷକୁ ରକ୍ଷା କରିବା ପାଇଁ।



# ମୋର ବିଦ୍ୟାଳୟ ଓ ବିଦ୍ୟାଦାତା

**ପ୍ରଫୁଲ୍ଲ କୁମାର ତ୍ରିପାଠୀ**

୧୯୫୫ ରୁ ୧୯୬୨ ମଧ୍ୟରେ ପ୍ରାୟ ପଚାଶ ବର୍ଷ ପୂର୍ବେ ମୁଁ ଗୋଟିଏ ଆବାସିକ ଓଡ଼ିଆ ଉଚ୍ଚବିଦ୍ୟାଳୟର ଅଂତେବାସୀ ଛାତ୍ର ଥିଲି । ପଚାଶ ବର୍ଷ ପୂର୍ବେ ପ୍ରତ୍ୟେକ କାର୍ଯ୍ୟରେ କିଛି ନା କିଛି ଉତ୍ସାହ ଓ ଆଦର୍ଶ ନିଶ୍ଚୟ ଥିଲା । ଏବେ ମିଳୁଥିବା ଅନେକ ଜିନିଷ ସେତେବେଳେ ଆଦୌ ମିଳୁ ନଥିଲା, ତେଣୁ ସମାଜରେ ବସ୍ତୁ ଭୋଗ ଲାଳସା ଏତେ ତୀବ୍ର ଓ ଅପ୍ରତିରୋଧ୍ୟ ହୋଇ ନଥିଲା । ଆମେ ସମସ୍ତେ ପଢୁଥିଲୁଁ, ଲେଖୁଥିଲୁଁ, ଗୀତ ଗାଉଥିଲୁଁ, ଖେଳୁଥିଲୁଁ, ଅଭିନୟ କରୁଥିଲୁଁ, ବକ୍ତୃତା ଦେଉଥିଲୁଁ । ଆମେ ନିଜକୁ ଦୁଇ ଦଳରେ ବାଣ୍ଟି ଦେଇ ନଥିଲୁ ଗାୟକ ଓ ଶ୍ରୋତା, ଖେଳୁଆଡ୍ ଓ ଦେଖଣାହାରି, ଅଭିନେତା ଓ ଦର୍ଶକ କ୍ରମରେ । ଆମେ ସମସ୍ତେ କେବଳ ଗୋଟିଏ ଦଳରେ ଥିଲୁଁ ।

ଆମ ବିଦ୍ୟାଳୟରେ ଏହି ବ୍ୟବସ୍ଥାଟି ଆପଣାଛାଏଁ ହୋଇ ଯାଇ ନଥିଲା । ଏଥଇପାଇଁ ଆମକୁ ନେଇ ସ୍ୱପ୍ନ ଦେଖୁଥିବା ଶିକ୍ଷକ ଓ ପରିଚାଳକମାନେ ଭଲ ଭାବେ ଜାଣିଥିଲେ, ସେମାନଙ୍କର ମୂଳ ଲକ୍ଷ୍ୟ କଅଣ ।

୧୯୬୨ ଜାନୁଆରିରେ ଆନୁଷ୍ଠାନିକ ବିଦାୟ ଗ୍ରହଣ କରି, ସେଠାରୁ ଚାଲି ଆସିଲା ପରେ ମୁଁ ଥରେ ସେଠାକୁ ଯାଇପାରିନାହିଁ । ଅବଶ୍ୟ ମୁଁ କେବେ ବି ସ୍ଥାନ-ମନସ୍କ ହୋଇ ନାହିଁ । ମୁଁ ସର୍ବଦା ବିଷୟ, ପ୍ରସଂଗ, ତଥ୍ୟ-ମନସ୍କତାକୁ ନିଜ ଭିତରେ ପାଳନ କରି ଆସିଛି ।

ଯେଉଁ ପରିବେଶରେ ମୁଁ ଗଠିତ ହୋଇଛି ସେଠାରେ ଅନେକ ଶିକ୍ଷକ ଥିଲେ । ସେମାନଙ୍କ ମଧ୍ୟରୁ କେବଳ ଜଣକୁ ମୋର ଆଦର୍ଶ ବୋଲି ବାଛିବା ମୋ ପକ୍ଷରେ, କେବଳ ଅସଂଭବ ନୁହେଁ, ଅସଂଗତ ଓ ଅନୁଚିତ ମଧ୍ୟ । ସଂପୂର୍ଣ୍ଣ ଶାରୀରିକ ବୃଦ୍ଧି ଓ ବିକାଶ ନିମନ୍ତେ ସୁଷମ ଖାଦ୍ୟର ଭୂମିକା ଯାହା, ବ୍ୟକ୍ତିତ୍ୱ ଗଠନ ନିମନ୍ତେ ସୁଷମ ସଂସର୍ଗର ଭୂମିକା ମଧ୍ୟ ତାହା ।

ହିନ୍ଦୀ ଆମ ପାଠ୍ୟକ୍ରମରେ ଗୋଟିଏ ଉପେକ୍ଷଣୀୟ ବିଷୟ ରୂପେ ଥିଲା । ଆମର ହିନ୍ଦୀ ଶିକ୍ଷକ ଭଗବାନ ମିଶ୍ର ଛାତ୍ରାବାସରେ ଆମର ପଡ଼ୋଶୀ ରୂପେ ଏକୁଟିଆ ରହୁଥିଲେ । ଯୁଧିଷ୍ଠିର ନାୟକ ନିଜ ଗ୍ରାମ ଖଲିଆପାଲିରୁ ପ୍ରତିଦିନ

ଚାଲିଚ଼ାଲି ଆମ ସ୍କୁଲ୍‌କୁ ଆସୁଥିଲେ। ଆମର ପ୍ରଧାନ ଶିକ୍ଷକ ଉଦୟନାଥ ପଣ୍ଡା ଛାତ୍ରାବାସର ନିକଟରେ ସପରିବାର ରହୁଥିଲେ। ମୋ କାକା କଂଦର୍ପ ତ୍ରିପାଠୀ ମଧ୍ୟ ଏକୁଟିଆ ଛାତ୍ରାବାସରେ ରହୁଥିଲେ। ଏହି ଚାରିଜଣ ଶ୍ରେଣୀକକ୍ଷରେ ଓ ବାହାରେ, ମୋ ସହିତ ପାଠ ଓ ଶାଠ ସବୁ ବିଷୟରେ କଥାବାର୍ତ୍ତା କରୁଥିଲେ।

କେବଳ ପ୍ରଧାନ ଶିକ୍ଷକଙ୍କ ପ୍ରତି ମୋ ମନରେ କିଛି ଭୟ ଓ ସଂକୋଚ଼ ଥିଲା। ଅନ୍ୟ ତିନି ଜଣଙ୍କ ପ୍ରତି ସେଭଳି କୌଣସି ଭାବ ନଥିଲା। ଏ ତିନିଜଣ ମୁଁ ଯାହା ଓ ଯେମିତି ଥିଲି, ତାହା ହିଁ ଗ୍ରହଣ କରିନେଇଥିଲେ। ସେମାନେ ମୋ ଠାରେ କୌଣସି ପ୍ରକାର ସଂଶୋଧନ ସୁଦ୍ଧା ଇଚ୍ଛା କରୁ ନଥିଲେ। ବରଂ ମୋର କେତେକ ଅନାବଶ୍ୟକ ଉଗ୍ରତାକୁ ସମର୍ଥନ କରୁଥିଲେ।

ହିନ୍ଦୀ ସାର୍ ଭଗବାନ ମିଶ୍ର କଣେ ରାଷ୍ଟ୍ରବାଦୀ, ମିଷ୍ଟଭାଷୀ, ପରିଚ୍ଛନ୍ନ ମଣିଷ ଥିଲେ। ସେ ସର୍ବଦା ଖଦି ବ୍ୟବହାର କରୁଥିଲେ। କେବଳ ଧୋତି, କୁରୁତା ନୁହେଁ, ତାଙ୍କର ଗାମୁଛା, ରୁମାଲ୍, ମୁଚୁଳା ଖୋଳ, ପାଛୁଡ଼ା ସୁଦ୍ଧା ଖଦି ଥିଲା।

ସେ ନିଜ ଯେଉଁ ସ୍ତରରେ ପହଂଚ଼ିଥିଲେ, ତହିଁର ବହୁତ ଉପରକୁ ଆମକୁ ନେଇଯିବାକୁ ଇଚ୍ଛା କରୁଥିଲେ। ସେ ପ୍ରାୟତଃ ଆମ ସହିତ ତାଙ୍କର "କଟକ ଅନୁଭୂତି" ବିଷୟରେ ଗପ କରୁଥିଲେ। ତାଙ୍କର ବର୍ଣ୍ଣିତ କଟକ ଦେଖିବା ଓ ସେଠାରେ ଚଳପ୍ରଚ଼ଳ ହେବା ପାଇଁ ମୋର ପ୍ରବଳ ଇଚ୍ଛା ହେଉଥିଲା। ମୁଁ ସେତେବେଳେ ଲେଖୁଥିବା ଖୁଚୁରା କବିତା ଇତ୍ୟାଦି ଶୁଣିବାକୁ ତାଙ୍କର ଖୁବ୍ ଆଗ୍ରହ ଥିଲା। ସେ ପ୍ରାୟତଃ "ପ୍ରଫୁଲ୍ଲ ଆଉ କିଛି ନୂଆ ଲେଖିଛ ?" କହି ମୋର ନମସ୍କାରର ପ୍ରତ୍ୟୁତ୍ତର ଦେଉଥିଲେ। ତାଙ୍କରି ଚେଷ୍ଟା ଯୋଗୁଁ ମୁଁ ଖୁବ୍ କମ୍ ସମୟରେ ଦେବନଗରୀ ବର୍ଣ୍ଣମାଳା ସହିତ ପରିଚ଼ିତ ହୋଇପାରିଥିଲି। ଅନର୍ଗଳ ହିନ୍ଦୀ ମଧ୍ୟ କହିପାରୁଥିଲି। ସେ ଥରେ ମୋତେ ଗୋଟିଏ ହିନ୍ଦୀ ଏକାଂକିକାରେ ଅଭିନୟ ସୁଦ୍ଧା କରିବାକୁ କହିଥିଲେ ଏବଂ କେବଳ ତାଙ୍କର କଥା ରକ୍ଷା କରିବା ନିମନ୍ତେ ମୁଁ ଗୋଟିଏ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲି। ଶ୍ରେଣୀଗୃହ ଭିତରେ ଯେତିକି, ତହିଁରୁ ଅଧିକ ଗୁରୁ-ଶିଷ୍ୟ ସଂସର୍ଗ ଘଟୁଥିଲା ବାହାରେ, ଅର୍ଥାତ୍ ରାସ୍ତାରେ, ଖେଳ ପଡ଼ିଆରେ, ଗାଧୁଆ ପୋଖରୀରେ, ଭୋଜନ ବାରଂଡ଼ାରେ। କଳାପଟା, ଚକ୍‌ଖଡ଼ି, ଡଷ୍ଟର, ରେକିଷ୍ଟର, ମାନଚ଼ିତ୍ର ଇତ୍ୟାଦିକୁ ଯେଉଁମାନେ ଶିକ୍ଷାଦାନର ଅପରିହାର୍ଯ୍ୟ ଉପକରଣ କରିପକାଇଛନ୍ତି, ସେମାନେ ହୁଏତ ଏ ସମସ୍ତ ବସ୍ତୁର ଉତ୍ପାଦନକାରୀଙ୍କ ସହିତ ଗୋଟେ ଦେଣନେଣ-ଭିତ୍ତିକ

ସଲାସୁତରା କରିଛନ୍ତି । କିନ୍ତୁ ସ୍ୱାନୁଭୂତି-ମୂଳକ ତଥ୍ୟରୁ ପ୍ରମାଣ କରିହେବ ଯେ ପ୍ରକୃତ ଶିକ୍ଷା ପାଇଁ ଶ୍ରେଣୀ ପ୍ରକୋଷ୍ଠ, କାର୍ଯ୍ୟନିର୍ଘଣ୍ଟ, ଉପସ୍ଥାନ ଖାତା; ଏଭଳିକି ପାଠ୍ୟପୁସ୍ତକର ସୁଦ୍ଧା କୌଣସି ଆବଶ୍ୟକତା ନାହିଁ । ସିନେମା, ଟେଲିଭିଜନ ନ ଥିବା ଯୁଗରେ ଆମେ ଯେ ହିନ୍ଦୀ ଭାଷାକୁ ନିଜର ଅନ୍ତର୍ଗତ କରି ପାରିଥିଲୁଁ, ତାହାକେବଳ ଭଗବାନ ମିଶ୍ରଙ୍କ ସାହଚର୍ଯ୍ୟ ଯୋଗୁଁ ସଂଭବ ହୋଇଥିଲା ।

ଯୁଧିଷ୍ଠିର ନାୟକ ଅତ୍ୟନ୍ତ ଧୀର, ସ୍ଥିର, ମଉନ ପ୍ରକୃତିର ମଣିଷ ଥିଲେ । ସେ ଆମର ଛୋଟିଆ ପୁସ୍ତକାଗାରର ଦାୟିତ୍ୱରେ ଥିଲେ ଏବଂ କେଉଁ ଛାତ୍ରକୁ କେଉଁ ବହି ଲୋଡ଼ା, ତାହା ସ୍ୱତଃ ବୁଝିପାରୁଥିଲେ । ମୁଁ ଅଷ୍ଟମରେ ପଢ଼ିଲାବେଳକୁ ସେ ମୋତେ ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ ଓ ଗୋପୀନାଥ ମହାନ୍ତିଙ୍କ ରଚିତ ବହି ସବୁ ଦେଇସାରିଥିଲେ । ମୁଁ ବି ସେଗୁଡ଼ିକୁ ଅଭିନବ ମାନସିକ ଖାଦ୍ୟ ରୂପେ ବେଶ୍ ଆଗ୍ରହର ସହ ଗ୍ରହଣ କରି ନେଉଥିଲି । ତାଙ୍କ ନିଜର ବାସଗୃହରେ ସେ ଥାକ ଥାକ ସାଧାରଣଜ୍ଞାନ, 'ସଂସାର' ପତ୍ରିକା ସାଇତି ରଖିଥିଲେ । ମୁଁ ଏଗୁଡ଼ିକୁ ତାଙ୍କଠାରୁ ମାଗିଆଣି ପଢୁଥିଲି । ସେ ମଝେ ମଝେ ବାଟରେ ଚାଲୁ ଚାଲୁ ମୋର ସାହିତ୍ୟ ଜ୍ଞାନ ଓ ସାଧାରଣ ଜ୍ଞାନ ପରୀକ୍ଷା କରୁଥିଲେ ଏବଂ ମୋର ଉତ୍ତର ଶୁଣି ପ୍ରାୟତଃ ସନ୍ତୁଷ୍ଟ ହେଉଥିଲେ । ସେ ପ୍ରତ୍ୟେକ ଛାତ୍ରଙ୍କୁ 'ତୁମେ' ବୋଲି ସଂବୋଧନ କରୁଥିଲେ । ଆମର ବିଦ୍ୟାଳୟରେ "ଅଭଦ୍ର ଭାଷା" କହୁଥିବା ପିଲାଙ୍କୁ ପ୍ରକାଶ୍ୟ ଶାରୀରିକ ଦଣ୍ଡ ଦେବାର ବ୍ୟବସ୍ଥା ହୋଇଥିଲା । ଫଳତଃ ଆମର ତୁଣ୍ଡକୁ "ବର୍ଜନୀୟ ଅଶ୍ଳୀଳ ଶବ୍ଦାବଳି" ଆସି ପାରୁନଥିଲେ ।

ଉଦୟନାଥ ପଣ୍ଡା ଅନ୍ୟ ଶିକ୍ଷକମାନଙ୍କ ତୁଳନାରେ ଟିକେ ଅଧିକ ଗଂଭୀର ରହୁଥିଲେ । ତାଙ୍କ ପ୍ରତି ସମସ୍ତଙ୍କ ମନରେ ଏକ ପ୍ରକାର ଭକ୍ତି ମିଶା ଭୟ ଥିଲା । କିନ୍ତୁ ପାଠ ପଢ଼ାଇଲା ବେଳେ ସେ ଇଂଲିଶ୍ ବ୍ୟାକରଣର କର୍ତ୍ତା କ୍ରିୟା ସଂବଂଧ, ଶବ୍ଦକ୍ରମ, ସମୁଚ୍ଚାରିତ ଭିନ୍ନାର୍ଥକ ଶବ୍ଦାବଳି ଭଳି ଜଟିଳ ପ୍ରସଂଗଗୁଡ଼ିକୁ ଏ ଭଳି କୌଶଳ ଓ ଶୈଳୀରେ ବୁଝାଇ ଦେଇଥିଲେ ଯେ, ତାହା ମୁଁ ଏପର୍ଯ୍ୟନ୍ତ ଭୁଲି ନାହିଁ । ଆମେ ଓଡ଼ିଆ ମାଧ୍ୟମ ଗ୍ରାମ୍ୟ ବିଦ୍ୟାଳୟରେ ପାଠ ପଢ଼ି ସୁଦ୍ଧା ଯେଉଁ ପ୍ରକାର ଇଂଲିଶ୍ କହୁଥିଲୁ ଓ ଲେଖୁଥିଲୁ, ତାହା ପରବର୍ତ୍ତୀ ସମୟରେ ଅନେକଙ୍କ ହତଚକିତ କରିଛି । ଏହା ସଂଭବ ହୋଇଥିଲା ମୁଖ୍ୟତଃ ଆମର ହେଡ୍‌ମାଷ୍ଟରଙ୍କ ଯୋଗୁଁ ।

ଆମ ଛାତ୍ରାବାସର ପ୍ରତ୍ୟେକ ଅନ୍ତେବାସୀ ତାହାର (ଛାତ୍ରାବାସର) ପରିଚାଳନାରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରୁଥିଲେ। ପାଳି କରି ଆମକୁ ହାଟକୁ ଯାଇ, ଦୋକାନକୁ ଯାଇ ପନିପରିବା, ଜିନିଷ ପତ୍ର କିଣି ଆଣିବାକୁ ପଡୁଥିଲା। ପଚାଶ ଟଙ୍କାର ଜିନିଷ କିଣିଲେ, ପ୍ରାୟତଃ ଚାରି ପାଞ୍ଚ ଟଙ୍କା କିଣାଳିମାନେ ବ୍ୟକ୍ତିଗତଭାବେ ମାରି ନେଇପାରୁଥିଲେ। ଅନେକଙ୍କର ଏ ଅଭ୍ୟାସ ଥିଲା ଏବଂ ତାହା ସମସ୍ତଙ୍କୁ ଜଣା ମଧ୍ୟ ଥିଲା। କିନ୍ତୁ ଏହାକୁ ସ୍ପର୍ଶକାତର ପ୍ରସଂଗ ରୂପେ ଆଲୋଚନାର ପରିସରକୁ ଆଦୌ ଅଣାଯାଉନଥିଲା।

ବିଦ୍ୟାଳୟର ପରିବା, ଶାଗ ଓ ଫଳ ବଗିଚାରୁ ଲଟା ଓପାଡ଼ିବା, ଗଡୁରେ ପାଣି ନେଇ ଜଳସେଚନ କରିବା ଆମର ସାମୂହିକ ଦାୟିତ୍ୱ ଥିଲା। ବିଦ୍ୟାଳୟ ପରିସରର କେଉଁଠି ବି ଛିଣ୍ଡା ଟୁକୁରା କାଗଜ, କନା, ନଡ଼ା ଇତ୍ୟାଦି ପଡ଼ିଥିବାର ଦେଖିଲେ ଆମେ ସ୍ୱତଃ ତାହା ଉଠାଇ ନେଉଥିଲୁ। ପ୍ରତ୍ୟେକ ଛାତ୍ରକୁ ଖେଳିବା ପାଇଁ ଏକ ରକମ ବାଧ୍ୟ କରାଯାଉଥିଲା। ଶନିବାର ଉପରଓଳି ନିୟମାନୁସାରେ ବକ୍ତୃତା, ଗୀତ, ବାଦ୍ୟ (କେବଳ ହାର୍‌ମୋନିୟମ୍ ଓ ତବଲା), ପଦ୍ୟାଂତ, ଶ୍ଳୋକାବୃତ୍ତି ହେଉଥିଲା। ବର୍ଷକୁ ଅନ୍ତତଃ ଥରେ ନିଶ୍ଚୟ "ବଣଭୋଜି" ହେଉଥିଲା। ଆଠଦଶ ମାଇଲ୍ ଦୂରସ୍ଥ ପାହାଡ଼, ଜଂଗଲ, ନଈକୂଳକୁ ଆମେ ସମସ୍ତେ ଚାଲି ଚାଲି ଯାଉଥିଲୁ ଓ ଫେରୁଥିଲୁ। ଆମକୁ ଆମର ଶିକ୍ଷକମାନେ ରକ୍‌ଖଡ଼ କରି ଗଡ଼ିବାକୁ ସର୍ବଦା ଚେଷ୍ଟା କରୁଥିଲେ। ଘୋର ଅଭାବ ଭିତରେ ଥାଇ ସୁଦ୍ଧା ଆମ ମଧ୍ୟରୁ ହସ, ସାହସ ଓ ଉତ୍ସାହର ଅବସାନ ଘଟି ନଥିଲା।

ଏବେ ମନେ ହେଉଛି, ଆମର ବିଦ୍ୟାଳୟଟି ନିର୍ଧନ ଲୋକଙ୍କର ଏକ ଅନନ୍ୟ ପବ୍ଲିକ୍ ସ୍କୁଲ୍ ରୂପେ ଗଡ଼ି ଉଠୁଥିଲା। "ଶୃଙ୍ଖଳିତ ସ୍ୱାଧୀନତା"ରେ ଅନ୍ତର୍ନିହିତ ବିରୋଧାଭାସକୁ ଅତିକ୍ରମ କରି ଆମେ ପ୍ରତ୍ୟେକ ସାମୂହିକ ଶାରୀରିକ ସ୍ତରରେ ଶୃଙ୍ଖଳିତ ଥିଲୁଁ, କିନ୍ତୁ ବ୍ୟକ୍ତିଗତ ମାନସିକ-ବୌଦ୍ଧିକ ସ୍ତରରେ ଥିଲୁଁ ନିଜର ପରିବେଶ ଓ କାଳଠାରୁ ଖୁବ୍ ଆଗରେ, ଉଗ୍ର ଭାବରେ ସ୍ୱାବଲମ୍ବୀ, ସ୍ୱାଧୀନଚେତା ଓ ଆତ୍ମନିର୍ଭର। ଯେଉଁ ଶିକ୍ଷକମାନେ ୧୨ ରୁ ୧୭ ବର୍ଷ ବୟସର ପିଲାଙ୍କୁ ନେଇ ଏଭଳି ଭାବରେ ପରିବେଶଟିଏ ଗଢ଼ି ପାରୁଥିଲେ ସେମାନଙ୍କର ଶିକ୍ଷାଦର୍ଶନ ଓ ପଦ୍ଧତିକୁ ଆଦୌ ସନ୍ଦେହ କରାଯାଇପାରେନା। ସେମାନଙ୍କର ଏକମୁଖୀ ନିଷ୍ଠା ଓ କର୍ତ୍ତବ୍ୟାନୁରାଗ ଯୋଗୁଁ ଏହା ସଂଭବ ହୋଇଥିଲା।

ଗୋଟିଏ କଥାରେ କହିଲେ ଆମର ବିଦ୍ୟାଳୟରେ ପରୀକ୍ଷା ପାଇଁ ପରୀକ୍ଷାର୍ଥୀ ବଦଳରେ ଦେଶ ପାଇଁ ନାଗରିକ ତିଆରି ହେଉଥିଲେ। ପରୀକ୍ଷା ସବୁ ନିୟମିତ ହେଉଥିଲା, କିନ୍ତୁ ଜୀବନ ଗଠନକୁ ହିଁ ସର୍ବାପେକ୍ଷା ଅଧିକ ଗୁରୁତ୍ୱ ଦିଆଯାଉଥିଲା। ବିଦ୍ୟାଳୟ ଛାଡ଼ିଲାପରେ ଆମେ କେମିତି ନିଜେ ନିଜେ ଚଳିପାରିବୁ, ତାହା ସେହି ବିଦ୍ୟାଳୟରୁ ହିଁ ଶିଖୁଥିଲୁ।

ଅତି ପିଲା ବୟସରୁ ଯାବତୀୟ ଗୃହକର୍ମ ଆମେ ନିଜେ କରୁଥିଲୁଁ। ଖଟ ତେରିବା, ବିଛଣା ଚଉତିବା, ଘର ବନ୍‌ଡ଼ାଇବା, କପଡ଼ା କାଚ଼ିବା, ବାସନ ମାଜିବା ଭଳି ଦୈନନ୍ଦିନ କାମ ସହିତ ନଈ ପହଁରିବା , ଗଛ ଚଢ଼ିବା, ପାହାଡ଼ ଚଢ଼ିବା, ପରିବା କାଟିବା, ଛୋଟକାଟର ସିଲେଇ କରିବା, ଫର୍ଦଫର୍ଦ କାଗଜରୁ ଖାତା ତିଆରି କରିବା, କାଗଜ ଫୁଲ ବନାଇବା ଭଳି ସବୁ ରକମର କାମ ଆମକୁ ନିଜ ହାତରେ କରିବାକୁ ପଡୁଥିଲା। ଏଥିପାଇଁ କୌଣସି ଶିକ୍ଷକ ଆମକୁ ଜଗି ବସୁ ନଥିଲେ। ବାସ୍ତବିକ, ସେଠାରେ ପ୍ରତ୍ୟେକ ଛାତ୍ରର ବ୍ୟକ୍ତିତ୍ୱ ବିକାଶ କାର୍ଯ୍ୟକ୍ରମଟି ଏଭଳି ପଦ୍ଧତିବଦ୍ଧ ହୋଇଯାଇଥିଲା ଯେ, ସେଥିନିମନ୍ତେ ବ୍ୟକ୍ତିଗତ ପ୍ରୟାସର କୌଣସି ଆବଶ୍ୟକତା ନଥିଲା।

ସେହି କର୍ମନିଷ୍ଠା ଓ ଶ୍ରମପ୍ରୀତି ଏଯାଏଁ ମୋର ଆଦର୍ଶ ହୋଇରହିଛି। ମୋର ବିଦ୍ୟାଳୟ ଭଳି ଅନ୍ୟ ଏକ ବିଦ୍ୟାଳୟ ମୁଁ ସ୍ଥାପନ କରିପାରିନାହିଁ, କିନ୍ତୁ ମୋର ବାସଗୃହକୁ ଏବେ ବି ବିଦ୍ୟାଳୟ ବୋଲି ମନେକରେଁ। ଏବେ ବି ଘରେ ବାହାରେ ଯେ କୌଣସି କାମ ମୁଁ କୁଣ୍ଠାବିବର୍ଜିତ ଭାବେ କରିପାରୁଛି। ପଚ଼ାଶ ବର୍ଷ ପରେ ସୁଦ୍ଧା ଯେଉଁ ଆଦର୍ଶ ମ୍ଳାନ ହୋଇନାହିଁ, ତହିଁରେ କିଛି ଭୁଲ୍ ଥିଲା ବୋଲି କହିପାରିବି କି ?

ଜୀବନଯାପନ କରିବାର ଯେଉଁ ନୀତି, କୌଶଳ, ଯୋଗ୍ୟତା ଓ ଦକ୍ଷତା ମୁଁ ସେହି ସିଆଲଖଣ୍ଡହଥାସ୍ଥିତ ହାଇସ୍କୁଲ୍‌ର ଛାତ୍ର ଥିଲା ବେଳେ ଶିଖିଛି, ତାହା ଏଯାଏଁ ମୋର କାମରେ ଲାଗୁଛି। ମୁଁ ଘରେ ଓ ବାହାରେ ମୋର ପିଲାଙ୍କୁ ସେହି ନୀତି, କୌଶଳ, ଯୋଗ୍ୟତା ଓ ଦକ୍ଷତା ହସ୍ତାନ୍ତର କରିବା ପାଇଁ ସର୍ବଦା ଚେଷ୍ଟିତ ହୋଇଛି। ଏଥିରେ ସଫଳତା ବା ବିଫଳତାର ମାପ ଯୋଖ ସେମାନେ କରିପାରନ୍ତି।



# ଶିକ୍ଷକ ଥିଲେ ବୋଲି

*ନିରଞ୍ଜନ ବାରିକ*

ସେଦିନ ସକାଳୁ ପ୍ରାତଃ ଭ୍ରମଣରୁ ଫେରୁ ଫେରୁ ସ୍ତ୍ରୀ ମୋତେ ଶୁଣାଇ ଶୁଣାଇ କହିଲେ- ଜାଣିଛ, ଆଜି ତୁମ ସାର୍ ଆସିଥିଲେ। ତୁମକୁ ଖୋଜୁଥିଲେ, କହି ଯାଇଛନ୍ତି କାଲି ଏତିକିବେଳକୁ ସେ ପୁଣି ଆସିବେ। ତୁମେ ଘରେ ଥିବ। ତାଙ୍କର ତୁମକୁ କ'ଣ କହିବାର ଅଛି। ମୋର ସାର୍ ବୋଲି କହିଲେ, ଆମ ଘରେ ମୋ ସ୍ତ୍ରୀ ଓ ପିଲାମାନେ କେବଳ ଜଣକୁ ଜାଣନ୍ତି, ଯାହାଙ୍କ ବିଷୟରେ ମୁଁ କଥାପ୍ରସଙ୍ଗରେ ଅନେକ ବାର କହିଛି ଏବଂ ଯାହାଙ୍କୁ ଆମ ଘରେ ସମସ୍ତେ ଅନେକ ବାର ଦେଖିଛନ୍ତି। ସେ ହେଉଛନ୍ତି ମୋର ହାଇସ୍କୁଲ୍ ବେଳର ଅତି ନମସ୍ୟ ଓ ପୂଜ୍ୟ ଶିକ୍ଷକ ଶ୍ରୀଯୁକ୍ତ ଦାଶରଥି ନାୟକ। କଲମ ଧରାଇ ଲେଖି ଶିଖାଇଛନ୍ତି ସେ। ହାତଧରି ମଥା ଟେକି ବାଟ ଚାଲିବା ଶିଖାଇଛନ୍ତି ସେ। ଅନ୍ତରରେ ଆଶା ଆକାଂକ୍ଷାର ମଶାଲ ଜଳାଇ ମନରେ ସାହସ ଓ ପ୍ରେରଣାଭରି ଦେଇଥିଲେ ମଧ୍ୟ ସେ ହିଁ। ସେ ଅବଶ୍ୟ ସେତେବେଳକୁ ଆଉ ଶିକ୍ଷକ ନ ଥିଲେ। ଅନେକ ଦିନରୁ ଶିକ୍ଷକତା ଛାଡ଼ି ଠିକାଦାରୀ କରୁଥାଆନ୍ତି। ଭୁବନେଶ୍ୱର ସ୍ଥିତ ଶହିଦନଗରରେ ନିଜ ଘର କରି ରହୁଥାଆନ୍ତି। ଜଣେ ଅତି ପ୍ରତିଷ୍ଠିତ ସୁପର୍କ୍ଲାସ୍ କଣ୍ଟ୍ରାକ୍ଟର ହିସାବରେ ତାଙ୍କର ମଧ୍ୟ ବହୁତ ଖାତିର ଥାଏ ବୋଲି ଶୁଣିଥିଲି। ମୁଁ ବାଣୀବିହାରରେ ଯୋଗ ଦେବା ପରଠାରୁ ତାଙ୍କ ସହିତ ପ୍ରାୟ ଦେଖାହୁଏ। ସେ ମଧ୍ୟ ଆସନ୍ତି ସମୟ ପାଇଲେ। ମୋର ଭଲମନ୍ଦ ଖବର ବୁଝି ମୋତେ ଉତ୍ସାହ, ପ୍ରେରଣା ଅଥବା ଦରକାର ଥିଲେ ଆଶ୍ୱାସନା ଦେଇଥାଆନ୍ତି। ବେଳେବେଳେ ତାଙ୍କ ଠିକାଦାରୀ ଜୀବନର କେତେକ ଅନୁଭୂତି ବି କହିଥାଆନ୍ତି। ମୋ ମନରେ କୌଣସି ନୈରାଶ୍ୟ ବା ହତାଶାର ସୂଚନା ଦେଖିଲେ ମୋତେ କୁହନ୍ତି-ଶୁଣ, ତୁମେ ପ୍ରମୋଶନ ପାଅ ବା ନ ପାଅ; ୟୁ.ଜି.ସି. ସ୍କେଲ୍ ମିଳୁ ବା ନ ମିଳୁ; ତୁମର କର୍ତ୍ତବ୍ୟ ଜାରି ରଖ। ତୁମ ଛାତ୍ରଛାତ୍ରୀଙ୍କୁ ନିରାଶ କରନି। ମୁଁ ଚାହେଁ ତମେ ଜଣେ ଭଲ ଶିକ୍ଷକ ହୁଅ। ଆଚ୍ଛା ତମେ ଲକ୍ଷ୍ୟ କରିଛ ତମ ପିଲାଙ୍କ ଆଖିକୁ, ଯୋଉଦିନ କ୍ଲାସ୍‌ରେ ତୁମେ ତମ ମନବୋଧ ହେଲାଭଳି ପଢ଼େଇଛ ବୋଲି ଭାବିଥାଅ ? ସେ ଆଖିର ଭାଷା ପଢ଼ି ତମକୁ ଖୁସି ଲାଗେନି ? ପଇସାରେ ସେ ଖୁସି ତମେ କିଣି

ପାରିବ ? ଏ ଠିକାଦାରୀରେ ପଇସା ସିନା ଅଛି, ସେ ଖୁସି କାହିଁ ? ଏଥିରେ କ'ଣ ଜୀବନ ଅଛି ? ତାଙ୍କ ଶିକ୍ଷକ ଜୀବନର ସେହି ଅଭୁଲା ସ୍ମୃତି ସନ୍ତକକୁ ମୋ ଆଗରେ ଥୋଇ ମୋ ଭିତରେ ତା'ର ପ୍ରତିଫଳନକୁ ଦେଖିବାର ଅଭିଳାଷ ଏହିପରି ଜାହିର କରି ଥାଆନ୍ତି ବୋଧହୁଏ। ଏ ହେଉଛନ୍ତି ମୋର ସେହି ଆଦର୍ଶ ଶିକ୍ଷକ-ଦାଶରଥୀ ମାଷ୍ଟ୍ରେ।

ପ୍ରାୟ ପଚାଶ ବର୍ଷ ତଳର କଥା। ସେତେବେଳେ ମୁଁ ମୋ ଗାଁ ପାଖ ଏକ ସ୍କୁଲ୍‌ରୁ ମାଇନର ବୃତ୍ତି ପାଇ ପାସ୍ କଲାପରେ ଦୂରବର୍ତ୍ତୀ ଏକ ହାଇସ୍କୁଲ୍‌ରେ ଅଷ୍ଟମ ଶ୍ରେଣୀର ଛାତ୍ର ଥାଏ। ବନମାଳୀ ବ୍ରହ୍ମଚାରୀଙ୍କ ଦ୍ୱାରା ପ୍ରତିଷ୍ଠିତ ସେ ହାଇସ୍କୁଲ୍ ହେଉଛି ଦୋହଳୀ ମଡ଼େଲ ହାଇସ୍କୁଲ୍। ଷାଣ୍ମାସିକ ପରୀକ୍ଷାରେ ଆଶାତୀତ ଭାବେ ବହୁତ ଭଲ ନମ୍ବର ରଖି ସ୍କୁଲ୍‌ରେ ସମସ୍ତଙ୍କର ଚର୍ଚ୍ଚାର ପରିସର ଭିତରକୁ ଆସିଯାଇ ଥାଏଁ। ସେତେବେଳେ ଦାଶରଥୀ ମାଷ୍ଟ୍ରେ ଅଷ୍ଟ ଶ୍ରେଣୀର ଶିକ୍ଷକ ନଥିଲେ। ସେ ନବମ, ଦଶମ ତଥା ଏକାଦଶ ଶ୍ରେଣୀରେ ଏକାଧାରରେ ଗଣିତ, ଇଚ୍ଛାଧୀନ ଗଣିତ, ସାଧାରଣ ବିଜ୍ଞାନ ତଥା ଭୂଗୋଳ ପଢ଼ାଉଥିଲେ। ଜଣେ ଉଚ୍ଚକୋଟୀର ଶିକ୍ଷକ ହିସାବରେ ତାଙ୍କର ଖ୍ୟାତି ସେତେବେଳେ ଆଖପାଖରେ ସବୁ ସ୍କୁଲ୍‌କୁ ବ୍ୟାପି ଯାଇଥାଏ। ସେ ସମୟରେ ମାଟ୍ରିକ୍ ପରୀକ୍ଷାରେ କେତେବାର ସେ ସ୍କୁଲ୍‌ର କିଛି ପିଲା, ଗଣିତ ସମେତ ଭୂଗୋଳରେ ମଧ୍ୟ ଶତକଡ଼ା ଶହେ ନମ୍ବର ରଖି ବିରଳ ରେକର୍ଡ ପ୍ରତିଷ୍ଠା କରିବାର ଗୌରବ ଅର୍ଜନ କରିଥାଆନ୍ତି। ସେଥିପାଇଁ ବିଭିନ୍ନ ସ୍କୁଲ୍‌ରୁ ଦାଶରଥୀ ମାଷ୍ଟ୍ରେଙ୍କୁ ଡକରା ଆସୁଥିଲା। ସେକେଣ୍ଡାରୀ ବୋର୍ଡ ତରଫରୁ ଆୟୋଜିତ ଶିକ୍ଷକ ତାଲିମ କର୍ମଶାଳାରେ ପ୍ରଶିକ୍ଷକ ହିସାବରେ ସେ ଆମନ୍ତ୍ରିତ ହୋଇଥିବାର ଶୁଣାଯାଉଥିଲା। ଦୂରରୁ ଦେଖି ତାଙ୍କୁ ଆମେ ଚିହ୍ନୁଥିଲୁ, କିଏ ଚିହ୍ନାଇ ଦେଲେ। ଦିନେ ସେ ଅପ୍ରତ୍ୟାଶିତ ଭାବେ ଆମ କ୍ଲାସ୍‌କୁ ଆସିଥିଲେ, ଚିହ୍ନଟ କରି ଛିଡ଼ାକରାଇ ପଚାରିଲେ - କିରେ, ତୋର କୁଆଡ଼େ ଗଲା ପରୀକ୍ଷାରେ ଛ' ଶହରୁ ଅଧିକ ନମ୍ବର ଅଛି ? ଅଙ୍କ ଆଉ ବିଜ୍ଞାନରେ କେତେକେତେ ରଖିଛୁ ? କହିଲି - ଅଙ୍କରେ ଶହେ ଏବଂ ବିଜ୍ଞାନରେ ଚଉରାନବେ। ମୋତେ ଏକ ପ୍ରକାର ଆହ୍ୱାନ ଦେଇ କହିଲେ - ହଉ ତୁ ନବମକୁ ଆସ୍, ଦେଖିବି ଯଦି ବିଜ୍ଞାନରେ ଅଣଚାଷ ରଖିପାରିବୁ ଆଉ ଅଙ୍କରେ ମୋ ହାତରୁ ଷାଠିଏ; ତା'ହେଲେ ତୋତେ ମାନିବାକୁ ପଡ଼ିବ। ନବମ ଶ୍ରେଣୀ ପରୀକ୍ଷାରେ ମୋର ଅଙ୍କଖାତା ସାରା ନାଲି ପେନ୍‌ସିଲରେ

ଗାର ମାରି ଲେଖିଥିଲେ - ଚିଠି ଲେଖିଛି, ଚିଠି ଲେଖିଛି; ପ୍ରତ୍ୟେକ ପୃଷ୍ଠାରେ; ସବୁ ଉତ୍ତର ଠିକ୍ ହେବା ସତ୍ତ୍ୱେ ଦେଇଥିଲେ ଚଉବନ। ବିଜ୍ଞାନ ଖାତାରେ ମଧ୍ୟ ଅନୁରୂପ ଲାଲ୍ ମନ୍ତବ୍ୟ- - ଚିତ୍ର କାହିଁ ? ଶିରୋନାମା କାହିଁ ? ପୂର୍ବରୁ କହିଥିବାକଥା ରଖି ବୋଧହୁଏ ଦେଇଥିଲେ ଠିକ୍ ଅଣଚାଷ। ମୁଁ ସେଦିନ ବହୁତ କାନ୍ଦିଥିଲି। ମୋତେ ପାଖକୁ ଡାକି ଗୋଟିଏ ଅଙ୍କ ବହି ଦେଖାଇ ବୁଝାଇଥିଲେ - ଦେଖୁଛୁ, ବହିରେ କେମିତି ଲେଖାଯାଇଛି। ଗାଣିତିକ ସମୀକରଣ, ନିଗମନ, ନିର୍ଣ୍ଣୟନ ଅଥବା ଆକଳନ; ସବୁ କିଛି ସ୍ୱତନ୍ତ୍ର ଭାବେ, ଅଲଗା ସୁସଜ୍ଜିତ ତଥା ସୁସ୍ପଷ୍ଟ ଭାବେ, ଗଣିତ ପାଇଁ ସ୍ୱତନ୍ତ୍ର ସାଙ୍କେତିକ ଲିପିରେ ଲେଖାଯାଇଛି। ଯୁକ୍ତିମୂଳକ ବ୍ୟାଖ୍ୟା, ଆବଶ୍ୟକ ମୁତାବକ କଥିତ ଭାଷାଲିପିର ସଂକ୍ଷେପରେ ଲେଖାଯାଇଛି। କମା ପୂର୍ଣ୍ଣଛେଦ ସହିତ ବ୍ୟାକରଣର ପ୍ରୟୋଗରେ ମଧ୍ୟ କୌଣସି ତ୍ରୁଟି ନାହିଁ। ଆଖି ପକାଇଲେ ସବୁ ଜଳ ଜଳ କରି ଦେଖାଯାଉଛି। ଖୋଜିବାକୁ ପଡୁନି। ତୁ କ'ଣ ସେଇଆ କରିଛୁ ? ତୋ ଖାତାର ଜଙ୍ଗଲରେ ତ ଉତ୍ତର ଖୋଜିବାକୁ ପଡୁଛି। ଆରେ. ପରୀକ୍ଷକ ଖାତା ଖୋଲିଦେଲେ, ଆଖି ପିଛୁଳାକେ ସଠିକ୍ ଉତ୍ତରଗୁଡ଼ିକ ତୋର ଝଲକି ଉଠିବା କଥା। ତା' ହେଲେ ତୁ ଜବର କରି ପରୀକ୍ଷକ ହାତରୁ ଶତକଡ଼ା ଶହେ ନମ୍ବର ଛଡ଼ାଇ ଆଣି ପାରିବୁ। ସେ ଅଙ୍କ ହେଉ ବା ବିଜ୍ଞାନ ହେଉ, ହେଉ ଅବା ଭୂଗୋଳ ବା ଅନ୍ୟ କିଛି। ଆଉ ତୁ ବାମ ପଟୁ ଆରମ୍ଭ କରି ଡାହାଣ ପର୍ଯ୍ୟନ୍ତ ପୁରା ମାଡ଼ି ଯାଇ, କମା ପୂର୍ଣ୍ଣଛେଦ ଭୁଲି, ଗାଣିତିକ ସଙ୍କେତ ସବୁର ସମୁଚିତ ବ୍ୟବହାର ନକରି, ତୋ ଭାଷାରେ ଚିଠି ଲେଖିଲା ପରି ଲେଖି ଚାଲିଛୁ, ଅନର୍ଗଳ ଭାବରେ। ସବୁ ଉତ୍ତର ଠିକ୍ ଥିଲେ କ'ଣ ହେବ ? ପରିବେଷଣର ଧାରା ଆଉ ଶୈଳୀ ଆଦୌ ସନ୍ତୋଷଜନକ ନୁହେଁ। ଆରେ, ସମସ୍ତଙ୍କର ଭଳି ଜଣେ ହେବାର ବାହାଦୂରୀ କିଛି ନାହିଁ, ବରଂ ସମସ୍ତଙ୍କଠାରୁ ଭିନ୍ନ ଓ ଉତ୍ତମ ହୋଇ, ସ୍ୱତନ୍ତ୍ରଭାବେ ଜଣେ ହୋଇ ଛିଡ଼ା ହେବାକୁ ଶିଖ।

ସେଦିନ ମୁଁ ତାଙ୍କର ଏତେ କଥା ସବୁ ଠିକ୍ ଭାବରେ ଗ୍ରହଣ କରିଥିଲି କି ନାହିଁ ମୋର ମନେ ନାହିଁ। କିନ୍ତୁ ପରବର୍ତ୍ତୀ କାଳରେ ବାଧ୍ୟ ପରବଶ ହୋଇ କିଛିଟା ଚେଷ୍ଟା କରିଛି। ପ୍ରତ୍ୟେକ ଥର ନୂଆ ନୂଆ ନାଲି ମନ୍ତବ୍ୟ ପରୀକ୍ଷା ଖାତାରେ ଲେଖାଯାଏ, ଆଶାନୁରୂପ ନମ୍ବର ମିଳେ ନାହିଁ। ସମାନ ଚିହ୍ନ ତଳକୁ ସମାନଚିହ୍ନ ଏକ ଧାଡ଼ିରେ ନଥିଲେ, ତାକୁ ଏକ ଲାଲ ସର୍ପିଳ ରେଖାରେ ଅନୁସରଣ କରି ଲେଖନ୍ତି - ନଇ ବହି ଯାଉଛି। ଆଉସବୁ ଠିକ୍ ଥିଲେ ନମ୍ବର

ମିଳେ ଦଶରୁ ପାଞ୍ଚ। ଏହିପରି କେତେ ତାଗିଦ୍, କେତେ ଚେଷ୍ଟା ଭିତର ଦେଇ ଏକାଦଶ ଶ୍ରେଣୀ ହୁଏ। ଟେଷ୍ଟ ପରୀକ୍ଷାରେ ମୋତେ ମିଳିଥାଏ ଅଙ୍କରେ ପଞ୍ଚଷଠି ଆଉ ସର୍ବମୋଟ ପାଞ୍ଚଶହ ଏଗାର। ମୋ ମନଟି ଛୋଟ ହୋଇଥାଏ। ତେବେ ସେ ଯାହାହେଉ ସେତେବେଳକୁ ମୁଁ ଅଭ୍ୟାସଗତ ଭାବରେ କେତେକ କଥା ନିଜେ ଉପଲବ୍ଧି କରିପାରୁଥିଲି। ଲେଖା ମାଧ୍ୟମରେ ହେଉ ବା କଥା ମାଧ୍ୟମରେ ହେଉ, ନିଜର ଉକ୍ତି ବା ବକ୍ତବ୍ୟକୁ ପରିବେଷଣ କଲାବେଳେ ଯଥାଯୁକ୍ତ ସ୍ୱତନ୍ତ୍ର ଏକ ଶୈଳୀ ନିତାନ୍ତ ଦରକାର ବୋଲି ଧୀରେ ଧୀରେ ଜାଣି ପାରୁଥିଲି। ଆଉ ସେଥିପାଇଁ ଚେଷ୍ଟା ବି କରୁଥିଲି। କିନ୍ତୁ ପରୀକ୍ଷକ, ପାଠକ ବା ଶ୍ରୋତାଙ୍କ ଉପରେ ତାହାର ଗଭୀର ପ୍ରଭାବ ମୁଁ ସେତେବେଳେ ଜାଣିନଥିଲି, ଯାହାକି ପରବର୍ତ୍ତୀ ଜୀବନରେ ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଉଠିଥିଲା।

ଏହି ପ୍ରସଙ୍ଗରେ ଆଉ ଏକ କଥା ମୁଁ ସର୍ବିଙ୍କୁ ମନେ ପକାଇ କହିଥାଏ। ଥରେ ସେହି ଦାଶରଥୀ ମାଷ୍ଟ୍ରେ ଏକାଦଶ ଶ୍ରେଣୀ ବେଳେ ଓଡ଼ିଆରେ ମୋର ଷ୍ଟାଣ୍ଡାର୍ଡ କ'ଣ ଜାଣିବାକୁ ଶ୍ରେଣୀ କକ୍ଷରେ ପ୍ରଶ୍ନୋତ୍ତର ଖାତା ମୋ ଠାରୁ ମାଗି ନେଲେ। ଦେଖିସାରି ଅସନ୍ତୋଷ ବ୍ୟକ୍ତ କରି କହିଲେ - କଣରେ ତୁ କ'ଣ ସବୁ କିଛି ସେଇ ଗୋଟିଏ ଡାଞ୍ଚାରେ ଲେଖୁଛୁ। କ୍ରିୟା ଆଗରେ ଥାଇ କର୍ତ୍ତାକୁ ପଛରେ ଥୋଇ ଉପନ୍ୟାସ ଶୈଳୀ ଦେଖାଉଛୁ। ରାଜକୀୟ ଚରିତ୍ର, ଆଉ ପରିବେଶ ପାଇଁ ଯୋଉ ଭାଷା ଶୈଳୀ, ଗାଉଁଲୀ ଚରିତ୍ର ଆଉ ପରିବେଶ ପାଇଁ ସେଇଆ କ'ଣ ଠିକ୍ ହେବ ? ଆରେ, ସ୍ଥାନ - କାଳ ଆଉ ପାତ୍ରକୁ ଦୃଷ୍ଟିରେ ରଖି ଉପଯୁକ୍ତ ଭାବରେ ଭାବ ଆଉ ରସକୁ ଫୁଟାଇ ପାରିବାର ନାମ ତ ସାହିତ୍ୟ। ସେଥିପାଇଁ ସ୍ୱତନ୍ତ୍ରଭାବେ ଶବ୍ଦ, ଶୈଳୀ ଆଉ ବାକ୍ୟ ଚୟନ କରି ପାରିବା ହେଉଛି ସାହିତ୍ୟିକର ବାହାଦୂରୀ। ସେତେବେଳେ ଚତୁର୍ଥ ଶ୍ରେଣୀରେ ପଢୁଥିବା ତାଙ୍କ ବଡ଼ଭାଇର ପୁଅ ବାବୁର ସାହିତ୍ୟ ବହିରୁ ମୋତେ ପଚାରିଲେ - ଆଚ୍ଛା 'କମଳ' ଶବ୍ଦ ଲଗାଇ ଏକ ବାକ୍ୟ କହ, ଯାହାକି ଚତୁର୍ଥ ଶ୍ରେଣୀ ପିଲାର ମୁହଁରେ କୁହାଯାଇ ପାରିବ। ମୁଁ ବିଶେଷ ନ ଭାବି କହିଥିଲି କମଳ ପୁଷ୍କରିଣୀରେ ପ୍ରସ୍ଫୁଟିତ ହୋଇଛି। ସେ ମୋତେ ବିଦ୍ରୁପ କରି ହସିଥିଲେ। କହିଲେ - ହେଲାନି, ଭଲତ ଶୁଭୁନି। ଆଉ ଚତୁର୍ଥ ଶ୍ରେଣୀ ପିଲା ପାଇଁ ନୁହେଁ। କମଳ ଏକ ସାଧୁ ଶବ୍ଦ ହେଲେବି ସରଳ ଶବ୍ଦଟିଏ। ତେଣୁ ଗୁରୁ ଚାଣ୍ଡାଳ ଦୋଷ ନ ରଖି ଏହିଭଳି ସରଳ ଶୁଭୁଥିବା ସାଧୁ ଶବ୍ଦ କିଛି ବାଛିବାକ୍ୟଟିଏ ଚିନ୍ତାକର। ପାରି ନ ଥିଲି

ସେଦିନ। ଏହାର ତାତ୍ପର୍ଯ୍ୟ ମଧ୍ୟ ବୁଝି ନ ଥିଲି ଅନେକ ଦିନ ପର୍ଯ୍ୟନ୍ତ। କଲେଜରେ ପଢୁଥିଲା ବେଳେ ଦିନେ ସୁରେନ୍ଦ୍ର ମହାନ୍ତିଙ୍କର ନୀଳ ଶଇଳ ବହିଟିପଢୁଥିଲା ବେଳେ ସର ଦେଇର ଚଟିଘର ଶିରୋନାମାର ଅଧ୍ୟାୟଟିରେ ଅଟକି ଯାଇଥିଲା। ଅଚାନକ ମୋର ମନେ ପଡ଼ିଥିଲା ଦାଶରଥୀ ମାଷ୍ଟ୍ରେଙ୍କର କହିଥିବା କଥା। ଉପଲବ୍ଧି କଲି ଲେଖକଙ୍କର ଶବ୍ଦ ଚାତୁରୀରେ ଥିବା ଯାଦୁମନ୍ତ୍ରକୁ ଯାହା ମୋତେ ସେତେବେଳକୁ ସମ୍ମୋହିତ କରିସାରିଥିଲା। ଉପଯୁକ୍ତ ଶବ୍ଦ ଆଉ ଶୈଳୀର ଚୟନ କରି, ଲେଖକ ପାଠକକୁ ଏକ ବିଶାଳ ଭାବ ସମୁଦ୍ରରେ ଭସାଇ ନେଇ ଇତିହାସର ସେହିଦିନ, ସେହି ପରିବେଶରେ, ସେହି ଚରିତ୍ର ଆଗରେ ପହଞ୍ଚାଇ ଦେବାରେ କିଭଳି ଚମତ୍କାର ଭାବରେ ସଫଳ ହୋଇ ପାରିଛନ୍ତି। ପ୍ରତ୍ୟେକ ବାକ୍ୟରୁ ଯେ କୌଣସି ଶବ୍ଦଟିଏ ଉଠାଇ ନେଇ ପ୍ରତିବଦଳରେ ତା'ର ଏକ ଭିନ୍ନ ପ୍ରତିଶବ୍ଦ ସେଠାରେ ରୋପଣ କରିଦେଲେ, ସେ ବାକ୍ୟର ଭାବ ଆଉ ପ୍ରଭାବ ଏକାହୋଇ ରହିବନି। ଯେମିତି; "ସର ଦେଇର ଚଟିଘର" ବଦଳରେ "ସର ଦେଇର ହୋଟେଲ୍" ଅଥବା "କମଳାଦେବୀ ପାନ୍ଥଶାଳା" ଇତ୍ୟାଦି ଯାହା ଭାବିଲେ ବି ସେହି ଏକା କଥା କେବେହେଲେ ହେବନି। ସାର୍‌ଙ୍କର ସାହିତ୍ୟ ଉପରେ ମନ୍ତବ୍ୟର ତାତ୍ପର୍ଯ୍ୟ, ସେତେବେଳେ ବୁଝିଥିଲି। ଏହିଭଳି ସ୍କୁଲ୍ ବେଳରେ ତାଙ୍କର ପଦେ ପଦେ ଅନେକ କଥା ସ୍ମୃତିପଟର କେଉଁ ନିଭୃତ କୋଣରୁ ଗୁଞ୍ଜରିତ ହୋଇ ମୋର ଜୀବନର ଚଲାପଥରେ ବାରମ୍ବାର ରାହା ଦେଖାଇଛି।

ସେ ଥିଲେ ଜଣେ ଭିନ୍ନ କିସମର ଶିକ୍ଷକ। ପଢ଼ାଇବା ଭିତରେ ଅନେକ ପ୍ରଶ୍ନ ପଚାରୁଥିଲେ। ନିରୁପାୟ ହୋଇ ଜଟିଳ ପ୍ରଶ୍ନର ଉତ୍ତର ବା ସମାଧାନ କ'ଣ ଅବା କିଭଳି ହେବ ପଚାରିଲେ କହନ୍ତି- ମୁଁ ତ ଜାଣିନି ଠିକ୍ ଭାବରେ; କିନ୍ତୁ ତୁ କହିଲେ ବା ଲେଖିଲେ ମୁଁ କହିଦେବି, ଠିକ୍ ହେଲା କି ନାହିଁ। ଫଳରେ ପ୍ରତ୍ୟେକ ପିଲା ନିଜସ୍ୱ ଢ଼ଙ୍ଗରେ ଚିନ୍ତାକରି ଶିଖିପାରୁଥିଲା। ଉପଲବ୍‌ଧି ବି ଆସୁଥିଲା। ମୋତେ ଥରେ କହିଲେ- ଭୌଗଳିକ କାରଣ ଦର୍ଶାଇ ରାଉରକେଲାର ଇସ୍ପାତଶିଳ୍ପ ପ୍ରତିଷ୍ଠାର ଯଥାର୍ଥତା ପ୍ରତିପାଦନ କରି ଲେଖିପାରିବୁ ? ମୁଁ ସେହିଦିନ ଗୋଟିଏ ପୃଷ୍ଠାର ଏକ ଉତ୍ତର ଲେଖି ନେଇ ଦେଖାଇଲି। ସେ ନ ପଢ଼ି ଫେରାଇ ଦେଇ କହିଲେ- ଏ ନୁହେଁ; ଅଧନମ୍ବର ପ୍ରଶ୍ନଟିଏ, ଏକ ମିନିଟ୍‌ରେ ଉତ୍ତର ଲେଖିବାକୁ ହେବ। ଫାଳେ ଲେଖି ପାରିବୁ ? ସଂକ୍ଷେପରେ ଲେଖି ଶିଖ। ଗୋଟିଏ ପାରାଗ୍ରାଫରେ ସଂକ୍ଷିପ୍ତ ଭାବରେ ଲେଖି ଦେଖାଇଲି। ଏଥର ପଢ଼ିଲେ, ଆଉ

କହିଲେ- ଏ ନୁହେଁ, ତୋର ଜଟିଳ ବାକ୍ୟର ଏଣୁ, ତେଣୁ, ଯେଣୁ ଇତ୍ୟାଦିର ଜଙ୍ଗଲ ଦେଇ ବାକ୍ୟ ଶେଷରେ ପହଞ୍ଚିଲା ବେଳକୁ ଆରମ୍ଭରେ କ'ଣ ଲେଖିଛୁ ଭୁଲି ଗଲିଣି। ଉତ୍ତରର ଝଲକ୍ ନାହିଁ, ଜଳ ଜଳ ଦିଶୁନି ତ ସବୁକିଛି। ଅଳ୍ପ ସମୟରେ ସଂକ୍ଷେପରେ ସାରକଥା କହି ସମସ୍ତଙ୍କୁ କିଣି ପାରିବା ଶିଖ। ତା'ପରେ ଥରେ ଦୁଇଥର ଏହିଭଳି ପ୍ରତ୍ୟାଖ୍ୟାନ ହେବା ପରେ, ଦିନେ ଭାଷା ବର୍ଣ୍ଣନା କରି ନ ଦେଇ କେବଳ ଚିତ୍ର ମାଧ୍ୟମରେ ପ୍ରକାଶ କରିବା କଥା ଚିନ୍ତାକଲି। ଓଡ଼ିଶା ମାନଚିତ୍ରଟିଏ ଆଙ୍କି ରାଉରକେଲା ତଥା କୋଇଲା ଖଣି ଓ ଲୁହାଖଣି ଥିବା ସ୍ଥାନ ଗୁଡ଼ିକର ଅବସ୍ଥିତି ସହିତ ରେଳପଥ ଓ ବନ୍ଦର ଯୋଗାଯୋଗ ପଥର ସୂଚନା ଦର୍ଶାଇ ନେଇ ଦେଖାଇଲି। ଦେଖୁ ଦେଖୁ, ଚଉକି ଛାଡ଼ି ଅତ୍ୟନ୍ତ ଉଲ୍ଲସିତ ଢଙ୍ଗରେ କହିଲେ- ଏଇତ ଉତ୍ତର, ଏଇଆ ମୁଁ ଖୋଜୁଥିଲି। କାଗଜ ଖଣ୍ଡିକ ଧରି ତତ୍କ୍ଷଣାତ୍ ସେ ଦିନ ଧାଇଁ ଯାଇଥିଲେ ହେଡ୍‌ମାଷ୍ଟ୍ରେଙ୍କର ପ୍ରକୋଷ୍ଠକୁ। ସେଠାରୁ ଫେରି ମୋତେ କହିଲେ- ଏବେ ବୁଝିଲୁ, ଭାବ ପ୍ରକାଶ ପାଇଁ ସବୁବେଳେ ଭାଷାର ମାଧ୍ୟମ ଏକାନ୍ତ ଦରକାର ହେଲେ ତା' ଯଥେଷ୍ଟ ହୋଇ ପାରେନା। ଠାରରେ ଅଙ୍ଗ ପ୍ରତ୍ୟଙ୍ଗ କଥା କହିଲା ଭଳି, ନୀରବରେ ଆଖି ମଧ୍ୟ ଅନେକ କଥା କହିଥାଏ। ଆଉ ଚିତ୍ର ବି। ଚିତ୍ର ମାଧ୍ୟମରେ ସଂକ୍ଷେପରେ ଅନେକ କିଛି ପ୍ରାଞ୍ଜଳ ଭାବରେ ମଧ୍ୟ ପରିବେଷଣ କରାଯାଇପାରେ। ଗଣିତରେ, ବିଜ୍ଞାନରେ ଆଉ କଳା ଓ ସାହିତ୍ୟରେ ମଧ୍ୟ ଏ ମାଧ୍ୟମର ପ୍ରୟୋଗ କରିବା ଅନିବାର୍ଯ୍ୟ ହୋଇପଡ଼େ ଅନେକ ସମୟରେ। ତାଙ୍କର ପାଠପଢ଼ା ଏହି ଭଳି, ପୁସ୍ତକର ସୂଚୀପତ୍ର ନିର୍ଦ୍ଧାରିତ ସୀମା ଅଥବା ଶ୍ରେଣୀ କକ୍ଷର ନିର୍ଦ୍ଦିଷ୍ଟ କର୍ମ ନିର୍ଘଣ୍ଟ ମଧ୍ୟରେ ତାହା ଆଦୌ ଆବଦ୍ଧ ନ ଥିଲା। ସେ ଅନେକ ସମୟରେ ଅନ୍ୟମନସ୍କ ଭାବରେ ଚିନ୍ତାମଗ୍ନ ରହନ୍ତି। ଲୋକେ କୁହନ୍ତି ସେ କୁଆଡ଼େ ବେଳେବେଳେ ପଡ଼ିଆରେ ବୁଲୁଥିବା ବେଳେ ଅଥବା ରାସ୍ତାରେ ଯାଉଥିବା ବେଳେ, ହଠାତ୍ ସାଇକେଲରୁ ଓହ୍ଲାଇପଡ଼ି ମାଟି ଉପରେ ଧୂଳିରେ କାଠି ଖଣ୍ଡିକରେ କ'ଣ ଗୁଡ଼େ ଗାରାଗାରି କରୁଥାଆନ୍ତି। ଜାଣିବା ଲୋକେ ଦେଖନ୍ତି ସେ ଜ୍ୟାମିତିକ ନିଗମନ ବା ଗାଣିତିକ ସମୀକରଣ ଗୁଡ଼ିକର ସମାଧାନ ଚିନ୍ତା କରୁ କରୁ, ହଠାତ୍ ଯେତେବେଳେ ତାଙ୍କ ମନକୁ କିଛି ଆସେ ଏପରି କରି ସେ ସବୁ ତତ୍କ୍ଷଣାତ୍ ମାଟି ଉପର ଧୂଳିରେ କଷି ପରଖି ଥାଆନ୍ତି। ସେଥିପାଇଁ ତାଙ୍କୁ କେତେକ ଅର୍ଦ୍ଧପାଗଳର ଆଖ୍ୟା ଦେଇ କହନ୍ତି, ଦାଶରଥୀ ମାଷ୍ଟ୍ରେଙ୍କର ମୁଣ୍ଡର 'ସ୍କ୍ରୁ' ଟିକେ ଢିଲା। ସେ ଯାହା ହେଉ, ଶିକ୍ଷାଦାନ ଆଉ ଛାତ୍ରର ବ୍ୟକ୍ତିତ୍ୱ ଗଠନ ତାଙ୍କ ଜୀବନର ଏକମାତ୍ର ବ୍ରତ ଥିଲା।

ଶିକ୍ଷକ ଜୀବନରେ ଅର୍ଥାଭାବ ତ ଏକ ସାଧାରଣ କଥା ଥିଲା। ସେତେବେଳେ ଅବଶ୍ୟ ଘରୋଇ ଟ୍ୟୁସନ୍‌ର ଏତେ ପ୍ରଚଳନ ନ ଥିଲା। କେତେକ ସ୍ୱଚ୍ଛଳ ପରିବାରର ଦୁର୍ବଳ ଶ୍ରେଣୀର ପିଲାଙ୍କୁ ଅଳ୍ପସଂଖ୍ୟକ କେତେକ ଶିକ୍ଷକ ସେତେବେଳେ ଘରୋଇ ଟ୍ୟୁସନ୍ କରୁଥାଆନ୍ତି। ସ୍କୁଲ୍‌ରେ କିନ୍ତୁ ସ୍ୱତନ୍ତ୍ର କୋଚିଂ ବ୍ୟବସ୍ଥା ମଧ୍ୟ କରାଯାଉଥିଲା, ସ୍ୱଳ୍ପ ପାରିଶ୍ରମିକ ଭିତ୍ତିରେ। ଦାଶରଥୀ ମାଷ୍ଟ୍ରେ ସେତେବେଳେ ସ୍କୁଲ୍ ଛାତ୍ରାବାସର ତତ୍ତ୍ୱାବଧାରକ ଥାଆନ୍ତି। ସକାଳେ ସନ୍ଧ୍ୟାରେ କିଛି ସମୟ ଦେଇ କେତେକ ଅନ୍ତେବାସୀ ଛାତ୍ରମାନଙ୍କୁ ଟ୍ୟୁସନ୍ କରୁଥାଆନ୍ତି। ସ୍ୱଚ୍ଛଳ ପିଲାଙ୍କ ଠାରୁ ପାରିଶ୍ରମିକ ଅବଶ୍ୟ ନେଇଥାଆନ୍ତି। ତଥାପି ଯଦି କେହି ତାଙ୍କ ପାରିଶ୍ରମିକ ଦେଇ ଦେଲାପରେ ଅଭାବବଶତଃ ସ୍କୁଲ୍ ବା ଛାତ୍ରାବାସର ଦେୟ ଠିକ୍ ସମୟରେ ପରିଶୋଧ କରିପାରିନାହିଁ ବୋଲି ଜାଣନ୍ତି, ସେତେବେଳେ ସେ ପିଲାକୁ ଡାକି ଆଉ ଏପରି କେବେ କରିବ ନାହିଁ କହି ପାଇଥିବା ପାରିଶ୍ରମିକ ତକ ସବୁ ଫେରାଇ ଦିଅନ୍ତି। ନିଜର ଅଭାବ ତ ଥିଲା, ତା' ଭିତରେ ସେ ଅନ୍ୟମାନଙ୍କର ଅଭାବ ଅସୁବିଧାକୁ ଭଲ ଭାବରେ ବୁଝିପାରୁଥିଲେ।

ସେ ତ ମୋ ଜୀବନର ଏକ ସନ୍ଧିସନ୍ଧି ମୁହୂର୍ତ୍ତରେ ସ୍ୱର୍ଗର ଦେବଦୂତ ହୋଇ ଆସିଥିଲେ। ମୁଁ ମାଟ୍ରିକ୍ ପରୀକ୍ଷା ଦେଇସାରି ଗାଁରେ ଥାଏ। ଫଳ ପ୍ରକାଶନ ପରେ ମୁଁ ଆଗକୁ ପଢ଼ିବାର କଥା ଚିନ୍ତାକଲେ ମୋତେ ଅନିଶ୍ଚିତତାର ଅନ୍ଧକାର ଗ୍ରାସ କରି ନେଉଥାଏ। ଭୟ ଓ ହତାଶାରେ ଶୋଇ ରହି ମୁଁ ନିରୁପାୟ ଭାବରେ ଅନେକ ସମୟରେ କାନ୍ଦୁଥିଲି। କେହି ପଚାରିଲେ କିଛି କହୁନଥିଲି। ପରିବାରର ଆର୍ଥିକ ସାମର୍ଥ୍ୟ ନ ଥିଲା ବୋଲି ଭଲ ଭାବରେ ଜାଣିଥିଲି। ଘର ପାଖରେ ସେତେବେଳେ କଲେଜ ନ ଥିଲା। କଟକ ତ ଦେଖି ନଥିଲି। ଭଲ ଛାତ୍ରଟିଏ ଭାବରେ ରେଭେନ୍‌ସା କଲେଜରେ ନାମ ଲେଖାଇ ପାଠ ପଢ଼ିବାର ସ୍ୱପ୍ନ ଦେଖି ପାରୁନଥିଲି। ଆମ ଘରେ ଓ ଗାଁରେ ଅନେକ ଭାବିଲେ, ମୁଁ ବୋଧହୁଏ ପରୀକ୍ଷାରେ ବହୁତ ଖରାପ କରିଛି ଅଥବା ଫଳ ପ୍ରକାଶିତ ହୋଇ ମୁଁ ଫେଲ୍ ହୋଇ ଯାଇଥିବାର ଜାଣି ଯାଇଛି। କାହାକୁ କିଛି କହି ନ ପାରି ବୋଧହୁଏ ସେଇଥିପାଇଁ କାନ୍ଦୁଛି। ଆମ ଗାଁର ଜଣେ ମୋର ଶୁଭାକାଂକ୍ଷୀ ଦିନେ ଦାଶରଥୀ ମାଷ୍ଟ୍ରେଙ୍କୁ ମୋ ବିଷୟରେ କହି ମୁଁ କ'ଣ ସତରେ ଫେଲ୍ ହୋଇଯାଇଛି ବୋଲି ପଚାରିଲେ। ସେ ସେତେବେଳେ ଏକ ଚିତ୍କାର କରି ତାଙ୍କୁ କହିଥିଲେ - କ'ଣ କହୁଛନ୍ତି ଆପଣ ? ଆପଣଙ୍କୁ ଏ କଥା କିଏ କହିଲା ? ସିଏ ଯଦି ଫେଲ୍ ହେବ

ତେବେ ଏ ବର୍ଷ କେହି ପାସ୍ କରିବେନି । ପରୀକ୍ଷା ଫଳ ତ ପ୍ରକାଶିତ ହୋଇନି । ସେ ତ ଆମ ସ୍କୁଲ୍ ପାଇଁ ଏକ ଗୌରବ ଆଣି ଦେବ ବୋଲି ଆମେ ଆଶା କରୁଛୁ । ଆପଣ ଏ ଭଳି କାହିଁକି କହୁଛନ୍ତି ? ସେ ମହାଶୟଙ୍କଠାରୁ ସବୁ କଥା ଶୁଣି ବାପା ମୋତେ ବହୁତ ଆଶ୍ୱାସନା ଦେଇ ମୋର ମନ ଭୁଲାଇବାକୁ ମୋତେ ସ୍କୁଲ୍ ପାଖ ମୋ ପିଉସୀ ଘରକୁ କିଛିଦିନ ପାଇଁ ପଠାଇଦେଇଥିଲେ ।

ମୋର କେତେକ ସାଙ୍ଗମାନଙ୍କ ପାଖରୁ ମୁଁ ଆସିଥିବାର ଖବର ପାଇ ସାର୍ ମୋତେ ଦିନେ ସ୍କୁଲ୍‌କୁ ଡକାଇ ପଚାରିଲେ - ତୁ ମାଟ୍ରିକ୍ ପରେ କ'ଣ କରିବୁ, କେଉଁଠି ପଢ଼ିବୁ, କିଛି ଚିନ୍ତା କଲୁଣି ? ତୋ ବାପାଙ୍କର ଇଚ୍ଛା କ'ଣ ? ବାପାଙ୍କର ଇଚ୍ଛାଥିଲେ ମଧ୍ୟ ଆର୍ଥିକ ସମ୍ବଳ ତ ନ ଥିଲା । ମୁଁ ଅବା ଆଉ ଚିନ୍ତା କିପରି କରିପାରିଥାଆନ୍ତି । ଏକ ମାତ୍ର ସମ୍ବଳ ହୋଇ ଯାହା ମୋ ପାଖରେ ଥିଲା, ତାହା ହେଉଛି ବାପା ସବୁବେଳେ କହୁଥିବା କେଇପଦ କଥା ଉପରେ ଏକ ସରଳ ବିଶ୍ୱାସ । ସେ ସବୁବେଳେ କହୁଥିଲେ - ମନ ଦେଇ ଭଲ ପାଠ ପଢ଼ିଲେ ଅଧିକରୁ ଅଧିକ ପଢ଼ିବାକୁ ଧନର ଅଭାବ ରହିବନି । ପାଠ ହେଉଛି ସେହି ଧନ, ଯାହାକୁ ଚୋର ନେଇପାରେ ନାହିଁ ଏବଂ ଯାହାକୁ ଅର୍ଜନ କରିବା ପାଇଁ ଲୋଡ଼ା କେବଳ ମନ, ବୁଦ୍ଧି ଆଉ ଅଧ୍ୟବସାୟ । ସେଇତକ ମୋତେ ସବୁବେଳେ ସାହସ ଆଉ ପ୍ରେରଣା ଦେଉଥିଲା, ସଂକଳ୍ପ ଶିଖାଇଥିଲା ବି ।

ଅଧିକ ଚିନ୍ତା ନ କରି ସେଦିନ ସାର୍‌ଙ୍କ ପ୍ରଶ୍ନର ଉତ୍ତର ଦେଇଥିଲି, "ମୁଁ ଜାଣିନି" । ତା'ପରେ ସେ ଆଗରୁ ଭାବି ଠିକ୍ କରିଥିବା ଭଳି କେତେକ ବଦାନ୍ୟ ବ୍ୟକ୍ତିଙ୍କ ନାମ କହି, ତାଙ୍କୁ ଅର୍ଥ ସାହାଯ୍ୟ ମାଗିବା କଥା କହିଥିଲେ । ମଥାନତ କରି ହାତ ପତାଇ ନିଜକୁ ଛୋଟ କରି ନଦେବାକୁ ମୋର ଅନ୍ତରାତ୍ମା ବିଦ୍ରୋହ କଲାକି କ'ଣ ମୁଁ ଜାଣେନି; ମୁଁ ହଠାତ୍ ସେଦିନ କହି ଦେଇଥିଲି - ମୁଁ ପଢ଼ିବିନି ପଛେ ଭିକ ମାଗିବିନି । କହି ଦେଲାପରେ ଅନାଗତ ଭବିଷ୍ୟତର ସବୁକିଛି ଅନିଶ୍ଚିତତା ମୋ ମୁଣ୍ଡ ଉପରେ ଏକ ଶକ୍ତ ବୋଝ ହୋଇ ଯେମିତି ଅଜାଡ଼ି ହୋଇ ପଡ଼ିଲା । ମୁଁ ଅତ୍ୟନ୍ତ ଭୟଭୀତ ହୋଇଯାଇଥିଲି । ସାର୍‌ଙ୍କର ଅସ୍ପଷ୍ଟ ଚିତ୍କାରରେ ତତ୍‌କ୍ଷଣାତ୍ ଦୌଡ଼ି ଦୌଡ଼ି ତାଙ୍କ ପାଖରୁ ଏକମୁହାଁ ହୋଇ ପଳାଇ ଆସିଥିଲି । ଏହାର କିଛିଦିନ ପରେ ସେ ବାବାଙ୍କୁ ଡକାଇ ମୋତେ ଛାତ୍ରାବାସରେ ଆଣି ଛାଡ଼ିଦେବା ପାଇଁ କହିଥିଲେ । କାରଣ ସପ୍ଲିମେଣ୍ଟାରୀ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବା ଏବଂ ଟେଷ୍ଟ ପରୀକ୍ଷାରେ ଉତ୍ତୀର୍ଣ୍ଣ ନ ହୋଇ ପାରିଥିବା ଅନ୍ୟ

ପିଲାମାନେ ମୋର ସାହାଯ୍ୟ ଚାହୁଁଛନ୍ତି ବୋଲି ବାପାଙ୍କୁ କହିଥିଲେ। ମୁଁ ଆସିଲାପରେ ମୋତେ ଡକାଇ କହିଲେ - ଆରେ ପାଗଳ, ସେ ଦିନ ତୁ ଦଉଡ଼ି ପଳାଇଲୁ ମୋ ସାମନାରୁ, ଭାବିଲୁ ମୁଁ ତୋତେ ଗାଳି ଦେଉଛି ବୋଲି। ଆରେ ନା ରେ; ତୁ ମୋତେ ବୁଝି ପାରିଲୁନି। ହଉ ଛାଡ଼ ସେ କଥା, ତୁ ଚିନ୍ତା କରନା, ଉପାୟ ମିଳିଯିବ, ଇଚ୍ଛାଥିଲେ ଆଉ ଈଶ୍ୱରଙ୍କ ଆଶୀର୍ବାଦ ଥିଲେ ତୁ ପଢ଼ିବୁ। ରେଭେନ୍‌ସା କଲେଜରେ ଅଲବତ୍ ପଢ଼ିବୁ। ଆଉ କାହାପାଖରେ ହାତ ନ ପତାଇ ଅବଶ୍ୟ ପଢ଼ିବୁ। ମୁଁ ତ ସେଇଆ ତୋ ଠାରୁ ଆଶା କରୁଥିଲି।

ସେ ବୋଧହୁଏ ହେଡ୍‌ମାଷ୍ଟ୍ରେଙ୍କ ସହ ପରାମର୍ଶ କରି ଏକ ଯୋଜନା ପ୍ରସ୍ତୁତ କରିସାରିଥିଲେ। ତଦନୁଯାୟୀ ମୋତେ କୁହାଗଲା ମୁଁ, ପରୀକ୍ଷାର୍ଥୀ ମୋର କ୍ଲାସ୍ ପିଲାମାନଙ୍କୁ କୋଚ଼ିଙ୍ଗରେ ସାହାଯ୍ୟ କରିବି ଏବଂ ସାର୍ ଆଉ ହେଡ୍‌ମାଷ୍ଟ୍ରେଙ୍କ ପୁଅ ଦୁହିଁଙ୍କୁ ପଢ଼ାଇବି। ଏ ସବୁର ପାରିଶ୍ରମିକ ରେଭେନ୍‌ସାରେ ମୋ ନାମ ଲେଖାଇବା ପାଇଁ ସେତେବେଳେ ଆବଶ୍ୟକୀୟ ସମ୍ବଳ ଯୋଗାଇଥିଲା। ତାଙ୍କରି ନିର୍ଦ୍ଦେଶରେ ଜଣେ ପାରିବାର ପିଲା ମୋତେ ସାଇକେଲ ପଛରେ ବସାଇ ସ୍କୁଲ୍ ପାଖରୁ ଚାଳିଶ କିଲୋମିଟର ଦୂର କଟକର ରେଭେନ୍‌ସା କଲେଜରୁ ନାମ ଲେଖା ଫର୍ମ ଆଣି, ପରେ ପୁଣି ନେଇ ଦାଖଲ କରିବାରେ ସାହାଯ୍ୟ କରିଥିଲା। ନାମ ଲେଖା ପରେ, ସାର୍ ନିଜେ ମୋର ସମସ୍ତ ଆବଶ୍ୟକୀୟ ସାଜ ସରଞ୍ଜାମ ସବୁ ଯୋଗାଡ଼ କରି ମୋତେ ଆଣି ରେଭେନ୍‌ସାରେ ପୂର୍ବ ଛାତ୍ରାବାସରେ ଯେଉଁଦିନ ଛାଡ଼ିଥିଲେ, ସେଦିନ ତାଙ୍କର ପିତୃପ୍ରତିମ ଭୂମିକାର ଅଭୟ ପାଇ ଏକ ପ୍ରକାର ଅଭିଭୂତ ହୋଇଯାଇଥିଲି। ଛାତ୍ରାବାସରେ ମୋତେ ବି.ଏ. ଶେଷ ବର୍ଷର ଜଣେ ଶୁଭାକାଂକ୍ଷୀ ଛାତ୍ରଙ୍କ ସହିତ ପରିଚୟ କରାଇ ଦେଇଥିଲେ। ସେ ମୋତେ ପୂର୍ବରୁ ପ୍ରସ୍ତୁତ କରିଥିବା କେତେକ ଫର୍ମରେ ଦସ୍ତଖତ କରିବାକୁ ବୁଝାଇଥିଲେ। ସେ ସବୁ ଥିଲା ସରକାରୀ ତଥା କେତେକ ଦାତବ୍ୟ ଅନୁଷ୍ଠାନ ତରଫରୁ ଦିଆଯାଉଥିବା ଛାତ୍ରବୃତ୍ତି ପାଇଁ ଆବେଦନ ପତ୍ର। ମୁଁ ସେତେବେଳେ କେବଳ ଯନ୍ତ୍ର ଚାଳିତ ଭାବରେ ଯାହା କୁହାଯାଉଥିଲା ସେ ସବୁ କରି ଚାଲିଥିଲି। ସେଇ ବ୍ୟବସ୍ଥା ହିଁ ମୋ ଆଗରେ ଏକ କ୍ଷୀଣ ଆଲୋକ ହୋଇ ମୋତେ ବାଟ କଢ଼ାଇ ଆଗକୁ ନେଇଥିଲା। ଜଣେ ଶିକ୍ଷକର କର୍ମ ପରିସରର କର୍ତ୍ତବ୍ୟବୋଧ ଭିତରେ ଜଣେ ଛାତ୍ରର ଭବିଷ୍ୟତ ନିର୍ଦ୍ଧାରଣକାରୀର ଏଭଳି ଭୂମିକା ନିର୍ବାହ, ଜଣେ ବିରଳ ବ୍ୟକ୍ତିତ୍ୱର ପରିଚୟ ସାବ୍ୟସ୍ତ କରିଥାଏ।

ଏ ହେଉଛନ୍ତି ସେହି ଦାଶରଥୀ ମାଷ୍ଟ୍ରେ, ଯେ ଶିକ୍ଷା ଆଉ ଶିକ୍ଷକତାର ମର୍ଯ୍ୟାଦା ସହିତ ନିଜର ସ୍ୱାଭିମାନ ରକ୍ଷା କରିବାକୁ ସତତ ବ୍ରତୀ ଥିଲେ । ଏକଦା ପାରିବାରିକ ଅର୍ଥାଭାବ ମେଣ୍ଟାଇବା ପାଇଁ ସେ ସ୍କୁଲ୍ ପାଖ ଏକ ଗାଁର ଜଣେ ବିତ୍ତଶାଳୀ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ଘରେ ଗୃହ ଶିକ୍ଷକ ଭାବରେ ଦାୟିତ୍ୱ ନେଇଥିଲେ । କିନ୍ତୁ ଖୁବ୍ ଶୀଘ୍ର ଗୃହକର୍ତ୍ତାଙ୍କର ହାବଭାବରୁ ସେ ବୁଝିପାରିଲେ ଯେ ସେମାନେ ତାଙ୍କୁ ଶିକ୍ଷକ ରୂପରେ ନୁହେଁ, ତାଙ୍କର ଭୃତ୍ୟ ଭଳି ହେୟ ମନେକରୁଛନ୍ତି । ସେଦିନ ଅତ୍ୟନ୍ତ କ୍ଷୁବ୍ଧ ଆଉ ମର୍ମାହତ ହୋଇ ତାଙ୍କର ପାରିଶ୍ରମିକ ପ୍ରତ୍ୟାଖ୍ୟାନ କରି ସେ ଦାୟିତ୍ୱରୁ ନିଜକୁ ମୁକ୍ତ କରିଥିଲେ । ସେହି ସ୍ୱାଭିମାନର ସୁରକ୍ଷା ପାଇଁ ସେ ଦିନେ ତାଙ୍କ ବଦଳି ଅନ୍ୟାୟର ପ୍ରତିବାଦ କରି ବାରଦ୍ୱାର ହେବାପରେ କ୍ଷମତାର ଅଳିନ୍ଦରେ ବାହାର ଦୁନିଆଁର ଏକ ଭିନ୍ନ ରୂପ ଦେଖି ଆଉ ଅନେକ ଦୁଃଖଦ ଅନୁଭୂତି ନେଇ ଅତ୍ୟନ୍ତ ମର୍ମାହତ ହୋଇଥିଲେ । ତାଙ୍କର ସ୍ୱାଭିମାନ କ୍ଷତାକ୍ତ ହୋଇଥିଲା । ସେଇଠୁ ଆରମ୍ଭ ହୋଇଥିଲା ତାଙ୍କ ଜୀବନର ଭିନ୍ନ ଏକ ପର୍ବ । ତାଙ୍କ ଅଜ୍ଞାତରେ ଧୀରେ ଧୀରେ ସେ ତାଙ୍କ ଚଲାପଥରର ମୋଡ଼ ବଦଳାଇ ଭିନ୍ନ ଏକ ଜୀବିକାର ମାର୍ଗରେ ପାଦ ଦେଇ ସାରିଥିଲେ । ବହୁତ ଦିନ ଧରି ଛୁଟିରେ ଥାଇ ଦରମା ନ ପାଇ ଆର୍ଥିକ ଅନଟନର ଦୁର୍ଦ୍ଦିନରେ ଥିବାବେଳେ ତାଙ୍କର କେତେକ ଶୁଭାକାଂକ୍ଷୀ ଇଂଜିନିୟର ବନ୍ଧୁ ଏବଂ ଆଉ କେତେକ ପୁରାତନ ଛାତ୍ର, ଯେଉଁମାନେ ସେତେବେଳେ ସିଭିଲ୍ ଇଂଜିନିୟର ଥିଲେ, ତାଙ୍କୁ ପ୍ରବର୍ତ୍ତାଇ ଠିକାଦାରୀ ଭିତରକୁ ଟାଣି ଆଣି ଥଇଥାନ କରାଇଥିଲେ । ନିଜର ସ୍ୱଭାବ ଆଉ କର୍ମନିଷ୍ଠା ବଳରେ ତାଙ୍କ ପାଇଁ ଅପ୍ରତ୍ୟାଶିତ ଏବଂ ଅସ୍ୱାଭାବିକ ଏଭଳି ଏକ କର୍ମକ୍ଷେତ୍ରରେ ସେ ଖୁବ୍ ଶୀଘ୍ର ଜଣାଶୁଣା ହୋଇଯାଇଥିଲେ । ଧୀରେ ଧୀରେ ଆର୍ଥିକ ସ୍ୱଚ୍ଛଳତା ଓ ପାରିବାରିକ ସୁଖ ସ୍ୱାଚ୍ଛନ୍ଦ୍ୟ ସାଙ୍ଗକୁ କର୍ମ କ୍ଷେତ୍ରରେ ଉତ୍ତୋରତ୍ତର ଉନ୍ନତି ଘଟିଥିଲା । ସାମାନ୍ୟ ଏକ ଛୋଟିଆ ଠିକାଦାରରୁ ଆରମ୍ଭ କରି ଶେଷବେଳକୁ ଜଣେ ସୁପରକ୍ଲାସ୍ କଣ୍ଟ୍ରାକ୍ଟର ଆଖ୍ୟା ପାଇପାରିଥିଲେ । ତାଙ୍କ ଅନ୍ତରାତ୍ମାର ସେହି ଆଦର୍ଶ ଶିକ୍ଷକଟିଏର ଅକାଳ ମୃତ୍ୟୁ ହୋଇଥିଲା ବୋଲି ସମସ୍ତେ ଭାବୁଥିଲେ । ମୁଁ କିନ୍ତୁ ବେଳେବେଳେ ତାଙ୍କ ଭିତରେ ସେ ଶିକ୍ଷକକୁ ଗୁମୁରି ଉଠୁଥିବାର ଦେଖିଛି ।

ଦିନେ ଅଚାନକ ଅବେଳାରେ ଆସି ପହଞ୍ଚିଲେ ବାଣୀବିହାର, ମୋ କ୍ୱାର୍ଟରରେ । ସେଦିନ ସେ ବହୁତ ପ୍ରଗଳ୍ଭ ଥିବାର ମନେ ହେଉଥିଲା । କହିଲେ-

ଜାଣିଛ, ମୁଁ ଆଜି ବହୁତ ଖୁସି । ବିଶେଷ କିଛି ଉପକ୍ରମଣିକା ନ କରି ସେ ଦିନର ଖୁସି ବାଣ୍ଟିବା ପାଇଁ ସେ ଯେପରି ଅଧୀର ହୋଇ ଉଠିଥାଆନ୍ତି । କହି ଚାଲିଲେ - "ଆଜି ଚିଫ୍ ଇଂଜିନିୟର ମୋତେ ତାଙ୍କ ବସାକୁ ଡକାଇଥିଲେ । ତାଙ୍କ ପୁଅ ଦୁଇ ଦୁଇଥର ମାଟ୍ରିକ୍ ଫେଲ୍ ହେବା ପରେ ଏବେ ମୋ ତତ୍ତ୍ୱାବଧାନରେ ପଢ଼ାପଢ଼ି କରି ସେକେଣ୍ଡ ଡିଭିଜନରେ ମାଟ୍ରିକ୍ ପାସ୍ କରିଛି । ଯିଏ ମୋତେ ଦେଖିଲେ ଦୂର୍ ଦୂର୍ କରୁଥିଲେ, ସେ ପୁଣି ନିଜର ଅନିଚ୍ଛା ସତ୍ତ୍ୱେ ନିରୁପାୟ ହୋଇ ତାଙ୍କ ସ୍ତ୍ରୀ ଏବଂ ଅନ୍ୟ କେତେକ ସବର୍ଡିନେଟ୍ ଇଂଜିନିୟରମାନଙ୍କର ସୁପାରିଶ୍ ଓ ପ୍ରରୋଚନାରେ ମୋ ଭଳି ଗୋଟିଏ କଣ୍ଟ୍ରାକ୍ଟର ହାତରେ ସେ ଦାୟିତ୍ୱ ଦେଇଥିଲେ । ତାଙ୍କର ଏକମାତ୍ର ଗେହ୍ଲା ଆଉ ଚଗଲା ପୁଅକୁ ବାଟକୁ ଆଣି ପାଠ ପଢ଼ାଇ ପାସ୍ କରାଇ ଦେବାର ଦାୟିତ୍ୱ ମୋ ପାଇଁ ଏକ ଆହ୍ୱାନ ଥିଲା । ଅଶେଷ ଆନନ୍ଦର କଥା ବି ଥିଲା ମୋ ପକ୍ଷେ । ମୁଁ ତାକୁ ପାଖରେ ରଖି, ସାଙ୍ଗରେ ବାନ୍ଧି, କାମରେ ଯୁଆଡ଼େ ଯାଇଛି ସାଥୀରେ ନେଇ; ସମୟ, ଅସମୟ ଆଉ ସବୁ ସମୟରେ ଦେଖାଦେଖି କରିଥିଲି । ତା'ର ସଫଳତାରେ ସେ ଆସି ମୋ ପ୍ରତି ବହୁତ କୃତ୍ୟକୃତ୍ୟ ହେଇ ତାଙ୍କ ତରଫରୁ ଆଗ ନମସ୍କାର ହୋଇ, ତାଙ୍କ ଘରକୁ ମୋତେ ପାଛୋଟି ନେଇଥିଲେ । ଆଗରୁ ମୋତେ ଜଣେ ସାମାନ୍ୟ ଠିକାଦାର ରୂପେ ହେୟଜ୍ଞାନ କରି କେତେ କ'ଣ କହିଥିଲେ ବୋଲି ଦୁଃଖପ୍ରକାଶ କରିଥିଲେ । ପିଲାଟି ପ୍ରକୃତରେ ମନ୍ଦ ନୁହେଁ । ଟିକେ ଚଗଲା ହୋଇଯାଇଥିଲା, ଆଦର ଆଉ ପ୍ରାଚୁର୍ଯ୍ୟ ଭିତରେ ରହି । ଏବେ କିନ୍ତୁ ଭଦ୍ର, ସୁଧାର ଆଉ ଦାୟିତ୍ୱବାନ ହୋଇଯାଇଛି ଦେଖି ଦୁଇପ୍ରାଣୀଙ୍କ ଗୋଡ଼ ତଳେ ଲାଗୁନି । ତାଙ୍କ ସ୍ତ୍ରୀ ମୋତେ ଦାଶରଥୀ ମାଷ୍ଟ୍ରେ ବୋଲି ସମ୍ବୋଧନ କରି କହିଲେ- ଆପଣଙ୍କ ହାତରେ କୁହୁକ ଅଛି ନିଷ୍ଚୟ । ଚିଫ୍ ଇଞ୍ଜିନିୟର କହିଲେ- ଏ ମାଷ୍ଟ୍ରେଙ୍କୁ ମାନିବାକୁ ହେବ । ତାଙ୍କର କି ଖୁସି । ସେ ଖୁସିର ମୂଲ୍ୟ କେତେ ତମେ ଜାଣିଛ ?" ମୁଁ କିନ୍ତୁ ସେତେବେଳେ ଦାଶରଥୀ ମାଷ୍ଟ୍ରେଙ୍କର ଖୁସିର ଗଭୀରତା ମାପୁଥିଲି । ତାଙ୍କ ଆଖିର ଚମକ ଏବଂ ହୃଦୟର ବିହ୍ୱଳ ଉଚ୍ଛ୍ୱାସରେ । ତାଙ୍କ ଭିତରେ ସେହି ଶିକ୍ଷକଟିଏ କିଭଳି ସଜୀବ ହୋଇ ଉଠିଥିଲା ଦେଖି ମୁଁ ଖୁସି ହେଉଥିଲି ମନେ ମନେ ।

ଏ ହେଉଛନ୍ତି ମୋର ସେହି ସାର୍ - ଦାଶରଥୀ ମାଷ୍ଟ୍ରେ, ଯାହାଙ୍କ ବିଷୟରେ ଏତେ କଥା କହିଗଲି । ସ୍ତ୍ରୀ କହିବା ଅନୁସାରେ ପରଦିନ ସକାଳେ ଆଉ ବୁଲିବାକୁ ନ ଯାଇ ସାର୍‌ଙ୍କ ଆସିବାକୁ ଅପେକ୍ଷା କରି ଘରେ ଥାଏ । ଠିକ୍ ସାତଟା ବେଳକୁ

ବଗପକ୍ଷୀ ଭଳି ଧଳା ଧୋତି ପଞ୍ଜାବୀ ପିନ୍ଧିଥିବା ଜଣେ ଭଦ୍ରଲୋକ ଆମ ଘର ଫାଟକ ସାମନାରେ ଗାଡ଼ିରୁ ଓହ୍ଲାଇବାର ଦେଖି ଶ୍ରୀମତୀ ଉପର ମହଲାରୁ ମୋତେ ଡାକି ଦେଲେ, ଶୁଣୁଛ, ତମ ସାର୍ ଆସିଲେଣି। ମୁଁ ତରବର ହୋଇ କବାଟ ଖୋଲି ବାରଣ୍ଡାକୁ ଆସିଲାବେଳକୁ ସେ ଆସି ପହଞ୍ଚିଯାଇଥିଲେ। ପ୍ରଣାମ କଲି। ସେ ବାରଣ୍ଡା ଉପରକୁ ନ ଆସି ତାଙ୍କ ସେହି ଚିରାଚ଼ରିତ ଢଙ୍ଗରେ ଧୋତିକୁଞ୍ଚକୁ ପଞ୍ଜାବୀ ପକେଟ୍ ପାଖରେ ଟେକି ଧରି ମୋର ମୁହଁକୁ ନିର୍ବାକ୍ ଆଉ ପ୍ରଶ୍ନିଳ ଚାହାଁଣୀରେ ଚାହିଁ ଛିଡ଼ା ହୋଇ ରହିଥାଆନ୍ତି। ବୁଝିପାରିଲିନି ତାଙ୍କର ଏ ପ୍ରଶ୍ନବାଚ଼ୀ ନୀରବତାକୁ। ପଚ଼ାରିବା ଆଗରୁ ଆପେ କହିଲେ - କିଛି ଜାଣିନ ? କିଛି ଜାଣିନ ତମେ ? ସେଇ ଏକା ପ୍ରଶ୍ନ ଅର୍ଥହୀନ ଭାବରେ ଦୋହରାଇ ଚାଲିଥା'ନ୍ତି । ବୋଧହୁଏ ସମୟ ନେଉଥିଲେ; କିପରି ଆରମ୍ଭ କରିବେ ତାଙ୍କର କହିବାର କଥାକୁ ଅଥବା କହିବା ପୂର୍ବରୁ ମୋ ଚେହେରାର ଅଭିବ୍ୟକ୍ତି ଭିତରେ ଖୋଜୁଥିଲେ ତାଙ୍କର ଲୋଡ଼ାଥିବା ଅତି ଆପଣାର ଏକ ସମ୍ବେଦନଶୀଳ ହୃଦୟକୁ। ଶେଷରେ କହିଲେ - ଏତେ କଥା ହୋଇଗଲା। ମୁଁ ମରିଥିଲେ ଏବେ ଦୁଇମାସରୁ ବେଶୀ ହୋଇସାରନ୍ତାଣି। ମୋର ହୃଦ୍‌ଘାତ ହୋଇଥିଲା। କ୍ୟାପିଟାଲ୍ ହସ୍‌ପିଟାଲ୍‌ରେ ପନ୍ଦର ଦିନ ରହିଲି। ମରୁ ମରୁ ବଞ୍ଚିଗଲି। ତୁମକୁ କେହି ଖବର ଦେଇନି ? ତା'ପରେ ମୋତେ ମାଡ୍ରାସ୍ ଆପୋଲୋ ହସ୍‌ପିଟାଲ୍‌କୁ ନେଇ ଯାଇଥିଲେ। ସେଠାରେ ମୋର ଅପରେସନ୍ ହୋଇଛି। ଏକା ନିଃଶ୍ୱାସରେ ଏତକ ସବୁ କହି ଜଂଘ ଦେଖାଇ କହିଲେ - ହେଇ ଦେଖ, ଏହିଠାରୁ ମୋର ଭେନ୍ ନେଇ ଯୋଡ଼ିଛନ୍ତି।

ମୁଁ ତାଙ୍କ ହାତ ଧରି ପାହାଚ଼ ଚଢ଼ାଇ ଘର ଭିତରକୁ ନେଉ ନେଉ କହିଲି - ମୋତେ କ୍ଷମା କରିବେ, ମୁଁ ଏ ସବୁ କିଛି ଜାଣି ପାରିନଥିଲି। ଘରେ ବସୁ ବସୁ ମୋ ସ୍ତ୍ରୀକୁ ଡାକି କହିଲେ, କାମ ସାରି ତୁମେ ଆସ। ଏଇଠି ବସିବା। ଡାକ୍ତର ମୋତେ କହିଛନ୍ତି ସବୁଦିନ ସକାଳୁ କିଛି କିଛି ବୁଲାବୁଲି କରିବାକୁ। ମୁଁ ଏବେ ନୂଆପଲ୍ଲୀରେ ବଡ଼ପୁଅ ବାବୁ ପାଖରେ ରହୁଛି। ସେ ମୋତେ ଆଣି ବାଣୀବିହାରରେ ଛାଡ଼ି ମୋ କଡ଼େ କଡ଼େ ଗାଡ଼ିରେ ଚାଲୁଛି। ତମର ଏଇ ନିରୋଳା ରାସ୍ତାରେ ବୁଲାବୁଲି କରିବାକୁ ମୋତେ ଭଲ ଲାଗିବ ବୋଲି ଭାବି କାଲିଠାରୁ ଆସୁଛି। କାଲି ତମ ପାଖକୁ ଆସିଥିଲି। ତମକୁ ଗୋଟିଏ କଥା କହିବାର ଥିଲା। ଭାବିଲି ଆଗ ଯାଇ ତୁମକୁ କହିଦେଲେ ମନଟା ଟିକେ ଆଶ୍ୱସ୍ତ ହେବ।

କେତେବେଳେ ଏଣିକି କୋଉକଥା । ତମେ କାଲି ଘରେ ନଥିଲ, କହିଯାଇଥିଲି ଅପେକ୍ଷା କରିବାକୁ ଆଜି । ଜାଣିଛଟି ?

କଥାର ଖିଅ ତାଙ୍କର ଏମିତି ବେଳେବେଳେ ଲମ୍ବି ଲମ୍ବି ଯାଏ, ଉପକ୍ରମଣିକା ଭିତରେ । ଶ୍ରୋତାର ମାନସିକ ସ୍ଥିତିକୁ ଲକ୍ଷ୍ୟ କରିବା ସହିତ ଉପଯୁକ୍ତ ପରିବେଶଟିଏ ତିଆରି କରିବାକୁ ଚେଷ୍ଟା କରନ୍ତି । ଶ୍ରୋତାର ଉତ୍କଣ୍ଠା, ଉତ୍ସୁକତା ତଥା ଆଗ୍ରହ ଜାଣିପାରିଲେ ମୁଖ୍ୟ ବକ୍ତବ୍ୟ ଉପସ୍ଥାପନା କରିଥାଆନ୍ତି । ନ ହେଲେ କିଛିକ୍ଷଣ ଅନ୍ୟମନସ୍କ ଭାବେ ନୀରବ ରହିବା ପରେ କଥାର ମୋଡ଼ ବଦଳାଇ ସେହି ଆଦ୍ୟପର୍ବରେ ହିଁ ସେ ପୂର୍ଣ୍ଣଚ୍ଛେଦ ଟାଣି ଦେଇଥାଆନ୍ତି । ସେଦିନ କିନ୍ତୁ ଅଲଗା ଥିଲା । ପିଲାଙ୍କୁ ସ୍କୁଲ୍ ପଠାଇବାର ବ୍ୟବସ୍ଥା ଭିତରେ ମୋ ସ୍ତ୍ରୀ ବ୍ୟସ୍ତ ଥିବାର ଲକ୍ଷ୍ୟ କରି ମଧ୍ୟ ମୋ ପାଖରେ ତାକୁ ବସି ଶୁଣିବାକୁ ଜିଦ୍ କରିଥିଲେ । ତା'ପରେ ଆରମ୍ଭ କଲେ- ବୁଝିଲ ମୋତେ ଯେଉଁଦିନ ମାଡ୍ରାସ୍ ନେଇ ଯାଉଥିଲେ, ସେଦିନ ଭୁବନେଶ୍ୱର ରେଳ ଷ୍ଟେସନ୍‌ରେ ଟ୍ରେନ୍‌ରେ ବସିଥିଲାବେଳେ ଆମର ସବୁ ଲୋକଙ୍କ ଗହଳି ଭିତରେ ମୁଁ ତୁମକୁ ମନେ ମନେ ବହୁତ ଖୋଜୁଥିଲି । କାହିଁକି ଜାଣିଛ ? ଏତିକି କହି ଗମ୍ଭୀର ହୋଇଗଲେ । ଆଖିବୁଜି ତଳକୁ ମୁହଁ ପୋତି ରହିଗଲେ । ପଚାରିବାରୁ ମୁଣ୍ଡ ଉଠାଇ ଏକ ନିର୍ଲିପ୍ତ କଣ୍ଠରେ କହିଲେ - ନାହିଁ, ଭାବୁଥିଲି ତୁମକୁ କେମିତି କହିବି, କୋଉ ଅଧିକାରରେ କହିବି । ସେତେବେଳେ କାହିଁକି କେଜାଣି ମୁଣ୍ଡକୁ ଗୋଟିଏ ଖିଆଲ ଆସିଥିଲା । ମୁଁ ଏବେ ଭାବୁଛି, ସେ ଚଲାବାଟ ଛାଡ଼ି ମୁଁ ତ କେତେ ଦୂରକୁ ଚାଲିଆସିଲିଣି । ମୋତେ ଏବେ କିଏ ବା ଚିହ୍ନିବ ? କ'ଣ ଅବା ଆଉ ମୋତେ ମିଳିବ ? ସେଥିପାଇଁ ଭାବୁଛି, ତମକୁ ଆଉ କହିବାଟା ଠିକ୍ ହେବକି ନାହିଁ ।

କହିଲି, "ସାର୍ ଏ କ'ଣ କହୁଛନ୍ତି ଆପଣ ? ମୋ ଉପରେ ଆପଣଙ୍କର କ'ଣ ଅଧିକାର ନାହିଁ ? କାହାଯୋଗୁଁ ମୋର ଆଜି ଏ ଅସ୍ତିତ୍ୱ ? କୁନି କୁନି ଡେଣା ଲଗାଇ କିଏ ମୋତେ ଦିନେ ଆକାଶରେ ଉଡ଼ିବା ଶିଖାଇଥିଲା ? ମୋ ଉପରେ ଆପଣଙ୍କର ଏତିକି ଭରସା ନାହିଁ ? କ'ଣ ହେଇଛି ସାର୍ ଆପଣଙ୍କର ? କୁଣ୍ଠାବୋଧ ନ କରି ମୋତେ ଥରେ କହି ଦେଖନ୍ତୁ ତ ।" ଦୀର୍ଘ ନିଃଶ୍ୱାସଟିଏ ମାରି ମୋ ମୁହଁକୁ ଚାହିଁ ରହିଲେ । ଆଖିରେ ଆତ୍ମଗ୍ଲାନିର କାରୁଣ୍ୟ ଆଉ ନିଃଶ୍ୱାସରେ ଅବଶୋଷର ଶୁଷ୍କତା ରହିଥିବା ଭଳି ମନେ ହେଲା । ଭାବିଲି କ'ଣ ଅବା ହୋଇଥିବ- ପାରିବାରିକ ଅଶାନ୍ତି ଥିଲେ ବଳେ ବଳେ ତ ଆସି ନିର୍ଦ୍ୱନ୍ଦରେ

କହିଥାଆନ୍ତି । ହଠାତ୍ ଲକ୍ଷ୍ୟ କଲି, ତାଙ୍କ ମୁଖମଣ୍ଡଳର ଭାବ ଯେପରି ବଦଳିଗଲା । ଏକ ପିଲାଳିଆ ଢଙ୍ଗରେ ଆଳପ ହସି ସରଳ ଭାବରେ ଆରମ୍ଭ କଲେ । "ନାଇଁ, କଥା କ'ଣ କି ଆପୋଲୋ ହସ୍‌ପିଟାଲ୍‌କୁ ଯିବା ଦିନ ଟ୍ରେନ୍‌ରେ ବସିଥିବା ବେଳେ ଆମର ଏମାନେ ସବୁ ଆଶ୍ୱାସନା ଦେଇ, ସାହସ ଦେଇ କହୁଥିଲେ ମୁଁ ଅପରେସନ୍ ପରେ ନିଶ୍ଚୟ ଭଲ ହୋଇ ଫେରିଆସିବି । ମୋତେ କିନ୍ତୁ ଅଜଣା ଭୟ ତ ଲାଗୁଥିଲା, ଭାବୁଥିଲି ମୁଁ କ'ଣ ଆଉ ସତରେ ଫେରି ଆସିବି । ଏ ଯାତ୍ରା ମୋର ସଶରୀର ଅନ୍ତିମ ଯାତ୍ରା ହୋଇଯିବ ବୋଧେ । ସେତେବେଳେ କେଜାଣି କାହିଁକି ମୋ ମନରେ ଗୋଟିଏ ଖିଆଲ୍ ଆସିଥିଲା । କାହାକୁ କହିବି ଯେ ଶେଷ ବେଳାରେ ବୋଲି ଖୋଜିଲା ବେଳକୁ ତମ ମୁହଁଟି ମୋତେ ଦିଶିଗଲା । ତମେ ବି ଦିନେ କଲିକତା ଦେଇ ଆମେରିକା ଯିବ ବୋଲି ଏମିତି ଟ୍ରେନ୍‌ରେ ବସିଥିଲ । ତମକୁ ବିଦାୟ ଦେବାପାଇଁ ଷ୍ଟେସନ୍‌ରେ ତମ ଛାତ୍ରଛାତ୍ରୀ ଆଉ ସହକର୍ମୀ ବନ୍ଧୁମାନେ ଭିଡ଼ ଜମାଉଥିଲେ । ତମର ମନେ ଅଛିନା ? ମୁଁ ଆମ ମଣ୍ଟୁଆ (ସାନପୁଅ)କୁ ନେଇ ସେଦିନ ଷ୍ଟେସନ୍ ଯାଇଥିଲି । ସେଦିନ ସମସ୍ତଙ୍କ ପାଖରେ ଏକମତ ହୋଇ ମୁଁ ବି ଭାବୁଥିଲି ତମେ କ'ଣ ଡକ୍ଟରେଟ୍ କରି ସାରିଲା ପରେ ସତରେ ଆଉ ତମର ଏ ଚାକିରିକୁ ଫେରିଆସିବ । ମୋର ସେ ଆଶା ନଥିଲା । ଯାହା ହେଉ ତମେ ତ ଫେରିଆସିଲ । ସେତେବେଳେ ଭାବୁଥିଲି 'ଆପୋଲୋ'ରୁ ଜୀବନ ନେଇ ଫେରି ପାରିବିନି । ସେଇଥିପାଇଁ ମନ ଭିତରର ସେହି ଅଜବ ଖିଆଲ କଥା କେବଳ ତମକୁ କହିବାକୁ ମନେ ମନେ ଖୋଜୁଥିଲି । ବିଭୁ କୃପାରୁ ଏବେ ଫେରିତ ଆସିଲି । ଆଉ ସେ କଥା ତମକୁ କହିବି କହିବିନି ହୋଇ ଦୋଦୋ ପାଞ୍ଚ ଭିତରେ ଏବେ ସ୍ଥିର କଲି, ତୁମକୁ ଶୁଣାଇ ଦେବି ବୋଲି । କାରଣ ଏଣିକି କେତେବେଳେ କୋଉ କଥା । ଯଦି ହଠାତ୍ କେତେବେଳେ ମୋର କ'ଣ ହୋଇଯାଏ, ତେବେ ଲୋକ ଅବଶ୍ୟ କହିବେ, ଦାଶରଥି ନାୟକ କଣ୍ଟ୍ରାକ୍ଟରଙ୍କ ଦେହାନ୍ତ ହୋଇଗଲା ବୋଲି । କିନ୍ତୁ ସେ ପରିଚୟ ନେଇ ଏ ସଂସାର ଛାଡ଼ିବାକୁ ମୋର ଅନ୍ତରାତ୍ମା କାହିଁକି ଚାହୁଁନି । ମନ କହୁଛି, କିଏ କହନ୍ତାକି, ମୁଁ ଜଣେ ଶିକ୍ଷକ ଥିଲି ବୋଲି ।"

"କିନ୍ତୁ କିଏ ବା କହିବ ଏବେ ? ତମେ କହିପାରିବ ? ତମେ କହିବନି ? ନାଇଁ ମୁଁ ତୁମକୁ ବାଧ୍ୟ କରୁନି । ଯଦି ପାର କେବେ, କହିବ ମୁଁ ଜଣେ ଶିକ୍ଷକ ଥିଲି ବୋଲି । କଥା ଦିଅ ମୋତେ, ମୁଁ ଟିକେ ଆଶ୍ୱସ୍ତ ହୁଏ ।" ମୁଁ ତାଙ୍କ ହାତ ଦୁଇଟିକୁ

ମୋର ଯୋଡ଼ହସ୍ତରେ ରଖି କହିଲି, "ସାର୍, ଆପଣ ତ ମୋ ପାଇଁ ସବୁଦିନ ମୋର ସେହି ପିତୃତୁଲ୍ୟ ପୂଜ୍ୟ ଶିକ୍ଷକ ଥିଲେ, ଏବେ ଅଛନ୍ତି ଆଉ ସବୁଦିନ ପାଇଁ ରହିଥିବେ। ମୁଁ ତ ସବୁବେଳେ ଆମ ଘରେ ମୋ ପିଲାମାନଙ୍କୁ ଏବଂ କ୍ଲାସ୍‌ରେ ପଢ଼ାଇଲାବେଳେ ବଡ଼ ପିଲାମାନଙ୍କୁ ପ୍ରସଙ୍ଗକ୍ରମେ ଆପଣଙ୍କର ଶିକ୍ଷକତାରେ ନଜିର୍ ଦେଇ କହିଥାଏ। ମୁଁ କିମ୍ବା ଆମ ଘରର କେହି ଆପଣଙ୍କୁ କଣ୍ଟ୍ରାକ୍ଟର ଭାବରେ ଦେଖିନାହୁଁ। ଏହା ନିଶ୍ଚୟ ସତ୍ୟ ହୋଇଥିବ ଆପଣଙ୍କର ସବୁ ଛାତ୍ର ଛାତ୍ରୀମାନଙ୍କ ପାଖରେ। ଯିଏ ଯେଉଁଠି ଥିବ, ଯେଉଳି ଥାଆନ୍ତୁ। ଆପଣ ସେମିତି ନିଜକୁ ନ୍ୟୂନ କରି ଭାବନ୍ତୁନି। ମୋ କଥାରେ ସେ ଟିକେ ଆଶ୍ୱସ୍ଥ ହେଲାଭଳି ସ୍ମିତହାସ୍ୟଟିଏ ହସି ମୋ ମୁଣ୍ଡକୁ ଆଉଁସିବାରେ ଲାଗିଥିଲେ।

ମନେ ଅଛି ମୋର ଆଜି, ସେଦିନର ସେହି କୁଣ୍ଠିତ ଅନୁନୟ ସହିତ ତାଙ୍କ ଆଖିର ଆତୁର ଚାହାଁଣୀ ଆଉ ତାଙ୍କ ଅନ୍ତରର ଆକୁଳତା। ଜଣେ ସଫଳ ଆଉ ସମ୍ମାନ ଯୋଗ୍ୟ କଣ୍ଟ୍ରାକ୍ଟରର ପରିଚୟ, ତାଙ୍କ ହୃଦୟର କେଉଁ ନିଭୃତ କୋଣରୁ ତାଙ୍କୁ ଯେପରି ବିଦ୍ରୁପ କରି ତାଙ୍କ ଅନ୍ତରାତ୍ମାକୁ ଅହରହ କ୍ଷତାକ୍ତ କରୁଥିଲା। ଜଣେ ସ୍ୱୟଂସମର୍ପିତ କୃତୀଶିକ୍ଷକ ହିସାବରେ ଅତୀତରେ ଅର୍ଜନ କରିଥିବା ଯଥାଯୋଗ୍ୟ ପରିଚୟଟିକୁ ସେପର୍ଯ୍ୟନ୍ତ ସେ ଝୁରି ହେଉଥିଲେ ନୀରବରେ। ଯାହାର ସ୍ମୃତିଚାରଣରେ ସେ ପ୍ରଗଳ୍‌ଭ ହୋଇଉଠନ୍ତି ଏବଂ ଯାହାକୁ ନେଇ ସେ ସର୍ବଦା ଗର୍ବ କରିଥାଆନ୍ତି, ସେହି ପରିଚୟଟିରେ ଥିବା ଗୌରବ ଆଉ ମର୍ଯ୍ୟାଦାର ଏକାନ୍ତ ହକଦାର ତ ସିଏ। ସେଇଥିରେ ହିଁ ତାଙ୍କର ଆତ୍ମା ସଂତୃପ୍ତ ହେବ ବୋଲି ତାଙ୍କ ଆଖିର ଭାଷା ସାବ୍ୟସ୍ତ କରୁଥିଲା।

ତାଙ୍କ ପାଇଁ ଶିକ୍ଷକତା କେବେ ହେଲେ ଏକ ଜୀବିକା ନଥିଲା, ତାହା ଥିଲା ତାଙ୍କର ଜୀବନ; ଏକ ବୃତ୍ତି ବି ନଥିଲା କେବେ, ଥିଲା ତାଙ୍କର ଏକମାତ୍ର ପ୍ରବୃତ୍ତି। ମୋର ସେହି ପିତୃପ୍ରତିମ ପୂଜ୍ୟଶିକ୍ଷକ ଏବେ ଆଉ ନାହାନ୍ତି। ଇହଧାମ ତ୍ୟାଗ କରି ଚାଲିଗଲେଣି କେବେଠାରୁ। ତାଙ୍କ ସ୍ମରଣରେ ମୋର ଏହି ବିନୀତ ଶ୍ରଦ୍ଧାଞ୍ଜଳି ସହ ବିଭୁ ନିକଟରେ ଅଳି ତାଙ୍କ ଭଳି ଆଉ ଶିକ୍ଷକ ଏ ଧରାଧାମରେ ବାରମ୍ବାର ଅବତୀର୍ଣ୍ଣ ହୁଅନ୍ତୁ।



# ଗୁରୁବର ସ୍ମରଣେ

ହରିହର ତ୍ରିପାଠୀ

୧୯୪୮ ମସିହା ସେପ୍‌ଟେମ୍ବର; ଶ୍ରୀଗଣେଶ ପୂଜା ଦିନର କଥା, ନନା(ବାପା)ଙ୍କ ସହିତ ଯିବାକୁ ହେଲା ପାଠଶାଳା । ବିଦ୍ୟାରମ୍ଭର ଦିନ । ନିଜ ଗାଁ ଠାରୁ ପ୍ରାୟ କୋଶେ ଦୂରରେ ଅନ୍ୟ ଗୋଟିଏ ଗାଁରେ ଥିବା ବଖରାଏ ଛଣ ଛପର ଗୋବର ଲିପା ଘରେ ଦିଆଯାଉଥିବା ଶିକ୍ଷା ଗ୍ରହଣ ପାଇଁ ଯାତ୍ରା । ଜୀବନର ଏକ ଚିରସ୍ମରଣୀୟ ଅନୁଭବ । ସେଠାରେ ସାକ୍ଷାତ ବଡ଼ ଗାଁର "ମାଷ୍ଟ୍ରେ ଆଜ୍ଞା" । ପ୍ରଥମ ସାକ୍ଷାତରେ ହିଁ ହେଲା ଏକ ପବିତ୍ର ସଂପର୍କର ଶୁଭାରମ୍ଭ, ଯାହା ରହିଛି ଆଜି ପର୍ଯ୍ୟନ୍ତ ଅତୁଟ । ସେ ସଂପର୍କ ଶିକ୍ଷକ-ଛାତ୍ର ସଂପର୍କ ଠାରୁ ଭିନ୍ନ ଏକ ନିବିଡ଼ ସଂପର୍କ । କୁହାଯାଇପାରେ "ଗୁରୁ-ଶିଷ୍ୟ"ର ସଂପର୍କ । କିନ୍ତୁ ତାହା କେବଳ କାଗଜ ପତ୍ରରେ ସରକାରୀ ବା ସାମାଜିକ ସଂପର୍କ ହୋଇନପାରେ । ବାସ୍ତବରେ ରୂପନେଲା "ପିତା-ପୁତ୍ର" ପରି ଏକ ଦୃଢ଼, ଅନ୍ତରଙ୍ଗ ସଂପର୍କ । ସେ ବଖୁରିଆ ଘରଟି ଆମର ଆଶ୍ରମ । ସେଠାରେ ହିଁ ମୋର ଶିକ୍ଷାପ୍ରାପ୍ତିର ଏନ୍ଟୁଡ଼ିଶାଳ ସ୍ଥାପିତ ହେଲା ଏବଂ ତାହା ବିକଶିତ ହେଲା । ୧୯୪୮ ରୁ ୧୯୫୧ ଚାରିବର୍ଷ ପର୍ଯ୍ୟନ୍ତ । ସେ ଅନୁଭୂତି ଚିର ଜୀବନ୍ତ, ଚିର ସବୁଜ ହୋଇ ଜୀବନର ଚତୁର୍ଥ ଅବସ୍ଥା ପର୍ଯ୍ୟନ୍ତ ରହିଛି ଓ ହୁଏତ ଶେଷ ପର୍ଯ୍ୟନ୍ତ ରହିବ ।

'ଆଜ୍ଞା' କେତେ ପାଠ ପଢ଼ିଥିଲେ ଏବଂ କେତେ ଦରମା ପାଉଥିଲେ ତାହା କାହାକୁ ଜଣା ନଥିଲା । ମୁଁ ବା ଜାଣନ୍ତି କିପରି ? ତେବେ ମୋର ହୃଦବୋଧ ହୋଇଥିଲା ଯେ ସବୁ ବିଦ୍ୟା ଜାଣନ୍ତି ଓ ସମସ୍ତେ ତାଙ୍କ ଠାରୁ ଶିଖନ୍ତି । ଏହିପରି ଏକ ଶକ୍ତ ଆଧାର ଉପରେ ଗଢ଼ି ଉଠିଲା ତାଙ୍କ ପ୍ରତି ମୋର ଅଗାଧ ଭକ୍ତି ଓ ଗଭୀର ବିଶ୍ୱାସ । ତାଙ୍କ ପକ୍ଷରୁ ମୋ ପ୍ରତି ଥିଲା ଅଜସ୍ର ଶ୍ରଦ୍ଧା ଓ ଅକୁଣ୍ଠିତ ଆଶୀର୍ବାଦ । ସେ ଚାହିଁଥିଲେ ମୁଁ ଯେପରି ସର୍ବୋଚ୍ଚ ଶିକ୍ଷା ପ୍ରାପ୍ତ ହୁଏ ଓ ଶିକ୍ଷକଟିଏ ହୋଇ ଅନ୍ୟମାନଙ୍କୁ ଶିକ୍ଷିତ କରିବାରେ ଜୀବନ କଟାଏ; ଆମ ଗାଁ ଆମ ଅଞ୍ଚଳରେ ଶିକ୍ଷାର ପ୍ରସାର କରିବାରେ ଯୋଗଦାନ ଦିଏ । ସେ ମୋ ବାପାଙ୍କୁ ଏକଥା ବୁଝାଇ ଦେଇଥିଲେ ଯେ ଆମର କୌଳିକ ବୃତ୍ତି ହେଲା ଅନ୍ୟମାନଙ୍କୁ କର୍ଣ୍ଣ

ମନ୍ତ୍ର ଦେବା ଏବଂ ତାହା ଶିକ୍ଷକତା କରି ଯଥାର୍ଥରେ କରାଯାଇପାରିବ। ତାଙ୍କ ପ୍ରସ୍ତାବ ଓ ପରାମର୍ଶକୁ ମୁଁ ଓ ମୋ ବାପା ସେହିଦିନଠାରୁ ଗ୍ରହଣ କରିନେଇଥିଲୁ। ସେଥିପାଇଁ ମୋ ପାଠ ପଢ଼ା ମଝିରେ ଛୁଟିଦିନମାନଙ୍କରେ, ବିଶେଷ କରି ଗ୍ରୀଷ୍ମାବକାଶ ସମୟରେ, ମୁଁ ଯେତେବେଳେ ସହରରୁ ଗାଁକୁ ଯାଇଥାଏ, 'ଆଜ୍ଞା'ଙ୍କ ସହ ସାକ୍ଷାତ କାଳରେ ବହୁ ଆଲୋଚନା ହେଉଥିଲା ଓ ତାଙ୍କ ପରାମର୍ଶ ମୋର ବିଦ୍ୟାର୍ଥୀ ଜୀବନକୁ ବହୁ ଦିଗରୁ ପ୍ରଭାବିତ କରୁଥିଲା।

'ଆଜ୍ଞାଙ୍କ' ପ୍ରେରଣା ଓ ବାପାଙ୍କ ଆଶୀର୍ବାଦରେ ଅନୁପ୍ରାଣିତ ହୋଇ ଏ ଅକିଞ୍ଚନକୁ ଚତୁର୍ଥ ଶ୍ରେଣୀ ଠାରୁ ଆଗକୁ ପଢ଼ିବା ପାଇଁ ବିଭିନ୍ନ ଦୂରଦୂରାନ୍ତର ଘୁରିବାକୁ ହୋଇଛି। ନାନା ବୋର୍ଡି, ମେସ୍, ହଷ୍ଟେଲ୍‌ରେ ରହି ଶେଷରେ ରେଭେନ୍‌ସା ମହାବିଦ୍ୟାଳୟରୁ ଏମ୍.ଏସ୍.ସି. ସାରି ପି.ଏଚ୍.ଡ଼ି. କାର୍ଯ୍ୟକ୍ରମ ଆରମ୍ଭ କରିବା ପାଇଁ ସମ୍ବଳ ଅଭାବରୁ ଅଧ୍ୟାପକ ଚାକିରିରେ ଯୋଗ ଦେବାକୁ ହେଲା। ପି.ଏଚ୍.ଡ଼ି. ପରେ ଯୋଗକୁ ଏକ ସଂସ୍ଥାରେ ଯୋଗଦାନ କରିବାକୁ ହେଲା ଯେଉଁଠାରେ ଦେଶର ଶିକ୍ଷାନୀତି, ପଦ୍ଧତି ଓ ଶିକ୍ଷା ସଂପର୍କୀୟ ସମଗ୍ର ଦିଗ ଉପରେ ଚର୍ଚ୍ଚା ଓ ଗବେଷଣା କରାଯାଇଥାଏ। ନିଜର କର୍ମମୟ ଜୀବନରେ ଆବଶ୍ୟକୀୟ କର୍ତ୍ତବ୍ୟ ସଂପାଦନ କରିବା ବେଳେ ସେଦିନର କଥାସବୁ ମନେ ପଡ଼େ। ସେଦିନର ଛାତ୍ରାବସ୍ଥାର ଅନୁଭୂତିରୁ ମୁଁ ସଂଗ୍ରହ କରିଥିବା ବହୁ ଉପାଦାନ ଆଜିର ପ୍ରାଥମିକ ଶିକ୍ଷା ଉପରେ ହେଉଥିବା ବିଭିନ୍ନ ଗବେଷଣାକୁ ସମୃଦ୍ଧ କରିବାରେ ମତେ ସାହାଯ୍ୟ କରିଥାଏ। ସେଦିନର ଆମ ପ୍ରାଥମିକ ବିଦ୍ୟାଳୟର ପରିବେଶ, କାର୍ଯ୍ୟପ୍ରଣାଳୀ ଓ ଶିକ୍ଷକଙ୍କ ଶିକ୍ଷକତାର ଚିତ୍ର ଏକ ଆଦର୍ଶ ରୂପରେ ମୋ ସମ୍ମୁଖରେ ଉଭା ହୁଏ ଯାହା ଅନେକଙ୍କ ପାଇଁ ବିଶେଷଜ୍ଞମାନଙ୍କ ଗବେଷଣା ଲବ୍ଧ ତଥ୍ୟ ଭଳି।

ସେଦିନ ସକାଳ, ସେବର ପଖାଳ ଆଉ ନାହିଁ। ତେବେ ସେ କଥା ଓ ସ୍କୁଲ୍ ଯିବା ମନେ ଅଛି। କେତେ ସମୟରେ ଦୈନିକ ସ୍କୁଲ୍ ଆରମ୍ଭ ଓ ଛୁଟି ହୁଏ ମନେ ନାହିଁ। କାରଣ ସମୟ ଜାଣିବା ପାଇଁ ଘଣ୍ଟା ତ ସ୍କୁଲ୍ ବା କାହା ଘରେ ନଥାଏ। ରେଡ଼ିଓ / ଟିଭିର ପ୍ରଚଳନ ହୋଇନଥାଏ। ତେଣୁ ସମୟ ଜାଣିବାର କୌଣସି ଯାନ୍ତ୍ରିକ ସାଧନ ନଥାଏ। ବୟସ୍କମାନେ ସୂର୍ଯ୍ୟର ଆତଯାତରୁ ଦିନର ସମୟ ଯାହା ଜାଣୁଥିଲେ। ମତେ କିନ୍ତୁ ସକାଳୁ ସକାଳୁ ନିତ୍ୟକର୍ମ ସାରି ସ୍କୁଲ୍ ଯିବାକୁ ହେଉଥିଲା। କିଛି ଦିନ ପରେ ବାପା ଆଉ ସାଙ୍ଗରେ ଗଲେ ନାହିଁ। ଆମ ସାମନା

ଘର ଝିଅ (ଗାଁ ଲେଖାରେ ମାମୁଁ ଝିଅ ଭଉଣୀ, ଯିଏ ଜୀବନର ପରବର୍ତ୍ତୀ ପର୍ଯ୍ୟାୟରେ ସମୁଦୁଣୀ ହେଲେ) ଓ ଗାଁର ଆଉ ଦୁଇଜଣ ବୟସ୍କ ପୁଅ (ଲେଖାରେ ଭାଇନା)ଙ୍କ ସହିତ ମତେ ସ୍କୁଲ୍ ଯିବାକୁ ହେଲା । ମନରେ ସବୁବେଳେ ଗୋଟିଏ ଭାବ - "ଆମ ସ୍କୁଲ୍" । ଆମ ସ୍କୁଲ୍ ଅର୍ଥାତ୍ ସେ ଗାଁର ଶ୍ରୀଜଗନ୍ନାଥ ମନ୍ଦିର ବେଢ଼ାକୁ ଲାଗିକରିଥିବା ଛଣ ଛପର ଘର । 'ଆଜ୍ଞା'ଙ୍କ ରହିବା ଘର ମଧ୍ୟ ସେଇ ଘର । ଘରର ଚାରିପାଖ ଅତି ପରିଷ୍କାର ଓ ଘର ଭିତର ଅତି ପରିଚ୍ଛନ୍ନ । ସ୍କୁଲ୍‌ର ହତା ବୋଲି କିଛି ନଥାଏ । ପାଚିରି ବାଡ଼ ମଧ୍ୟ ନଥାଏ । ଗୋଟିଏ ବଡ଼ ବୁଢ଼ା ଟଗର ଗଛରେ ଗୁଡ଼ାଏ ଧଳା ଫୁଲ ଧରିଥାଏ । ଶୀତ ଦିନେ କିଛି ଗେଣ୍ଡୁ ଫୁଲ ଫୁଟେ । ଆମେ ପିଲାମାନେ (ଆମ ସଂଖ୍ୟା କୋଡ଼ିଏ ଭିତରେ) ସ୍କୁଲ୍ ଚାରିପାଖ ଓଳାଓଳି କରୁ ଓ ପାଳିକରି ଘର ଭିତର ଝାଡୁ । ଶିକ୍ଷାଦାନ ପାଇଁ କୌଣସି ଉପାଦାନ ଥିବାର ମନେ ପଡୁ ନାହିଁ । ଆଜ୍ଞା କାନ୍ଥରେ ବିଭିନ୍ନ ଚିତ୍ର କରିଥା'ନ୍ତି ଓ ଅନେକ କଥା ସବୁ ସୁନ୍ଦର ଅକ୍ଷରରେ ଲେଖିଥା'ନ୍ତି ଯାହା ତଳେ ବସି ସୁବିଧା ଓ ସହଜରେ ପଢ଼ିହୁଏ । ଆମେ ଗୋବର ଲିପା ଚଟାଣରେ ଖଡ଼ିରେ ଅକ୍ଷର ଲେଖୁ, ଅଙ୍କ କଷୁ । ଗୋଟିଏ ଲେଖାଏଁ ସ୍ଲେଟ୍ ପଟା ନିଜର ବୋଲି ଥାଏ । ସେ ପଟାଟିର ଗୋଟିଏ  ପାଖରେ ଆଜ୍ଞା ଲୁହା ଲେଖନୀରେ ଗାର ପକାଇ ଦେଇଥାନ୍ତି ଓ ସେଥିରେ ଆମେ ହସ୍ତାକ୍ଷର ଲେଖୁ ।

ଆମ ସ୍କୁଲ୍‌ର ଅବସ୍ଥିତି ଓ ପରିବେଶ ଅତି ସୁନ୍ଦର, ପରିଷ୍କାର ଓ ପରିଚ୍ଛନ୍ନ ଓ ଅତି ଆକର୍ଷଣୀୟ ଥିଲା । ବର୍ଷାଦିନେ ଯେଉଁଦିନ ସକାଳୁ ବର୍ଷା ହୁଏ ସେଦିନ ସ୍କୁଲ୍ ଯାଇ ହୁଏ ନାହିଁ । ଏଣେ ଘରେ ରହିଲେ ସ୍କୁଲ୍ କଥା ମନେପଡ଼େ ଓ ଆଦୌ ଭଲ ଲାଗେନି । ଆଜିକାଲି ସେମିନାରରେ ଯେତେବେଳେ "ସ୍କୁଲ୍ କ୍ଲାଇମେଟ୍" ଉପରେ ଆଲୋଚ଼ନା ହୁଏ, ମୋର ମନେ ପଡ଼େ ଆମ ସ୍କୁଲ୍ ଓ ଆମ 'ଆଜ୍ଞା'ଙ୍କ କଥା । 'ଆଜ୍ଞା' ସ୍କୁଲ୍ ପରିବେଶକୁ କେମିତି ରଖିଥିଲେ । ପ୍ରାର୍ଥନା କରିବା ପରେ ପଢ଼ା ଆରମ୍ଭ କରିଥାନ୍ତି । ପ୍ରାର୍ଥନା ଗୀତର ଅର୍ଥ ବୁଝାଇଥା'ନ୍ତି ଓ ପ୍ରାର୍ଥନାର ମହତ୍ତ୍ୱ ବିଭିନ୍ନ ଉଦାହରଣ ଦେଇ କହିଥା'ନ୍ତି । ବଖରାଏ ଘରେ ଚଟାଣରେ ଆମେ ପିଲାଏ ଚାରିଭାଗ ହୋଇ ବସୁ । ଶିଶୁ, ପ୍ରଥମ, ଦ୍ୱିତୀୟ, ତୃତୀୟ ଏହିପରି ଚାରିକୋଣରେ ଚାରିଟି ଶ୍ରେଣୀ । ସେଇ ଏକମାତ୍ର ଶିକ୍ଷକ, ଆମ 'ଆଜ୍ଞା' ସମସ୍ତଙ୍କୁ ପଢ଼ାଇବେ । ପଢ଼ିବାପାଇଁ କିଛି ବହିପତ୍ର ବା ଲେଖିବା ପାଇଁ ଖାତା କଲମ ନାହିଁ । ତଥାପି ପଢ଼ାଚ଼ାଲେ ଏବଂ ପିଲାମାନଙ୍କ ଶିକ୍ଷା ଆହରଣର ଦକ୍ଷତାକୁ ନେଇ ଭିନ୍ନ ଭିନ୍ନ

ଶ୍ରେଣୀରେ ବସିବାକୁ ହୁଏ । ଆଜି "ମଲ୍‌ଟିଗ୍ରେଡ୍ ଶିକ୍ଷାଦାନ" ସହିତ ଏହା ତୁଳନୀୟ୍ ଏବଂ ତା'ଠାରୁ କୌଣସି ଗୁଣରେ କମ୍ ନୁହେଁ ।

ବିଭିନ୍ନ କାରଣ ଓ ଯଥାର୍ଥତା ଏବଂ ଉପାଦେୟତା ଦେଖାଇ ଆଜିର ପ୍ରାଥମିକ ବିଦ୍ୟାଳୟ ସବୁକୁ ସକାଳୁଆ କରାଯାଉଛି । ଆମ ସ୍କୁଲ୍ ମଧ୍ୟ ସେତେବେଳେ ସକାଳୁଆ ହେଉଥିଲା । 'ଆଜ୍ଞା' ଉପରବେଳା ଗାଁର ଅନ୍ୟାନ୍ୟ କଥା ବୁଝାବୁଝି କରନ୍ତି ଓ ପାଳି କରି ସାତଖଣ୍ଡ ଗାଁକୁ ଦିନେ ଦିନେ ଯାଆନ୍ତି । ଗାଁକୁ ଯାଇ ଗାଁ ଲୋକଙ୍କ ସହିତ ବିଚ୍ଚାର ଆଲୋଚ୍ଚନା କରନ୍ତି ଓ ଯେଉଁ ପରିବାରର ପିଲାମାନେ (ଅବଶ୍ୟ ମୁଖ୍ୟତଃ ପୁଅ ପିଲା) ସ୍କୁଲ୍ ଆସନ୍ତି ନାହିଁ ସେମାନଙ୍କୁ ସ୍କୁଲ୍‌କୁ ଆଣିବାକୁ ପ୍ରୟାସ କରିଥା'ନ୍ତି । ଯେଉଁ ପିଲାମାନେ ସ୍କୁଲ୍‌କୁ ଆସନ୍ତି ନାହିଁ, ସେମାନଙ୍କୁ ମଧ୍ୟ ବୁଝାଇ ଥାନ୍ତି ଓ ସେମାନେ ଯେପରି ପୁଣି ନିୟମିତ ଆସିବେ ସେ ବ୍ୟବସ୍ଥା କରିବା ପାଇଁ ସେମାନଙ୍କ ବାପାମାନଙ୍କୁ କହିଥା'ନ୍ତି; 'ଆଜ୍ଞା'ଙ୍କ ଏହି କାର୍ଯ୍ୟ ମତେ "ପିଲାଙ୍କୁ ସ୍କୁଲ୍ ପରିବେଶକୁ ଆଣିବା ତଥା ସେଠି ରଖିବା ପାଇଁ ଶିକ୍ଷକର ଦାୟିତ୍ୱ ତଥା ଶିକ୍ଷକ-ଅଭିଭାବକ ସଂପର୍କ" କଥା ମନେ ପକାଇ ଦିଏ ।

ଆମ ଭିତରେ ଗୋଟିଏ ଅବୋଲକରା ପିଲା । ସ୍କୁଲ୍ ଯେଉଁ ଗାଁରେ ଥିଲା ସେ ସେଇ ଗାଁ ପିଲା । ତାଙ୍କ ଘର ମଧ୍ୟ ସ୍କୁଲ୍ ପାଖାପାଖି । ସେ ଟୋକା ସ୍କୁଲ୍‌ରୁ ଫେରିବା ବାଟରେ ହିଁ ତା' ଜଂଘିଆ ଖୋଲି ପକାଏ ଏବଂ ଦିନ ସାରା ସେମିତି ଘରେ ଓ ବାହାରେ ବୁଲୁଥାଏ । ସେ ଗାମୁଛା ବା ପ୍ୟାଣ୍ଟ୍ ଇତ୍ୟାଦି କିଛି ବ୍ୟବହାର କରିବାକୁ ମଙ୍ଗେ ନାହିଁ । ତାଙ୍କ ଘରେ ତାକୁ ମନାଇପାରନ୍ତି ନାହିଁ । ଏକଥା 'ଆଜ୍ଞା'ଙ୍କ ନଜରକୁ ଆସିଲା । ସେ ମଧ୍ୟ ତାକୁ ଅନେକ ବାର ତାଗିଦ୍ କରିଥା'ନ୍ତି । ସେ ସବୁ ମାନିଯାଏ, କିନ୍ତୁ ପରେ ସେହିପରି ଅମାନିଆ କାମ କରେ । ସେଦିନ ଆମେ ସକାଳେ ସ୍କୁଲ୍‌ରେ ପହଞ୍ଚିଲା ବେଳକୁ ଦେଖିଲୁ ସେ ସ୍କୁଲ୍ ଆସିଯାଇଛି, କିନ୍ତୁ କିଛି ପିନ୍ଧି ନାହିଁ । ଆମମାନଙ୍କୁ ଦେଖି ବିଚ୍ଚରା ଲାଜରେ ଝାଉଁଳି ପଡ଼ିଲା ଓ କେମିତି ଘରକୁ ପଳାଇବ ରାସ୍ତା ଖୋଜିଲା । ଖୁବ୍ ଜୋର୍‌ରେ କାନ୍ଦି କାନ୍ଦି ରାଣ ଖାଉଥାଏ ଯେ ଏଣକି ସବୁବେଳେ, ରାତିରେ ଶୋଇବା ବେଳେ ମଧ୍ୟ ପ୍ୟାଣ୍ଟ୍ ପିନ୍ଧିବ । 'ଆଜ୍ଞା' ତା'ଠାରୁ ପ୍ରତିଜ୍ଞା ଆଦାୟ୍ କରିବା ପରେ ନିଜେ କାନ୍ଦ କାନ୍ଦ ହୋଇ ଯାଇ ନିଜ କାନ୍ଧରେ ଥିବା ଗାମୁଛାଟି ବଢ଼ାଇ ଦେଲେ ଏବଂ ତାକୁ ସେ ଅବଲୋକରା ଅତି ସନ୍ତର୍ପଣରେ ନେଇ ନିଜ ଦେହକୁ ଘୋଡ଼ାଇ ପକାଇଲା । ମୁଁ ତାକୁ ହଠାତ୍ ଦିନେ ଭୁବନେଶ୍ୱର 'ରାଜଭବନ' ରୋଡ୍‌ରେ ଖାକି ପୋଷାକ ପିନ୍ଧି

କାର୍ଯ୍ୟରତ ଥିବା ଦେଖି ତା' ପିଲାଦିନ କଥା ମନେ ପକାଇ ଦେବାରୁ ସେ ଆଜ୍ଞାଙ୍କ ଉଦ୍ଦେଶ୍ୟରେ ରାସ୍ତା ଉପରେ ଦି'ଗଣ୍ଡା ମୁଣ୍ଡିଆ ମାରିଥିଲା। ଏହା ଆଜ୍ଞାଙ୍କ 'ରେମେଡ଼ିଆଲ' ଶିକ୍ଷଣର ଉଦାହରଣ।

ଦିନେ ସକାଳୁ ସକାଳୁ ସ୍କୁଲ୍‌ରେ ପହଞ୍ଚି ପଣିକିଆ ଡାକୁଥାଉ ଆସିଗଲା ମେଘ। ନିମିଷକ ଭିତରେ ଆକାଶରେ ବାଦଲ ଖୁନ୍ଦି ହୋଇଗଲା ଏବଂ ଚାରିଆଡ଼ ଅନ୍ଧାର ଘୋଟିଗଲା, ଦି'ଟା ଘଡ଼ଘଡ଼ି ମାରିଦେଲା ଓ ବିଜୁଳି ଚହଟି ଗଲା। ଆମେ ପିଲାଏ ପଣିକିଆ ଡାକିବା ବନ୍ଦ କରି ଘରର ଗୋଟେ କୋଣରେ କାକି କୁକି ହୋଇ ବସିଗଲୁ। ଏଇ ସମୟରେ ଆଜ୍ଞା ବାହାରକୁ ଯାଇ ବର୍ଷା ଆସିବା ଲକ୍ଷ୍ୟ କରି ଫେରି ଆସି ସମସ୍ତଙ୍କୁ ବାହାରକୁ ଡାକି ନେଲେ। ଆକାଶକୁ ଚାହିଁବାକୁ କହିଲେ। ବର୍ଷା ପଡ଼ି ନଥାଏ, ତେଣୁ ଆମେ ସମସ୍ତେ ହାତ ଧରାଧରି ହୋଇ ଉପରକୁ ଚାହିଁ ଦେଖିଲୁ ଇନ୍ଦ୍ରଧନୁର ଅପୂର୍ବ ଶୋଭା। ଆଜ୍ଞା ପଚାରିଲେ "କ'ଣ ସବୁ ଦେଖିଲ ?" ଆମେ ଇନ୍ଦ୍ରଧନୁ କଥା କହିଲୁ। ସେ ଆମକୁ ପୂର୍ବରୁ ଇନ୍ଦ୍ରଧନୁର ସୃଷ୍ଟି ବିଷୟ ବୁଝାଇଥିଲେ। ତା'ପରେ ଆକାଶରେ ଭାସି ଭାସି ଯାଉଥିବା ବାଦଲକୁ ଦେଖାଇ କହିଲେ, "ଦେଖ, ବାଦଲ ସବୁ ଭାସି ଭାସି ଯାଉଛନ୍ତି। କିଛି ସମୟପରେ ନିକଟସ୍ଥ ସୋଲରୀ ଓ ଭାଲେରୀ ପର୍ବତରେ ଧକ୍କାଖାଇ ଉତ୍ତର ଦିଗରୁ ଯେତେବେଳେ ଫେରିଆସିବେ ସେତେବେଳେ ବର୍ଷା ହେବ। ଆମେ ଅପେକ୍ଷା କରିବା ବର୍ଷାକୁ।" ସତକୁ ସତ କିଛି ସମୟପରେ ଭସା ବାଦଲର ଗତି ବଦଳିଲା ଓ ବର୍ଷା ହେଲା। ତା'ପରେ ଆଜ୍ଞା ଚିଲିକାକୁ ଦେଖାଇ କହିଲେ "ଦେଖ ବର୍ଷା ପାଣି ଗାଁ ଦାଣ୍ଡରୁ ବହିଯାଇ ଚିଲିକାରେ ମିଶୁଛି ଓ ଚିଲିକା ଉପରେ ବର୍ଷା ହେବାରୁ ଚିଲିକାର ପାଣି ବଢ଼ୁଛି। ବର୍ଷାକାଳ ହେବା ପରେ ଖରା ପଡ଼ିଲେ ଚିଲିକା ପାଣି ବାଷ୍ପ ହୋଇ ଆକାଶକୁ ଯାଇ ମେଘ ସୃଷ୍ଟି କରୁଛି। ଏଇ ମେଘ ପୁଣି ବର୍ଷା ହୋଇ ତଳକୁ ଆସୁଛି।" ମୁଁ ଉପର କ୍ଲାସ୍‌କୁ ଆସିଲା ପରେ ଜାଣିଲି ଯେ, 'ଆଜ୍ଞା' ସେଦିନ 'ଜଳଚକ୍ର' ବୁଝାଇଥିଲେ। ଆଜି ଯେଉଁ 'ପରିବେଶ' ମାଧ୍ୟମରେ ବିଜ୍ଞାନ ଶିକ୍ଷା କଥା କୁହାଯାଉଛି 'ଆଜ୍ଞା'ଙ୍କ ଶିକ୍ଷାଦାନ ପ୍ରଣାଳୀ ଏହାଠାରୁ କେଉଁଗୁଣରେ କମ୍ ନଥିଲା।

ଆଗରୁ କହିଛି ଆମ ପାଖରେ ପଢ଼ିବା ପାଇଁ କୌଣସି ପାଠ୍ୟ ପୁସ୍ତକ ନଥିଲା। ଆଜ୍ଞା 'କେଶବ କୋଇଲି' ଓ 'ଗୁଣସାଗର' ନାମକ ଦୁଇଟି କବିତା ପୁସ୍ତକ ରଖିଥା'ନ୍ତି। ସେହି ପୁସ୍ତକରୁ କେତେକ ପଂକ୍ତି ଆବୃତ୍ତି କରନ୍ତି ଓ ସେଥିରେ

ଆସୁଥିବା ଚରିତ୍ର (ଯଶୋଦା, କୃଷ୍ଣ, ରାଧା ଇତ୍ୟାଦି) ଗୁଡ଼ିକର ସଜୀବ ଅଭିନୟ କରି ଆମକୁ ଶବ୍ଦାର୍ଥ ଓ ଭାବାର୍ଥ ବୁଝାଇଥାନ୍ତି। ତାହା ଥିଲା ଆମର ସାହିତ୍ୟ ଶିକ୍ଷା। ସାହିତ୍ୟ ଶିକ୍ଷାଦାନର ଏହି ପ୍ରଣାଳୀକୁ ମୁଁ ଏବେ "ଜୟଫୁଲ ଲାର୍ଣ୍ଣି" ବୋଲି ବିବେଚନା କରୁଛି।

ଆଉ ଦିନକର ଘଟଣା ଏ ପର୍ଯ୍ୟନ୍ତ ଅତି ପ୍ରାଞ୍ଜଳ ଭାବରେ ମନେ ରହିଛି। ହଠାତ୍ ଦିନେ ଖରାବେଳକୁ (ସ୍କୁଲ୍ ଛୁଟି ହେବା ବେଳ) ଗୋଟେ ଲୋକ, (ପିଲା, ବଡ଼, ସ୍ତ୍ରୀ, ପୁରୁଷ) ମୁଣ୍ଡରେ ବୁକୁଳି ଧରି ଆମ ସ୍କୁଲ୍ ଚାରିପାଖରେ ଜମିଗଲେ। ସେମାନେ ତାଙ୍କ ଭାଷାରେ କ'ଣ ସବୁ କଥାବାର୍ତ୍ତା କରୁଥାନ୍ତି ଓ ଯାହାକୁ ଦେଖନ୍ତି ତାଙ୍କୁ କ'ଣ ସବୁ ବିକଳରେ କହୁଥାନ୍ତି। ଆଜ୍ଞା ଆମକୁ ଛୁଟି ଦେଇ, ନିଜେ ଗାଧୋଇବା ପୋଖରୀକୁ ବାହାରିଥାନ୍ତି। ସେ ସେଇ ଲୋକମାନଙ୍କ ପାଖକୁ ଯାଇ ଠରାଠରି କରି ସେମାନଙ୍କ ସହିତ କଥାବାର୍ତ୍ତା କରି ଜାଣି ପାରିଲେ ଯେ ସେମାନେ ଅନ୍ୟ ରାଜ୍ୟରୁ ଚାଲିଆସିଛନ୍ତି। କାରଣ ସେଠାରେ ଘୋର ମରୁଡ଼ି ପଡ଼ିଛି ଓ ସେମାନଙ୍କର ଖାଇବାକୁ କିଛି ନାହିଁ। ଆଜ୍ଞା ରାସ୍ତାରୁ ଫେରିଆସି ଆମମାନଙ୍କୁ କିଛି ସମୟ ରହିବାକୁ କହି ନିଜେ ବାଲ୍‌ଟି ଓ କୂଅ ଦଉଡ଼ି ଧରି କୂଅ ପାଖକୁ ଦୌଡ଼ିଲେ। ଆମେ ସ୍କୁଲ୍‌ରେ ଥିବା ମାଠିଆ, ତାଙ୍କ ବାସନ କୁସନ ଧରି ତାଙ୍କ ପିଛାକଲୁ। 'ଆଜ୍ଞା' ପାଣି ବାହାର କରି ଦେଉଥା'ନ୍ତି ଓ ଆମେମାନେ ଆମର ଭୋକଶୋଷ ଭୁଲି ସେ ପାଣି ଆଣି ବାହାରୁ ଆସିଥିବା ଲୋକମାନଙ୍କୁ ଦେଉଥାଉ। ଏ ଭିତରେ ବହୁଲୋକ ସେଠାରେ ଜମା ହୋଇଯାଇଥିଲେ। ଆଜ୍ଞା ସେମାନଙ୍କୁ ସବୁକଥା କହିବାରେ ଗାଁ ବାଲାଏଁ ସେମାନଙ୍କର ଖାଇବା ପାଇଁ ଚୂଡ଼ା, ମୁଢ଼ି, ଗୁଡ଼ ଆଦି ପହଞ୍ଚାଇଦେଇଥିଲେ। ଆଜ୍ଞା ସମସ୍ତଙ୍କୁ ପରେ ବୁଝାଇ ଦେଲେ ଯେ ଅସୁବିଧାରେ ପଡ଼ିଥିବା ଲୋକଙ୍କୁ ନିଜର କୁଣିଆ ଭାବି ସେମାନଙ୍କୁ ସାହାଯ୍ୟ କରିବା ଆମର କର୍ତ୍ତବ୍ୟ। ସେଇ ଲୋକମାନେ ପ୍ରାୟ ସପ୍ତାହେ ସେଠାରେ ରହିଥିଲେ। ସେମାନଙ୍କୁ 'ମରାଠିବାୟା' ବୋଲି ଚୋର କହି ଛୋଟ ପିଲାମାନଙ୍କୁ ମା' ମାନେ ତାଗିଦା କରୁଥିଲେ। ସେମାନେ ମହାରାଷ୍ଟ୍ରରୁ ଆସିଥିବା କଥା ଆମେ ପରେ ଜାଣିଲୁ। ଏହା ମୂଲ୍ୟବୋଧ ଶିକ୍ଷାର ଏକ ଅଂଶନୁହେଁ କି ?

ଆମ ସ୍କୁଲ୍‌ଟି ଗୋଟିଏ ପବିତ୍ର ପରିବେଶରେ ଥିଲା; ଏକ ପାଖରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଓ ଅନ୍ୟପାଖରେ ଶ୍ରୀଗାଦିଶ୍ୱର (ମହାଦେବଙ୍କ) ମନ୍ଦିର। ପ୍ରତିବର୍ଷ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଓ ଶ୍ରୀଗାଦୀଶ୍ୱରଙ୍କ ଦଣ୍ଡଯାତ୍ରା ହୁଏ। ଏହି

ସମୟରେ ସ୍କୁଲ୍‌ରେ ପଢ଼ା ବନ୍ଦ ରହେ, କିନ୍ତୁ ଆଜ୍ଞା ଆମମାନଙ୍କୁ ସାଙ୍ଗରେ ନେଇ ଯାତ୍ରାରେ ମିଶିଯାନ୍ତି। ଯେତେବେଳେ ଯେଉଁ କାମର ଆବଶ୍ୟକ ପଡ଼େ, ଆମେ ବଡ଼ମାନଙ୍କୁ ସହ ମିଶି କରୁ। ବିଶେଷ କରି ଖରାଦିନ (ଚୈତ୍ର ମାସ) ଯେଉଁ 'ମେରୁ' ଯାତ୍ରା ହୁଏ ପଣାସଂକ୍ରାନ୍ତି ଦିନ, ସେଦିନ ଆମର ମୁଖ୍ୟ କାମ ଥାଏ ଲୋକଙ୍କୁ ପିଇବା ପାଣି ଯୋଗାଇବା। ମାଷ୍ଟ୍ରେ ଆଜ୍ଞା ଆମ ଆଖ ପାଖରେ ରହିଥାନ୍ତି। ଆମର ଯାତ୍ରା ଦେଖାହୁଏ ତା' ସହିତ ବଡ଼ମାନଙ୍କ ସହ ମିଶି କାମ କରିବାର ମଧ୍ୟ ଯଥେଷ୍ଟ ଆନନ୍ଦଦାୟକ ଅନୁଭୂତି ଲାଭ ହୋଇଥାଏ। ଏହା "ଗୋଷ୍ଠୀ ସାଂଗରେ ରହି ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମ"ର ଏକ ଉଦାହରଣ।

ଗୁରୁଦେବଙ୍କର ମହାନ୍ ବ୍ୟକ୍ତିତ୍ୱ କଳନା କରିବା ମୋ ପକ୍ଷରେ ସଂଭବ ନୁହେଁ। ଉତ୍ତର ଜୀବନରେ ନିଜେ ଶିକ୍ଷକତା କରିବାରୁ ଶିକ୍ଷାଦାନର କେତୋଟି ଦିଗ ଉପରେ ଚର୍ଚ୍ଚା, ଆଲୋଚ଼ନା ଓ ଗବେଷଣା ଲବ୍ଧ ଜ୍ଞାନ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଲି, ନିଜ ପିଲାବେଳର ଶିକ୍ଷାକୁ ମନେ ପକାଇ ଏବେ ଜାଣୁଛି ଯେ ଆମ ପ୍ରିୟ "ମାଷ୍ଟ୍ରେ ଆଜ୍ଞା" ଏସବୁ ଦିଗରେ ଜଣେ ଧୂରୀଣ ତଥା ବିଶେଷଜ୍ଞ ଥିଲେ। ସ୍ୱାଧୀନତା ପରେ ସରକାର ତାଙ୍କୁ ସପ୍ତମ ଶ୍ରେଣୀ ପରୀକ୍ଷାରେ ବସାଇ, ତା'ପରେ ଇ.ଟି. ତାଲିମ ଦେବା କଥା ମୁଁ ପରେ ଜାଣିଲି।

ସର୍ବଦା ସେ ପରମ ଗୁରୁ ଶ୍ରୀ ସକଳେଶ୍ୱରଙ୍କ ପଦାରବିନ୍ଦରେ ସହସ୍ର ପ୍ରଣିପାତ କରି ନିଜ କର୍ତ୍ତବ୍ୟରେ ନିୟୋଜିତ ରହିଛି।



# ଦାଢ଼ି ଆଜ୍ଞା: ରବିନାରାୟଣ ଶତପଥୀ

*ଗଙ୍ଗାଧର ମାଝୀ*

"ଦାଢ଼ି ଆଜ୍ଞା" ! ଆମ ସମସ୍ତଙ୍କ ପରିଚିତ ନାଁଟିଏ। ଖାଲି ନାଁଟିଏ ବା, କେବଳ ମଣିଷଟିଏ ନୁହେଁ, ଗୋଟିଏ ଅନୁଷ୍ଠାନ ଥିଲେ ସେ। ରବିନାରାୟଣ ଶତପଥୀ ଅପେକ୍ଷା "ଦାଢ଼ି ଆଜ୍ଞା" ଭାବରେ କେବଳ ହେମଗିରି, ସୁନ୍ଦରଗଡ଼ ନୁହେଁ, ସମଗ୍ର ପଶ୍ଚିମ ଓଡ଼ିଶାରେ ସେ ପରିଚିତ।

ଆଜନ୍ମ ବ୍ରହ୍ମଚାରୀ। କେବେ ଘରର ଠିକଣା ଓ ପରିବାରର ପରିଚୟ ଦେଇ ନିକଟତର ହୋଇନାହାନ୍ତି। ମଣିଷପଣିଆ ଓ କର୍ମନିଷ୍ଠା ହିଁ ତାଙ୍କର ପରିଚୟ। ମୁଁ ଏତିକି ଜାଣେ - ଯୋଗ୍ୟ ପିତାର ସେ ଯୋଗ୍ୟ ସନ୍ତାନ। ସ୍ୱାଧୀନତା ପ୍ରାପ୍ତିର ପ୍ରଥମ ପିଢ଼ିର ମାନବବାଦୀ ଚିକିତ୍ସକ ବାଞ୍ଛାନିଧି ଶତପଥୀଙ୍କର ସେ କନିଷ୍ଠ ପୁତ୍ର। ପିତାଙ୍କର ଆଦର୍ଶରେ ଜାତି-ଧର୍ମ-ବର୍ଣ୍ଣର ଘୃଣ୍ୟଭାବକୁ ଭୁଲି ମଣିଷର ସେବାକୁ ସେ ଆଦର୍ଶ ଭାବରେ ଗ୍ରହଣ କରିନେଇଥିଲେ। ମଣିଷକୁ ଠିକ୍ ମଣିଷ ପରି ଗଢ଼ିବାର ସଂକଳ୍ପ ନେଇ ସାଧନା କରିଥିଲେ। ସେବା, ତ୍ୟାଗ ଓ ମାନବିକତାର ସେ ଥିଲେ ଗୋଟାଏ ଅନନ୍ୟ ପ୍ରତୀକ। ଅନେକ ତାଙ୍କୁ ହେମଗିରିର ଭୀଷ୍ମ ପିତାମହ ବୋଲି କହୁଥିଲେ। କିନ୍ତୁ ମୋ ପାଇଁ ସେ ଥିଲେ ବନ୍ଧୁ, ଗୁରୁ, ଦାର୍ଶନିକ ଓ ଶେଷରେ ବିଚିତ୍ର ଆତ୍ମଶକ୍ତି ସଂପନ୍ନ ଦିବ୍ୟମଣିଷ।

ସୁନ୍ଦରଗଡ଼ ବସ୍‌ଷ୍ଟାଣ୍ଡ ପାଖାପାଖି ରାସ୍ତା। ବଡ଼ି ଭୋରରୁ ପ୍ରାତଃ ଭ୍ରମଣରେ ବାହାରିଥାଏ। ଅଚାନକ କଥା। ଭୁବନେଶ୍ୱର ବସ୍‌ରୁ ଓହ୍ଲାଇ ଚାଲି ଚାଲି ସେ ଯାଉଛନ୍ତି। ପଛରୁ ଡାକିଦେଲି ଶତପଥୀ ଆଜ୍ଞା ! ଚିହ୍ନା ଡାକ ଶୁଣି ଅଟକିଗଲେ। ତା'ପରେ ଦିପଦ ଆନ୍ତରିକ ଆଳାପ। ଶେଷରେ ନିର୍ବିକାର ଭାବରେ କହିଲେ - "ଆଉ ବେଶୀ ଦିନ ନୁହେଁ। ଏଇ ଛ' ମାସ ମଧ୍ୟରେ ମୁଁ ଯାଉଛି।"

ପ୍ରଚୁର ଆତ୍ମପ୍ରତ୍ୟୟର ମଣିଷଟିର ତୁଣ୍ଡରେ ପୁଣି ଏ ଭାଷା ! ମୁଁ ଚମକି ପଡ଼ିଲି। କିଛିକ୍ଷଣ ଚୁପ୍ ରହିଲି - "ମରିବାଟା ଭଗବାନଙ୍କ ହାତରେ। ସେ ଜନ୍ମ ଦେଇଛନ୍ତି ତାଙ୍କ କାମ ପାଇଁ। କାମ ନ ସରିବା ପୂର୍ବରୁ ସେ ନେବେନି। ଆପଣଙ୍କ

ସ୍ୱାସ୍ଥ୍ୟ ଖୁବ୍ ଦୁର୍ବଳ। ମୋର ବି ସେଇ ଅବସ୍ଥା। କିଏ ଜାଣେ କିଏ ଆଗ ଯିବ!" ତା'ପରେ ଥରେ ତୁମୁଲିଆରେ ସାକ୍ଷାତ। ଖୁବ୍ ଅସୁସ୍ଥ ମନେ ହେଉଥିଲେ। ତାଙ୍କୁ ବାଧ୍ୟ କରିବା ସମ୍ଭବ ନୁହେଁ। ନିଜ ଇଚ୍ଛା ଓ ବିବେକର ମଣିଷ ସେ। କହିଲି "ଚାଲନ୍ତୁ, ମୋ ପାଖରେ ରହି କିଛି ଦିନ ବିଶ୍ରାମ ନେବେ। ଚିକିତ୍ସାରେ ରହିବେ।" ତଳକୁ ମୁହଁ କରି କଥାକୁ ଭିନ୍ନ ମୋଡ଼ ଦେଇ କହିଲେ - "ହଁ ଯିବା ତ, ଆପଣ ଚାଲନ୍ତୁ, ମୁଁ ପରେ ଯିବି।"

ସେଇ ଶେଷକଥା, ସେଇ ଶତପଥୀ ଆଜ୍ଞା। ଛ' ମାସ ପୂରି ବି ପାରିନି। ମୁଁ ଡାକ୍ତରଖାନାରେ, ସେ ବି ଡାକ୍ତରଖାନାରେ। ଡାକ୍ତରଖାନାରେ ଶୁଣିଲି - ପରେ ଯିବାକୁ କହିଥିବା ମଣିଷଟି ଆଗ ଚାଲିଗଲେ। ଦାଢ଼ି ଆଜ୍ଞା ଚାଲିଗଲେ - !!! ଛାତି ଭିତରଟା ଦୋହଲି ଗଲା। ପୂର୍ବକଥା, ପୂର୍ବଘଟଣା ସବୁ ଆଖି ଆଗରେ ଭାସିଉଠିଲା। ତାଙ୍କ କଥାକୁ ସେ ସତ କରି ମୋତେ ପଛରେ ପକାଇ ଚାଲିଗଲେ। ଜୀବନର ଅଙ୍କ କଷାକଷିରେ ସେ ଜିତାପଟ ନେଲେ।

**ଆଦର୍ଶ ଶିକ୍ଷକ:**

ହେମଗିରି ଭଳି ପଛୁଆ ଆଦିବାସୀ ଅଞ୍ଚଳର ଉନ୍ନତି ପାଇଁ ଜଣେ କ୍ରାନ୍ତିକାରୀର ଆବଶ୍ୟକତା ଥିଲା। ଏହିପରି ପୁରୁଷାକାରର ସାମର୍ଥ୍ୟକୁ ଦାଢ଼ି ଆଜ୍ଞାଙ୍କ ଭିତରେ ପ୍ରଥମେ ଆବିଷ୍କାର କରିପାରିଥିଲେ ହେମଗିରିର ବିଶିଷ୍ଟ ଜନନେତା ଜମିଦାର ଇଶ୍ୱରୀ ପ୍ରସାଦ ସିଂହ। ଦାଢ଼ି ଆଜ୍ଞାଙ୍କୁ ନେଇ ଇଶ୍ୱରୀବାବୁ ଗଢ଼ିଲେ ତୁମୁଲିଆ ମଧ୍ୟ-ଇଂରାଜୀ ବିଦ୍ୟାଳୟ। ଶିକ୍ଷକ ଯୁଗେ ଯୁଗେ ସମାଜକୁ ପଙ୍ଗୁତାରୁ ରକ୍ଷା କରିଛି। ମଣିଷଠାରେ ଶିକ୍ଷା ଓ ବିବେକର ଆଲୋକ ଖେଳାଇଛି। ନୀତି ଓ ଆଦର୍ଶର ସଂସ୍କାର ଆଣିଛି। ଅନ୍ଧବିଶ୍ୱାସକୁ ଦୂରେଇ ଦେଇଛି। ଏହି ମହାସତ୍ୟକୁ ଦାଢ଼ି ଆଜ୍ଞା ପ୍ରଥମେ ଜଣେ ଶିକ୍ଷକ ଭାବରେ ପ୍ରମାଣିତ କରିଦେଇଛନ୍ତି।

ପକେଟ୍‌ରେ ଲିଆ (ମୁଢ଼ି) ଖାଇବାକୁ ମାତ୍ର ପଚିଶଟି ପଇସା। ସାଇକେଲ୍‌ର ଗୋଟାଏ ପଟେ ପ୍ୟାଡ଼ଲ ନାହିଁ। ସେଇ ସାଇକେଲ୍ ଧରି ରାତିରେ ଶେଷ ପ୍ରହରରେ କାହାକୁ କିଛି ନ ଜଣାଇ ଜଙ୍ଗଲ ରାସ୍ତାରେ ଚାଲିଲେ ଦାଢ଼ି ଆଜ୍ଞା। ସୁନ୍ଦରଗଡ଼ରେ ପହଞ୍ଚି ମଣିଷ ପିଲା ଖୋଜି ଚାଲିଲେ। ପଚିଶ ପଇସାର ଉଧାରରେ କିଣିରେ ଖଣ୍ଡିଏ ରେଜିଷ୍ଟର ଖାତା। ପନ୍ଦର ପିଲା ସଂଗ୍ରହ କରି

ଫେରିଲେ। ଆରମ୍ଭ ହେଲା ମାଣିକେଶ୍ୱରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟ। ଦୃଢ଼ ମନୋବଳ ମଧ୍ୟରେ ସବୁକାମ ଏମିତି ହଠାତ୍ ହୁଏ, କଉଡ଼ି-ଶୂନ୍ୟ ଅବସ୍ଥାରେ। ସେମିତି ୧୯୮୩ ମସିହାରେ ହରିଜନ, ଆଦିବାସୀ ଓ ସ୍ଥାନୀୟ କୃଷକ ତଥା ସାଧାରଣ ଜନତାଙ୍କ ପାଖରୁ ମୁଠି ଚାଉଳ ମାଗୁଣିରେ ବାରଟି ପିଲାଙ୍କୁ ନେଇ ଆରମ୍ଭ କରିଥିଲେ ମାଣିକେଶ୍ୱରୀ ମହାବିଦ୍ୟାଳୟ।

ଆଜି ସମଗ୍ର ଓଡ଼ିଶାରେ ଛତୁଫୁଟିଲା ପରି ବିଦ୍ୟାଳୟ ଓ ମହାବିଦ୍ୟାଳୟ। ମାତ୍ର ଦାଢ଼ି ଆଜ୍ଞାଙ୍କ ସ୍କୁଲ୍ କଲେଜ କହିଲେ ଗୋଟାଏ ନିଆରାଭାବ, ଅଲଗା ଚେତନା, ଭିନ୍ନସ୍ୱାଦ ଓ ମୌଳିକ ଆଦର୍ଶ ବାରି ହୋଇପଡ଼େ। କଲେଜଟିଏ ଖୋଲିବା ପୂର୍ବରୁ ଅନୁଷ୍ଠାନର ପୃଷ୍ଠପୋଷକମାନେ ପ୍ରଥମେ ସଭାପତି, ସଂପାଦକ, ସଭ୍ୟ, ଅର୍ଥ, ପିଲା ସଂଗ୍ରହ କରନ୍ତି। ତା'ପରେ ଚାଲେ ଟଙ୍କା ଦିଆ ନିଆ ନିଯୁକ୍ତି। ତା'ପରେ ପରିତ୍ୟକ୍ତ କୋଠା, ପ୍ରାଥମିକ ସ୍କୁଲ୍ର ଘର ଭିତରେ ଆଖଡ଼ା ନାଚ ପରି କଲେଜ ପାଞ୍ଚ-ସାତ ବର୍ଷ ଧରି ଚାଲେ। ଏ ହେଉଛି ଏକ ସାଧାରଣ ଚିତ୍ର। ମାତ୍ର ଦାଢ଼ି ଆଜ୍ଞାଙ୍କ ବିଚାର ଅଲଗା। ପ୍ରଥମେ ଛାତ୍ରଛାତ୍ରୀ ପଢ଼ିବାକୁ ଘର, ଲାଇବ୍ରେରୀ, ଉପଯୁକ୍ତ ଆଦର୍ଶ ଶିକ୍ଷକ ଖୋଜା ଓ ନିଯୁକ୍ତି, ଛାତ୍ରାବାସ, ଉପକରଣ ପରେ ପିଲା ସଂଗ୍ରହ, ନାମ ଲେଖା, ତା'ପରେ ସଭାପତି ଓ ସଂପାଦକ ନିର୍ବାଚନ ଓ ସରକାରଙ୍କୁ ସ୍ୱୀକୃତି ପାଇଁ ଆବେଦନ। ଏହାହିଁ ତ ଭିନ୍ନ ରୁଚି। ସେଥିପାଇଁ ଦାଢ଼ି ଆଜ୍ଞା ଭିନ୍ନ ମନେ ହୁଅନ୍ତି।

ଦାଢ଼ି ଆଜ୍ଞା ଜାଣିଥିଲେ ସୁନ୍ଦରଗଡ଼ ବିଶେଷ କରି ହେମଗିରି ଅଞ୍ଚଳର ପ୍ରଧାନ ଦୁର୍ବଳତା - ଶିକ୍ଷାର ଅଭାବ। ଗ୍ରାମ ମୁଖିଆ, ଟାଉଟର, ମହୁଲି ବ୍ୟବସାୟୀ ଓ ଅମଲାତନ୍ତ୍ରମାନେ ଅଶିକ୍ଷିତ ଗ୍ରାମବାସିନ୍ଦାଙ୍କୁ ଠକି ଚାଲିଛନ୍ତି, ଶୋଷି ଚାଲିଛନ୍ତି। ତେଣୁ ଶିକ୍ଷାର ପ୍ରସାର ହେଉଛି ପ୍ରଥମ ଆବଶ୍ୟକତା। ଏହି କାରଣରୁ ଶିକ୍ଷକରୁ ସେ ମଣିଷ ସେବକ ପାଲଟିଗଲେ। ନିଜର ସୁଖ, ସ୍ୱାର୍ଥ ଓ ବିଳାସ ତ୍ୟାଗ କରି ବ୍ରହ୍ମଚାରୀ ଜୀବନବରଣ କରିନେଲେ। ନିଜର ପରିବାର ନାହିଁ - ମାତ୍ର ଶହ ଶହ ପରିବାରର ସ୍ୱପ୍ନକୁ ସେ ସାର୍ଥକ କଲେ। ତାଙ୍କରି ତ୍ୟାଗ ଓ ସାଧନାର ଫଳସ୍ୱରୂପ କେବଳ ହେମଗିରି ନୁହେଁ, ସାରା ସୁନ୍ଦରଗଡ଼ ଜିଲ୍ଲାରେ ତିରିଶ ବର୍ଷ ଧରି ଶିକ୍ଷାର ପ୍ରଗତି ସାଧିତ ହୋଇଛି। ଏମିତି କୌଣସି ଗାଁ ସୁନ୍ଦରଗଡ଼ରେ ନାହିଁ ଯେଉଁଠି ଦାଢ଼ି ଆଜ୍ଞାଙ୍କ ଛାତ୍ରଛାତ୍ରୀ ନାହାନ୍ତି। ପୁଣି, ସେହି ଛାତ୍ରଛାତ୍ରୀମାନେ ଗୁରୁଙ୍କ ପରି ସ୍ୱାବଲମ୍ବନଶୀଳ ଓ ବିବେକବନ୍ତ।

ଦାଢ଼ି ଆଜ୍ଞାଙ୍କ ସାଧନାପୀଠ, କର୍ମପୀଠ-ମାଣିକେଶ୍ୱରୀ ଶିକ୍ଷାନୁଷ୍ଠାନ ଗୋଟିଏ ପରିବେଷ୍ଟନୀରେ ପ୍ରଥମ ଶ୍ରେଣୀରୁ ଆରମ୍ଭ କରି +୩ ଡିଗ୍ରୀ ଶ୍ରେଣୀ ଯାଏ ଜୀବନ୍ତ ଆବାସିକ ଅନୁଷ୍ଠାନ। ପ୍ରତିଦିନ ସଂଜ ଓ ସକାଳରେ ପାଞ୍ଚବର୍ଷର ନିଷ୍ପାପ ବିଦ୍ୟାର୍ଥୀର ପ୍ରାର୍ଥନା ଓ କୋଡ଼ିଏ ବର୍ଷ ତରୁଣର ପ୍ରାର୍ଥନା ଭିତରେ ଗୋଟାଏ ମହାନ୍ ସମତା ଭାବ ପରିଲକ୍ଷିତ ହୁଏ। ବସ୍ତୁବାଦୀ ଶିକ୍ଷାଧାରାରେ ଏ ପ୍ରକାର ଗୁରୁକୁଳ ଆଶ୍ରମର ଚଳଣି ପ୍ରକୃତରେ ବିଚିତ୍ର। ସର୍ବସାଧାରଣଙ୍କ ଯଥାଶକ୍ତି ଦାନ ଓ ଶ୍ରମରେ ତାଙ୍କ ଅନୁଷ୍ଠାନ ନିର୍ମିତ। ରାଜନୀତିଆମାନଙ୍କ ପ୍ରଭାବ ନାହିଁ। ପରୀକ୍ଷାର ଅସତ୍ ଉପାୟ ଅବଲମ୍ବନର ଆଭାସ ନାହିଁ। ସହଶିକ୍ଷା ସତ୍ତ୍ୱେ ଛାତ୍ରୀସମାଜ ପ୍ରତି ଅଶ୍ଳୀଳ ବ୍ୟବହାର ନାହିଁ। ପରିଚାଳନା ସମିତିର ମୁଁ ସଭାପତି, ଈଶ୍ୱରୀବାବୁ ସଂପାଦକ, ମାତ୍ର ଦାଢ଼ି ଆଜ୍ଞାଙ୍କ ନିଷ୍ଠତ୍ତି ଅମୃତମୟ ଫଳ ଦିଏ। ପ୍ରାଥମିକ ପରୀକ୍ଷା, ମଧ୍ୟ ଇଂରାଜୀ ପରୀକ୍ଷା, ମାଟ୍ରିକ୍ ପରୀକ୍ଷା ଓ ମହାବିଦ୍ୟାଳୟ ପରୀକ୍ଷା- ସବୁଥିରେ ମାଣିକେଶ୍ୱରୀ ଶିକ୍ଷାନୁଷ୍ଠାନ ଜିଲ୍ଲାସ୍ତରରେ ଆଖିଦୃଶିଆ ଆସନଲାଭ କରିଥିବ।

ଶତପଥୀ ଆଜ୍ଞା ଜଣେ ଆଦର୍ଶ ଶିକ୍ଷକ ଓ ସ୍ୱୟଂସଂପୂର୍ଣ୍ଣ ମଣିଷ ଭାବରେ ପୂର୍ଣ୍ଣାଙ୍ଗ ଶିକ୍ଷା ଉପରେ ଗୁରୁତ୍ୱ ଦେଉଥିଲେ। ସାର୍ଟିଫିକେଟ୍ ଲାଭ କରିବା ତାଙ୍କର ଶିକ୍ଷାର ଏକମାତ୍ର ଲକ୍ଷ୍ୟ ନଥିଲା। ଜୀବନରେ ସମସ୍ୟାର ସମାଧାନ ପାଇଁ ତାଙ୍କ ବିଦ୍ୟାର୍ଥୀମାନଙ୍କୁ ସେ ଅନୁରୂପ ଭାବେ ଗଢ଼ି ତୋଳିଥିଲେ। ସବୁବେଳେ କହୁଥିଲେ- ବଡ଼ ଅଫିସରଟିଏ ନହୁଅ-ମାତ୍ର ଭଲ ଘାସକଟାଳିଟିଏ, ଭଲ ବହି ବଂଧାଳିଟିଏ ହୁଅ- ସେଥିରେ ଜୀବନ ସାର୍ଥକ ହେବ। ଧନ୍ଦାମୂଳକ ଶିକ୍ଷାର ପ୍ରେରଣା ଦାତା ସେ। ନୃତ୍ୟ, ଗୀତ ପ୍ରତିଯୋଗିତା, ବୃକ୍ଷରୋପଣ, ପ୍ରବଚନ, ପୂଜ୍ୟପୂଜା, କ୍ରୀଡ଼ା, ସାଂସ୍କୃତିକ ସମାରୋହ- ସବୁ କ୍ଷେତ୍ରରେ ମାଣିକେଶ୍ୱରୀ ଶିକ୍ଷାନୁଷ୍ଠାନର ବିଦ୍ୟାର୍ଥୀମାନେ ଆଗୁଆ। ଅତୁଳନୀୟ ନାବିକ ଦାଢ଼ି ଆଜ୍ଞା। ଅନୁଷ୍ଠାନର ଜାହାଜ ସବୁବେଳେ ନିରାପଦରେ ଲକ୍ଷ୍ୟସ୍ଥଳରେ ପହଞ୍ଚୁଥିଲା। ପ୍ରାଦେଶିକ ଓ ଜାତୀୟସ୍ତରରେ କବାଡ଼ି, ଖୋଖୋ, ଫୁଟବଲ୍, ଦୌଡ଼, ଲମ୍ବାଡ଼ିଆଁ, ଉଚ୍ଚଡ଼ିଆଁ, ସନ୍ତରଣ ଆଦି କ୍ରୀଡ଼ା କ୍ଷେତ୍ରରେ ଶିକ୍ଷାନୁଷ୍ଠାନର ଛାତ୍ରଛାତ୍ରୀଙ୍କ ସୁନାମ ଜୀବନ୍ତ।

ହେମଗିରି ପରି ଗୋଟିଏ ପଛୁଆ ନିରକ୍ଷର ଆଦିବାସୀ ବହୁଳ ଅଞ୍ଚଳରେ ଏ ପ୍ରକାର ଶିକ୍ଷା ଓ ସଭ୍ୟତାର ଜାଗରଣ ପଛରେ ଦାଢ଼ି ଆଜ୍ଞାଙ୍କର ଆଖିର

କରାମତି ଥିଲା ବଳବାନ। ସେ ଆଖି ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲା। ସମସ୍ତଙ୍କର ମଙ୍ଗଳ ଚାହୁଁଥିଲା। ପୁଣ୍ୟ ଦେଖୁଥିଲା, ପ୍ରଗତି ଦେଖୁଥିଲା। ପାପକୁ ଓ ଅନ୍ୟାୟକୁ ଦୂରେଇ ପାରୁଥିଲା। ସେ ଯେଉଁ ଶିକ୍ଷାର ମହାଦୀପ ଜାଳିଛନ୍ତି ତାହାରି ଶିକ୍ଷାର ତେଜରେ ହେମଗିରି ରାଜ୍ୟର ପ୍ରଥମ ସାକ୍ଷର ଅଞ୍ଚଳ ହୋଇପାରିଛି।

ପନ୍ଦର ଜଣ ଛାତ୍ରଛାତ୍ରୀଙ୍କୁ ନେଇ ଗଠିତ ତାଙ୍କ ହାତଗଢ଼ା ମାଣିକେଶ୍ୱରୀ ଶିକ୍ଷାନୁଷ୍ଠାନରେ ଆଜି ବାରଶହରୁ ଅଧିକ ଛାତ୍ର। ଆଠଶହରୁ ଅଧିକ ବିଦ୍ୟାର୍ଥୀ ଜୀବନର ସମସ୍ତ ଶ୍ରୀର ପ୍ରତୀକ ବାଣୀଶ୍ରୀ, ବନଶ୍ରୀ, ଯୁବଶ୍ରୀ, ଜୟଶ୍ରୀ, ନବଶ୍ରୀ ଆଦି ଛାତ୍ରଛାତ୍ରୀ ନିବାସରେ ପୂର୍ଣ୍ଣାଙ୍ଗ ଶିକ୍ଷାଗ୍ରହଣ କରିଚାଲିଛନ୍ତି। ସ୍ୱାସ୍ଥ୍ୟଶିକ୍ଷା, ପରିମଳ ଶିକ୍ଷା, ଯୋଗଶିକ୍ଷା, ଧନ୍ଦାମୂଳକ ଶିକ୍ଷା, ସବୁର ଅପୂର୍ବ ସମନ୍ୱୟ ଏହି ଅନୁଷ୍ଠାନରେ ସମ୍ଭବ ହୋଇଛି। ଦାଡ଼ି ଆଜ୍ଞାଙ୍କ ଭରଷାରେ ଶହ ଶହ ମାଇଲ୍ ଦୂରରୁ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଅଭିଭାବକମାନେ ପୁଅଝିଅଙ୍କୁ ପାଠ ପଢ଼ିବାକୁ ଏଠାରେ ଛାଡ଼ିଛନ୍ତି। ସମସ୍ତଙ୍କ ପାଇଁ ସେ ଏକ ବିଶାଳ ବଟବୃକ୍ଷ। କଳା ପଇସା, ମନ୍ଦ ଅଭିଳାଷ, ଅସତ୍ ରାଜନୀତିକୁ ଉପାୟ କରି ସେ ଅନୁଷ୍ଠାନ ଗଠନ କରିନଥିଲେ। ସବୁବେଳେ ସେ ଗୋଟିଏ କଥା କହୁଥିଲେ - "ମାଛ ତେଲରେ ମାଛ ଭାଜିବା"। ଅନୁଷ୍ଠାନର ପଇସା ସତ୍‌ମାର୍ଗରେ ଅନୁଷ୍ଠାନ ପାଇଁ ଖର୍ଚ୍ଚ ହେଲେ ଅନୁଷ୍ଠାନର ଅଭାବ ହୁଏ ନାହିଁ। ତାଙ୍କରି ଉପାୟରୁ ପୁଷ୍କରିଣୀରେ ମାଛଚାଷ, ବଗିଚାରେ ପନିପରିବା ଉତ୍ପାଦନ ଓ ଅର୍ଥ ଉପାର୍ଜନ ହୋଇ ବିଦ୍ୟାର ଶ୍ରୀମନ୍ଦିର ନିର୍ମାଣ ସମ୍ଭବ ହୋଇଛି।

ବର୍ତ୍ତମାନର ନୀତିହୀନ ମୂଲ୍ୟବୋଧରହିତ ଶିକ୍ଷା ବ୍ୟବସ୍ଥା ଭିତରେ ଦାଡ଼ି ଆଜ୍ଞାଙ୍କ ଶିକ୍ଷାନୀତି ଭାରତୀୟ ଗୁରୁପରମ୍ପରାର ଏକ ନୂତନ ପର୍ଯ୍ୟାୟରେ ଆତ୍ମପ୍ରକାଶ କରିପାରିଛି।

ଏହି ମହାନ ଗୁରୁଙ୍କର ଜୀବନ ଦୀପ ଆଜି ଲିଭିଯାଇଛି। ମାତ୍ର ସେହି ଦୀପର ପ୍ରେରଣା ସହସ୍ର ଶିଖାର ଛାଇ ହୋଇ ସୁନ୍ଦରଗଡ଼ ତଥା ସାରା ଓଡ଼ିଶାର ଶିକ୍ଷା ସମାଜରେ ମୂଲ୍ୟବୋଧଭିତ୍ତିକ ଶିକ୍ଷାର ମାନଚିତ୍ର ଦେଖାଇ ପାରିଛି ଓ ଭବିଷ୍ୟତକୁ ଦେଖାଇବ, ଏଥିରେ କାହାରି ଦ୍ୱିମତ ନାହିଁ।

**ଚିର ବିପ୍ଲବୀ :**

ଦାଡ଼ି ଆଜ୍ଞା ଥିଲେ ଅନାସକ୍ତ କର୍ମଯୋଗୀ। ସେବା, ତ୍ୟାଗ ଓ କର୍ମକୁ ନେଇ

ସେ ଚିର ବିପ୍ଳବୀ। ଆଦିବାସୀ ହେମଗିରି ଅଞ୍ଚଳରେ ଉନ୍ନତ କୃଷି ପ୍ରଣାଳୀ ଓ କୃଷିକର୍ମର ଅନ୍ୟତମ ପ୍ରବର୍ତ୍ତକ। ଚାଷୀ ଓ ମୂଲିଆମାନଙ୍କର ଦୃଷ୍ଟିକୋଣ ଓ ଶ୍ରମଶକ୍ତିକୁ ଶୃଙ୍ଖଳିତ କରିବା ପାଇଁ ସେ ପ୍ରେରଣା ଓ ପରାମର୍ଶ ଦେଇ ଆସୁଥିଲେ। ଭ୍ରଷ୍ଟ ମୂଲ୍ୟବୋଧ କବଳିତ ନୀତିହୀନ ରାଜନୀତି ଅପେକ୍ଷା ମାନବିକତାର ଉଚ୍ଚ ଆଦର୍ଶରେ ଗଣତନ୍ତ୍ରକୁ ପରିପୁଷ୍ଟ କରାଇବାରେ ତାଙ୍କର ଭୂମିକା ଅବିସ୍ମରଣୀୟ।

ହେମଗିରି ଅଞ୍ଚଳ ପ୍ରତ୍ୟେକ କ୍ଷେତ୍ରରେ ସୁନ୍ଦରଗଡ଼ ଜିଲ୍ଲାରେ ପଛୁଆ ହୋଇ ରହିଥିଲା। ପ୍ରଚୁର ବଣ୍ୟ ସଂପଦରେ ଭରା ହେମଗିରି ଯୋଗାଯୋଗ, ଶିକ୍ଷା କ୍ଷେତ୍ରରେ ଅବହେଳିତ ହୋଇ ରହିଥିଲା। ଷାଠିଏ ଦଶକର ଶେଷ ଭାଗରେ ମହୁଲି ମଦ ଭାଟିମାନ ଚଡ଼ା ଦରରେ ବାହାର ଠିକାଦାରମାନଙ୍କୁ ନିଲାମରେ ଦେଇ ପ୍ରଚୁର ରାଜସ୍ୱ ଆୟ କରୁଥିଲେ। ଭାଟିଦାରମାନେ ମହୁଲି ମଦର ଅବାଧ ବିକ୍ରୟ ପାଇଁ ଗ୍ରାମମୁଖିଆ, ଟାଉଟର, ସରକାରୀ କର୍ମଚାରୀମାନଙ୍କ ସହ ଅସାଧୁ ମେଣ୍ଟ କରି ତାଙ୍କ ବ୍ୟବସାୟ ବଢ଼ାଇ ଚାଲିଥିଲେ। ଶିକାର ହେଉଥିଲେ ସରଳ ଗ୍ରାମବାସୀମାନେ। ତାଙ୍କର ମଜୁରି ତଥା କଷ୍ଟୋପାର୍ଜିତ ଯତ୍‌କିଞ୍ଚିତ୍ ସମ୍ବଳ ଏଇ ଭାଟିଦାରମାନଙ୍କ ପାଖକୁ ଯାଉଥିଲା କେଇ ଟୋପା ମହୁଲି ମଦ ବିନିମୟରେ. ଶିକ୍ଷାର ପ୍ରସାର ଦିଗରେ ଏହା ଏକ ମୁଖ୍ୟ ପ୍ରତିବନ୍ଧକ ଥିଲା। ଦାଡ଼ି ମାଷ୍ଟ୍ରେ ଗାଁ ଗାଁ ବୁଲି ଏହି ପରିସ୍ଥିତିକୁ ଉପଲବ୍‌ଧି କରିଥିଲେ। ସେ ତା'ର ନିବାରଣ ପାଇଁ ଆରମ୍ଭ କରିଥିଲେ ଜନଜାଗରଣ। ଲୋକମାନଙ୍କୁ ମତାଇ ସେ ମଦଭାଟି ବନ୍ଦ ପାଇଁ ସ୍ୱର ଉତ୍ତୋଳନ କରି ସରକାରଙ୍କ ନିକଟରେ ଦୃଢ଼ ପ୍ରତିବାଦ କଲେ। ଗାଁ ଗାଁରେ ନିଶା ନିବାରଣ କମିଟିମାନ ଗଢ଼ି ଆନ୍ଦୋଳନକୁ ତୀବ୍ରତର କରିବାକୁ ଲାଗିଲେ। କ୍ଷୁବ୍ଧ ଭାଟିଦାରମାନେ ଏଥିରେ ଉତ୍‌କ୍ଷିପ୍ତ ହୋଇ ତାଙ୍କୁ ମିଛ ନରହତ୍ୟା କେଶ୍‌ରେ ହାଜତରେ ଭର୍ତ୍ତି କଲେ। କିନ୍ତୁ ନିଷ୍କଳଙ୍କ, ନିଷ୍ପାପ ଦାଡ଼ି ମାଷ୍ଟ୍ର ଏଥିରୁ ସସମ୍ମାନ ମୁକ୍ତ ଦେଲେ। ସତ୍ୟାଶ୍ରୟୀ, ଦୃଢ଼ମନା ମାଷ୍ଟ୍ରଙ୍କୁ ଏହି ମିଛ ମକଦମା ଭାଙ୍ଗି ଦେଇ ନଥିଲା। ଅଚିରେ ସେଥିରୁ ମୁକ୍ତି ପାଇ ସଂଗ୍ରାମୀ ପୁରୁଷ ଅଗ୍ନିରୁ ଶୁଦ୍ଧ ସୁବର୍ଣ୍ଣ ପ୍ରଭା ନେଇ ବାହାରି ଆସିଥିଲେ ସଂଗ୍ରାମକୁ। ଏ ସଂଗ୍ରାମର ଫଳ ହେଲା ଆଧୁନିକ ହେମଗିରି।

ସାଧାରଣ ଜନତାଙ୍କୁ ସେ ବୁଝିଥିଲେ। ହେମଗିରି ଅଞ୍ଚଳର କୃଷିଜୀବୀ ଜନତା ପରିଶ୍ରମୀ - ଏହା ତାଙ୍କର ଦୃଢ଼ ବିଶ୍ୱାସ ଥିଲା। ଏଣୁ ସେ ଲୁହା ଦେଖି ପାଣି ନ୍ୟାୟରେ ସେମାନଙ୍କୁ ଜମି ସତ୍ତ୍ୱ ଦେବାର ପ୍ରୟାସ କରିଥିଲେ। ସରକାରଙ୍କ

ଦ୍ୱାରା ସିଲିଂ ଆଇନ୍ ପ୍ରଚଳନ ଫଳରେ ଅନେକ ଜମିଦାରଙ୍କ ଠାରୁ ସିଲିଂ ଉଦ୍‌ବୃତ୍ତ ଜମିର ମାଲିକାନା ଏହି ଭୂମିହୀନ କୃଷି ଶ୍ରମିକମାନଙ୍କୁ ଦେବା ପାଇଁ ଦାବି ଉପସ୍ଥାପିତ କରି ସେ ସଫଳକାମ ହୋଇଥିଲେ। ମଦରୁ ମୁକ୍ତି ପାଇଲେ ତା' ପାଖରେ ଦି ପଇସା ହେବ। ପରିବାର ଭରଣ ପୋଷଣ କରିବ। ଜମି ଥିଲେ ନିଜ ପରିଶ୍ରମରେ ସେ ସୁନା ଫଳାଇବ। ତା' ସଂସାର ହସିବ। ପିଲାଏ ପୁଣି ମୁଠାଏ ଖାଇ ପାଠ ପଢ଼ିବେ। ମଣିଷ ହେବେ। ଏହି ବିଶ୍ୱାସ ଥିଲା ଦାଢ଼ି ମାଷ୍ଟ୍ରଙ୍କର।

ମଣିଷ ମଣିଷ ପରି ହେଉ। ଏଇ ଚିନ୍ତାର ନାୟକ ସେ। ତେଣୁ ନିଜସ୍ୱ ପରିଚୟରୁ ସେ ଦୂରେଇ ରହିଥିଲେ ଶେଷ ଦଶା ପର୍ଯ୍ୟନ୍ତ। ସେ ମଣିଷଟାଏ। ମଣିଷ ହୋଇ ରହିବେ। ଏଇତ ତା'ର ଶ୍ରେଷ୍ଠ ପରିଚୟ। ବଂଶଟା ବଡ଼ ନୁହେଁ। ଗାଁ ମାଟିର ଠିକଣା ତା' ପାଖରେ ଥାଇ ଲାଭ କ'ଣ ? ସଂସାରର ମଣିଷଟାଏ ସେ। ବାସ୍ ସେତକହିଁ ତା' ପରିଚୟ ଓ ସମ୍ବଳ। ଦୃଢ଼ ଆତ୍ମପ୍ରତ୍ୟୟ ଓ ଏକନିଷ୍ଠ ବ୍ରତ ଗୁଣକୁ ନିସ୍ୱାର୍ଥ ଭାବରେ ସେ ପ୍ରୟୋଗ କରୁଥିଲେ ପ୍ରତ୍ୟେକ କର୍ମକ୍ଷେତ୍ରରେ। କିଛିଟା କରିବାକୁ ହେଲେ ଛାତିକୁ ଟାଣ କରିବାକୁ ହେବ। ଜିଦ୍ ଟାଏ ନ କରିଲେ ଆତ୍ମପ୍ରତ୍ୟୟ ଆସିବ କିପରି ? ସମାଜ ବିରୋଧୀ ତତ୍ତ୍ୱଗୁଡ଼ିକୁ ଅପସାରଣ କରିବା ପାଇଁ ନିଜ ଜିଦ୍‌ରେ ଅଟଳ ହେବାକୁ ହିଁ ପଡ଼ିବ।

ଆତ୍ମପ୍ରତ୍ୟୟ ନେଇ ସେ ଜନସମର୍ଥନ ଲାଭ କରିବାରେ ସକ୍ଷମ ହେଉଥିଲେ। ସବୁକ୍ଷେତ୍ରରେ ସେ ଅନାୟାସରେ ସଫଳକାମ ହୋଇ ପାରୁଥିଲେ। କେବଳ ତା' ନୁହେଁ, ଅନେକ କ୍ଷେତ୍ରରେ ପ୍ରତିରୋଧର ସମ୍ମୁଖୀନ ମଧ୍ୟ ହୋଇଛନ୍ତି। ତାଙ୍କ ବିରୁଦ୍ଧରେ ଅନେକ ତୀବ୍ର ବିଷୋଦ୍‌ଗାର କରିଛନ୍ତି। ଉତ୍‌କ୍ଷିପ୍ତ ହୋଇଛନ୍ତି। ମାତ୍ର ତାଙ୍କ କାର୍ଯ୍ୟଧାରା ସହ ପରିଚିତ ହେବା ପରେ ସେହିମାନେ ତାଙ୍କ ହିତୈଶୀ ହୋଇ ସାହାଯ୍ୟ ଓ ସହାନୁଭୂତି ଯୋଗାଇଛନ୍ତି। ଏପରି ବିରଳ ବ୍ୟକ୍ତିତ୍ୱର ମଣିଷଟାଏ ଦାଢ଼ି ଆଜ୍ଞା।

ପାଲିସ୍ ବିହୀନ ଜୀବନ। ନିଜେ ହିଁ ନିଜର ଉଦାହରଣ। ଯେଉଁ ଅନୁଷ୍ଠାନକୁ ସେ ଗଢୁଥିଲେ ତାହା କିପରି ସ୍ୱୟଂ ସଂପୂର୍ଣ୍ଣ ହେବ ସେଇଥିରେ ସେ ଲାଗୁଥିଲେ। କାହାଠାରେ ହାତ ପତାଉନଥିଲେ। ଏଥିପାଇଁ ସ୍ୱତଃପ୍ରବୃତ୍ତ ହୋଇ ଯିଏ ଯାହା କିଛି ସାହାଯ୍ୟ କରୁଥିଲା, ଅକାତରରେ ଗ୍ରହଣ କରୁଥିଲେ। କାହାକୁ କଷ୍ଟ ଦେଉନଥିଲେ। କଲେଜରେ ପାଣିର ଅଭାବ - ବାସ୍, ଚିନ୍ତା ନାହିଁ। ଗାଁ ପୋଖରୀରେ ମାଛ ଚାଷ କରାଯାଉ, ଉନ୍ନତ ଜାଆଁଳ ଚାଷ କରି ମାଛ ବିକ୍ରୟ

ଲବ୍ଧ ଅର୍ଥ କଲେଜ ପରିଚାଳନାରେ ବ୍ୟୟିତ ହେଉ । ପରିଶ୍ରମର ମୂଲ୍ୟ ବହୁତ । ଉପାୟ ଥିଲେ ପରିଚାଳନାରେ ଅର୍ଥ ଅଭାବ ରହିବ ନାହିଁ । ସତ୍ ଉପାୟରେ ଅର୍ଜିତ ଧନ ମଧ୍ୟ ସେହିପରି ସତ୍ ଉପାୟରେ ଖର୍ଚ୍ଚ ହେବ । ସମସ୍ତଙ୍କୁ ଶୃଙ୍ଖଳିତ ହେବାକୁ ପଡ଼ିବ । ଶୃଙ୍ଖଳାବୋଧ ନଥିଲେ ସାଧନା ସଫଳ ହେବନାହିଁ । ଏହା ସେ ମର୍ମେ ମର୍ମେ ଉପଲବ୍ଧି କରିଥିଲେ । ସ୍କୁଲ୍‌ରେ, କଲେଜରେ ଏଇ ଶୃଙ୍ଖଳାବୋଧକୁ କଠୋର ଭାବରେ ପାଳନ କରିବାକୁ ସମସ୍ତଙ୍କୁ ପ୍ରବର୍ତ୍ତାଉ ଥିଲେ । ଶୃଙ୍ଖଳା ଭଙ୍ଗ ପାଇଁ ସେ ଶାସ୍ତି ବିଧାନ କରିବାକୁ ମଧ୍ୟ କୁଣ୍ଠିତ ନଥିଲେ । ପିଲାଙ୍କୁ ସ୍କୁଲ୍‌ରୁ ଏଥିପାଇଁ ତଡ଼ା ଖାଇବାକୁ ହେଲେ ବି ଚିନ୍ତା ନାହିଁ । ଅନୁଷ୍ଠାନର ମହତ୍ତ୍ୱ ଶୃଙ୍ଖଳାର ନିଗୁଢ଼ ବନ୍ଧନରେ ବିକଶିତ ହେଉ ଏହା ସେ ମର୍ମେ ମର୍ମେ ଅନୁଭବ କରିଥିଲେ ।

ଏଇ ଶୃଙ୍ଖଳିତ ମଣିଷଟି ପ୍ରଚୁର ଆତ୍ମପ୍ରତ୍ୟୟ ଓ ଦୃଢ଼ ନିଷ୍ଠାର ମନ୍ତ୍ର ନେଇ ନିଜେ ଏକା ଅନୁଷ୍ଠାନଟିଏ ପାଲଟି ଯାଇଥିଲେ । ସେ ଖୁବ୍ ନିଆରା ଥିଲେ । ଖୁବ୍ ଏକ୍‌ଲା ପଣିଆ ଥିଲା ତାଙ୍କର । ନିଜ ପ୍ରତି ଲକ୍ଷ୍ୟ ନଥିଲା । ଯାହି ତାହି ମୁଠେ ଓ ଦି'ଖଣ୍ଡ ଗାମୁଛା ହେଲେ ଯଥେଷ୍ଟ । ଶିକ୍ଷକତାର ଦରମା ଗଣ୍ଡାକ କ'ଣ କରିବେ ? ସ୍କୁଲ୍‌ର ଉନ୍ନତିରେ ଯଦି ବ୍ୟୟ ହୋଇପାରିଲା ସେଥିରେ ଆତ୍ମସନ୍ତୋଷ । ଖୁବ ଦରଦୀ ମଣିଷ ଥିଲେ ଦାଢ଼ି ମାଷ୍ଟ୍ରେ । ଗାଁର ସଭାସମିତିରେ ଯୋଗଦାନ କରିବାତ ସାଧାରଣ କଥା । ଅଭାବ ଅସୁବିଧାରେ ଅନାଥକୁ ସାହାଯ୍ୟ କରିବା, ଗରୀବି ମେଧାବୀ ପିଲାଙ୍କୁ ନିଜ ଖର୍ଚ୍ଚରେ ପାଠ ପଢ଼ାଇବାର ବ୍ୟବସ୍ଥା କରିଦେବା ମଧ୍ୟ ତାଙ୍କ ବ୍ୟକ୍ତିତ୍ୱର ଅନ୍ୟତମ ଗୁଣ ଥିଲା ।

ଶିକ୍ଷାର ଉନ୍ନତିରେ ଗାଁର ଉନ୍ନତି । ଗାଁ ଉନ୍ନତିରେ ହିଁ ପ୍ରକୃତ ଦେଶର ଉନ୍ନତି ଏହା ଥିଲା ତାଙ୍କର ମୂଳମନ୍ତ୍ର । ତା' ସାଙ୍ଗକୁ ଗାଁ ପରିବେଶର ଉନ୍ନତି ବିଧାନ ପାଇଁ ସେ ଆପ୍ରାଣ ଉଦ୍ୟମ କରୁଥିଲେ । ଗ୍ରାମ୍ୟ ଉନ୍ନୟନ, ରାସ୍ତା ନିର୍ମାଣ, ପରିମଳ ବ୍ୟବସ୍ଥା, ବୃକ୍ଷ ରୋପଣ ପ୍ରଭୃତି କାର୍ଯ୍ୟରେ ସାମୂହିକ ଶ୍ରମ ବିନିଯୋଗ ଉପରେ ସେ ଜୋର୍ ଦେଉଥିଲେ । ସ୍କୁଲ୍ କଲେଜରେ ପିଲାମାନଙ୍କ ସାଙ୍ଗରେ ଗ୍ରାମବାସୀମାନଙ୍କୁ ମଧ୍ୟ ଏଥିରେ ସାମିଲ୍ କରାଇ ସହଜ ଓ ସରଳ ଭାବରେ ସମସ୍ତ କାର୍ଯ୍ୟ ସଂପାଦନ କରୁଥିଲେ ।

ଗାନ୍ଧି, ଗୋପବନ୍ଧୁ, ବିନୋବାଙ୍କ ଆଦର୍ଶକୁ ପାଥେୟ କରି ସେ ସାଧାରଣ ମଣିଷଟାଏ ହେବାକୁ ପସନ୍ଦ କରୁଥିଲେ । ସେ ଥିଲେ ସବୁଜର, ଶୃଙ୍ଖଳାର ଓ ନୀତିର ଚିର-ବିପ୍ଳବୀ ।

## ମାନବିକତାର ସ୍ୱାଭିମାନୀ ହୃଦୟଟିଏ :

ଦୃଢ଼ ଆତ୍ମପ୍ରତ୍ୟୟ, କର୍ମନିଷ୍ଠା, ଅସୀମ ଜିଦ୍‌ଖୋରୀ, ପରାଜୟ ପରେ ପରାଜୟ ଦେଇ ଅନ୍ତିମ ଜୟର ସ୍ୱାଦ ଚଖାଇ ଆନନ୍ଦ ଖେଳାଇ ଦେଉଥିବା ସେହି ମଣିଷଟିର ପାର୍ଥିବ ଶରୀର ଭିତରେ ସ୍ୱାଭିମାନଭରା ହୃଦୟଟିଏ ଥିଲା। ହେମଗିରିର ଦରିଦ୍ର ଆଦିବାସୀ, ହରିଜନ, କୃଷକ ଓ ଶ୍ରମିକମାନଙ୍କ ଉନ୍ନତି ନିମନ୍ତେ ସେ ନିଜକୁ ଉତ୍ସର୍ଗ କରିଦେଉଥିଲେ ଜଣେ ନୀରବ ଅହିଂସା ମାର୍ଗୀ ଆନ୍ଦୋଳନକାରୀ ଭାବରେ। ଅନ୍ଧ ଜନତା, ସ୍ୱାର୍ଥବାଦୀ ରାଜନୀତିକ ନେତା ଓ ଶୋଷଣକାରୀ ଅମଲାତନ୍ତ୍ର ଅନେକବାର ତାଙ୍କ ବିରୋଧରେ ପର୍ବତକାର ହୋଇ ଦେଖା ଦେଇଛନ୍ତି। ଦାଢ଼ି ଟାଣିବାଠାରୁ ବେକରେ ଗାମୁଛା ଦେଇ ଭିଡ଼ିବା, ଅଶ୍ଳୀଳ ଶବ୍ଦବାଣରେ ଜର୍ଜ୍ଜରିତ କରିବା, ମିଥ୍ୟା, ଅପନିନ୍ଦା ଓ ଅସତ୍ୟ ପ୍ରମାଣ ଦେଇ କାଠଗଡ଼ାରେ ଛିଡ଼ା କରାଇବା ପର୍ଯ୍ୟନ୍ତ ଅନେକ ଅପସଂସ୍କୃତିର ନିର୍ଯ୍ୟାତନା ବସ୍ତୁବାଦୀ ସମାଜ ତାଙ୍କୁ ଦେଇଛି। ମାତ୍ର କେଉଁଥିରେ ସେ ଭାଙ୍ଗି ପଡ଼ିନାହାନ୍ତି। ଦୁଃଖ ଓ କ୍ଷୋଭ ପ୍ରକାଶ କରି ନାହାନ୍ତି। କିମ୍ବା ଅନ୍ଧଜନତାର ନିଷ୍ଠୁର ସ୍ୱଭାବ ନିମନ୍ତେ ଅମଙ୍ଗଳ ଚିନ୍ତା କରିନାହାନ୍ତି। ସକଳ ଅପମାନ ସତ୍ତ୍ୱେ ସେ କେବଳ ସତ ବଚନର ଉପଦେଶ ଦିଅନ୍ତି। ବିଶ୍ୱାସ, ମଣିଷ ବଦଳିଯିବ। ମଣିଷ ହିଁ ଶେଷରେ ତାଙ୍କରି ପାଖରେ ବଦଳିଯିବାର ନଜିର୍ ମୁଁ ଦେଖିଛି। ଅନ୍ୟଠାରୁ ଅପନିନ୍ଦା ପାଇବା ପରେ ମୁଁ ଗୋଟିଏ କଥା ତାଙ୍କଠାରୁ ବାରମ୍ବାର ଶୁଣିଛି - 'ଡିମିରି ଗଛରେ ଫୁଲ ଦେଖିପାର, କିନ୍ତୁ ମୋ ଆଖିରେ ଲୁହ ଦେଖିବନି।''

ଅଥଚ୍ ଏହି ମଣିଷଟିକୁ ଗରୀବର ଦୁଃଖରେ, ପ୍ରାକୃତିକ ବିପର୍ଯ୍ୟୟଗ୍ରସ୍ତ ମଣିଷର ଦୁର୍ଭାଗ୍ୟରେ, ଅନୁଷ୍ଠାନର ବିପଦ ଅବସ୍ଥାରେ, ଅନ୍ୟର ଦୁର୍ଯୋଗରେ, ଅନ୍ୟାୟ ଓ ଶୋଷଣର ଅତିମାତ୍ରିକ ନିର୍ଯ୍ୟାତିତ ଅବସ୍ଥାରେ ଘଣ୍ଟା ଘଣ୍ଟା ଧରି ଚୁପ୍ ରହି ନୀରବରେ ଧ୍ୟାନମଗ୍ନ ହେବାର ଅବସ୍ଥାରେ ମୁଁ ଅନେକବାର ଦେଖିଛି। ବିଚିତ୍ର ସେ ସ୍ୱାଭିମାନଭରା ହୃଦୟ। ବୋଧେ ଏପରି ସ୍ୱାଭିମାନ କେବଳ ସେହିମାନଙ୍କର ଥାଏ ଯେଉଁମାନେ କ୍ଷଣିକ ପାଇଁ ନୁହେଁ, ସର୍ବକାଳୀନ ମଣିଷର ସୁଖ ପାଇଁ ଚିନ୍ତା କରି ନିଜକୁ ମଣିଷର ସୁଖ ଦୁଃଖରେ ମିଶାଇ ଦେଇଥା'ନ୍ତି।

ମୋର ମନେଅଛି- ଥରେ ଗୋଟିଏ ଗୋଟିଏ ମଦୁଆ ତାଙ୍କୁ ଅସଭ୍ୟ ଗାଳିଦେଇ ମୋରି ସାମ୍ନାରେ ଚାଲିଗଲା। ମୁଁ ନୀରବ। ସେ ନୀରବ। ସେ ତଳକୁ

ମୁହଁପୋତି ଚୁପ୍‌ଚାପ୍ ଶୁଣିଗଲେ । କିଛି ସମୟ ପରେ ଯୁବକଟିଏ ଆସିଲା । ଦାଡ଼ି ଆଜ୍ଞା ତାକୁ ଦେଖିବା ମାତ୍ରେ ସ୍ୱାଭାବିକ ହସଟିଏ ହସି ଶେଯତଳୁ ପାଞ୍ଚଶତ ଟଙ୍କା କାଢ଼ି ଦେଲେ- କହିଲେ ଅଧିକ ଦୁଇଶହ ଅଛି । ବୁଆକୁ ତୋର ମେଡ଼ିକାଲ୍ ନେବୁ । ତା'ର ବୋଧେ ଉଚ୍ଚ ରକ୍ତଚାପ ହୋଇଛି । ପରେ ଜାଣିଲି- ଯୁବକଟି ସେହି ମଦ୍ୟପର ପୁଅ ଥିଲା, ଯାହାକୁ ଦାଡ଼ିମାଷ୍ଟ୍ରେ ମାସକୁ ମାସ ଅର୍ଥ ଦେଇ ଉଚ୍ଚଶିକ୍ଷା ଗ୍ରହଣ କରିବାରେ ସାହାଯ୍ୟ କରୁଛନ୍ତି । ଖୁବ୍ କଷ୍ଟରେ ପଚାରିଲି ଏ ତ ବିଚିତ୍ର, ବାପା ଗାଳି ଦେଇଗଲା- ଅଥଚ... । ମୋତେ କିଛି ଆଉ ପଚାରିବାର ସୁଯୋଗ ନ ଦେଇ କହିଲେ- "ସେଇଥିପାଇଁ ତ ଦେଉଛି- ଅତି କମ୍‌ରେ ଏ ପିଲା ବାପା ହୋଇ ତା' ପୁଅର ମାଷ୍ଟ୍ରକୁ ଏପରି ଗାଳି ନଦେଉ ।" କି ଚମତ୍କାର ସ୍ୱାଭିମାନଭରା ବିଚାର ! ଦେବତାର କି ମଣିଷର ! ଆଶ୍ଚର୍ଯ୍ୟ ହୋଇଗଲି ।

ନାରୀଶିକ୍ଷା ଓ ଜାଗରଣ ପାଇଁ ସଂପ୍ରତି ଦେଶ ତମାମ ଅନୁକଂପାର ସ୍ୱର । କିନ୍ତୁ ଏ ସ୍ୱରକୁ ପ୍ରକୃତରେ ସାକାର କରିଥିବା ସ୍ୱାଭିମାନୀ ମଣିଷ ହେଉଛନ୍ତି ଦାଡ଼ି ଆଜ୍ଞା । ଚାରିଗୋଟି ଛାତ୍ରୀ ନିବାସ ମଧ୍ୟରେ ପ୍ରାୟତଃ ତୃତୀୟ ଶ୍ରେଣୀରୁ +୩ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନରତା ଚାରି ଶହରୁ ଅଧିକ ଛାତ୍ରୀ ମାଣିକେଶ୍ୱରୀ ଶିକ୍ଷାନୁଷ୍ଠାନରେ । ଥରେ ଅସଭ୍ୟ ଯୁବକ କେତେଜଣ ବରଯାତ୍ରୀ ଆଗମନ ଛଳରେ ଛାତ୍ରୀ ନିବାସରେ ଜଣେ ଅନ୍ତେବାସିନୀ ପ୍ରତି ସାମାନ୍ୟ ଅଶ୍ଳୀଳ ଇଙ୍ଗିତ କଲେ । ତା'ପରେ ଦାଡ଼ି ଆଜ୍ଞା ଅନ୍ତେବାସିନୀମାନଙ୍କୁ ଆତ୍ମପ୍ରତ୍ୟୟ, ଆତ୍ମସୁରକ୍ଷାର ନାନାଦି ନିୟମ କାନୁନ୍ ସହିତ ପରିଚିତ କରାଇ ପୁରୁଷ ପ୍ରଧାନ ସମାଜ ସହିତ ମୁକାବିଲା କରିବାର ଶିକ୍ଷା ପ୍ରଦାନ କରନ୍ତି । ଏହାହିଁ ଗୌରବର ବିଷୟ, ସାରା ସୁନ୍ଦରଗଡ଼ ଜିଲ୍ଲାର ପ୍ରାୟତଃ ଶତକଡ଼ା ତିରିଶ ଛାତ୍ରୀ ସଂପ୍ରତି ସମାଜର ବିଭିନ୍ନ କ୍ଷେତ୍ରରେ ସ୍ୱାବଲମ୍ବନଶୀଳା ହୋଇପାରିଛନ୍ତି ଏହାରି ପଶ୍ଚାତ୍‌ରେ ଦାଡ଼ି ଆଜ୍ଞାଙ୍କ ପ୍ରାୟୋଗିକ ଶିକ୍ଷା ଓ ପରାମର୍ଶ ବୀଜମନ୍ତ୍ର ଭଳି କାର୍ଯ୍ୟ କରିଛି । ଝିଅକୁ ଝିଅଟିଏ ପରି ନୁହେଁ ଆତ୍ମବିଶ୍ୱାସଭରା ମଣିଷଟିଏ କରି ଗଢ଼ିବା ଉଚିତ୍- ଏହା ଥିଲା ଦାଡ଼ି ଆଜ୍ଞାଙ୍କ ଦୃଢ଼ ମନ୍ତବ୍ୟ । ସେଥିପାଇଁ ସେ କହୁଥିଲେ, ଝଣ୍ଡା ଉଁଚା ରହେ ହମାରା- ଏଥି ନିମନ୍ତେ ଝଣ୍ଡାର ଉଚ୍ଚତାକୁ ଧରି ରଖିଥିବା ଖମ୍ବ ଓ ଖମ୍ବର ଭିତ୍ତି ସଦୃଶ ନାରୀର ଉଚ୍ଚତା ପ୍ରତି ସମ୍ମାନ ଓ ଲକ୍ଷ୍ୟ ଦେବା ଉଚିତ୍ । ସହଶିକ୍ଷା ପରିସର ମଧ୍ୟରେ ଶୃଙ୍ଖଳା, ଆଦର୍ଶ ବ୍ୟବହାର ଓ ଛାତ୍ରୀମାନଙ୍କର ପୂର୍ଣ୍ଣାଙ୍ଗ ଉନ୍ନତି ସାଧନ ଯଦି କୌଣସି ମହାବିଦ୍ୟାଳୟ ଓ ଶିକ୍ଷାନୁଷ୍ଠାନରେ ସମ୍ଭବ ହୋଇଛି, ତାହା ହିଁ

ଦାଢ଼ି ଆଜ୍ଞାଙ୍କ ମାଣିକେଶ୍ୱରୀ ଶିକ୍ଷାନୁଷ୍ଠାନ - ଏହା ମୋର ଏକାନ୍ତ ଅନୁଭବର କଥା। ସକଳ ବସ୍ତୁର ଊର୍ଦ୍ଧ୍ୱରେ ମଣିଷ ଶ୍ରେଷ୍ଠ, ସ୍ୱାର୍ଥ ନୁହେଁ। ଏହାହିଁ ତାଙ୍କ ବ୍ୟକ୍ତିତ୍ୱର ଅନ୍ୟତମ ଦିଗ। କି ନାରୀ, କି ପୁରୁଷ - ମଣିଷକୁ ଅନାବିଳ, ଅହେତୁକ ଶ୍ରଦ୍ଧା ଓ ସମ୍ମାନ ଦେବାରେ ତାଙ୍କ ପରି ପୁଣ୍ୟଶ୍ଳୋକମାନେ ହିଁ ସମର୍ଥ ଓ ସଫଳ ହୋଇଥାନ୍ତି।

**ମୋ ପାଇଁ :**

ମୋ ପାଇଁ ଦାଢ଼ି ଆଜ୍ଞା - ଶତପଥୀ ବାବୁ। ସତପଥରେ ଶତ ବିପଦ ସତ୍ତ୍ୱେ ଆଗେଇ ଚାଲିଥିବା ମଣିଷଟିଏ। ଯେତେ ନିଷ୍ଠୁର ହେଉ ସେ ସତ୍ ହିଁ କୁହନ୍ତି। ମିଥ୍ୟାର ମୁଖା ଖୋଲି ସେ ଅନେକବାର ମନ୍ଦ ଶକ୍ତିମାନଙ୍କ ଦ୍ୱାରା ଅପମାନିତ ହୋଇଛନ୍ତି। ଦୁଃଖ ନାହିଁ - ପଚାରିଲେ କୁହନ୍ତି "ମୋର କ'ଣ ମାନ ରହିଛି ଯେ ଅପମାନ ହେଲା ?"

ବିଧାୟକ ଥିଲା ବେଳେ ମୋ' ପାଖକୁ ଆସନ୍ତି, ମିଶନ୍ତି, ସମାଜର ନାନା କଥା କୁହନ୍ତି। ଅନୁଷ୍ଠାନ ବିଷୟରେ ଜଣାନ୍ତି। କେବେ ମୋ'ଠାରୁ ସ୍ୱାର୍ଥ ହାସଲ କରିନେବାର ବିନ୍ଦୁଏ ପ୍ରୟାସ ବି କରିନାହାନ୍ତି। ମୋର ମନ୍ତ୍ରୀ ପଦ ପାଇବା ପରେ ସେ ସଂପୂର୍ଣ୍ଣ ରୂପେ ଦୂରେଇ ଗଲେ। କାହିଁକି ଆସୁନାହାନ୍ତି ? କେତେ ନୀରବ ସମୟରେ ମୁଁ ତାଙ୍କୁ ଖୋଜିଛି। ତାଙ୍କ ପାଖରେ ଘଡ଼ିଏ ବସି ଜୀବନର ମୂଲ୍ୟବୋଧ ଖୋଜିବାକୁ ବ୍ୟଗ୍ର ହୋଇଛି। ମାତ୍ର ପରେ ଜାଣିଲି, ସେ ଭିନ୍ନ ଭାବନା ଧରି ଆସୁନାହାନ୍ତି। ତାଙ୍କ ମତରେ ମାଝୀବାବୁ ଓଡ଼ିଶାର ଜନସାଧାରଣଙ୍କ ମନ୍ତ୍ରୀ। ତାଙ୍କର ସମୟ ନେବା ଅନୁଚିତ୍। ତାଙ୍କ ସମୟକୁ ଅପଚୟ କରିବା ଅର୍ଥ ସାଧାରଣ ଜନତାର କ୍ଷତି କରିବା। କି ବିଚିତ୍ର ଚିନ୍ତାଧାରା ! ଏ ଚିନ୍ତାଧାରା ପଛରେ ଥିଲା ତାଙ୍କର ସ୍ୱାଭିମାନ। ସେ ଏକ ସ୍ୱତନ୍ତ୍ର ଆଦର୍ଶ। ଏପରି ଆଦର୍ଶ ଚେତନା ଆମ ପରି ମଣିଷର ଧ୍ୟେୟ ହେଉ।

ବ୍ୟକ୍ତି ନାମରେ ସେ ଥିଲେ ଗୋଟିଏ ଅନୁଷ୍ଠାନ। ଦେଖାଇ ହେବା ଗୁଣଠାରୁ ସେ ଦୂରରେ ଥିଲେ। ଯଶ କାମନାଠାରୁ ଅନେକ ଦୂରରେ। ପ୍ରକୃତରେ ସେ ଥିଲେ ଅସାଧାରଣ। ଯଶ ତାଙ୍କର ପଶ୍ଚାତ୍‌ଧାବନ କରୁଥିଲା। ଯଶ ନୁହେଁ, ବଂଚିବାର ଅର୍ଥ କର୍ତ୍ତବ୍ୟ ସଂପାଦନ। ପୁଣି ସେହି କର୍ତ୍ତବ୍ୟ ସମାଜର ସଂସ୍କାର ଓ କଲ୍ୟାଣ ପାଇଁ। ଏହାଥିଲା ତାଙ୍କ ଦିବ୍ୟ ଆତ୍ମାର ବିଚାର। ସେଥିପାଇଁ ସେ ଆମମାନଙ୍କଠାରୁ

ଅଲଗା ବାରି ହୋଇ ପଡୁଥିଲେ। ଯଦିଓ ଆମରିମାନଙ୍କ ଭିତରେ ହିଁ ସେ ରହୁଥିଲେ। ସେ ରାକ୍ଷୀ ବାନ୍ଧିବାକୁ 'ରଙ୍ଗୀବେଓ୍ୱାକୁ' ସମୟ ଦେଉଥିଲେ। ଗଙ୍ଗା ହରିଜନ ବୁଢ଼ାର ଟାହୁଲା କଥା ଶୁଣିବାକୁ ସମୟ ଦେଉଥିଲେ, ବଂଶୀବାବାଙ୍କୁ ଧର୍ମ ଚର୍ଚ୍ଚାକାରୀର ମାନ୍ୟ ବି ଦେଉଥିଲେ। ହେଲେ, 'ମନ୍ତ୍ରୀ' ସହ ବସିବାକୁ ପଡ଼ିଲେ ଏଡ଼ିଯିବେ।

ସେହି ଅଗ୍ରପୂଜ୍ୟ ମଣିଷଟିଏ ମୋରି ଆଗରେ ଚାଲିଗଲେ। ଭାଗ୍ୟ ଓ ସମୟ ସୁଯୋଗ ଦେଲାନାହିଁ ତାଙ୍କ ଶେଷ ଚିତାଗ୍ନିର ଝାସ ଟିକିଏ ପାଇବାକୁ। ମୋ ଅଞ୍ଚଳ ନିମନ୍ତେ ଗାନ୍ଧୀ-ଗୋପବନ୍ଧୁ - ବିନୋବାଙ୍କ ମହତ୍ ଗୁଣର ମିଶ୍ରଣରେ ନିଜ ଜୀବନକୁ ସେ ସଳିତା କରି ଚାଲିଗଲେ। ଦିବ୍ୟ ଆତ୍ମା, ଅମୃତମୟ ସତ୍ତା - ଅମୃତରେ ମିଶିଗଲେ। ଆଉ "ଦାଢ଼ି ଆଜ୍ଞା!" ଡାକିଲେ 'ଓ' କହିବାକୁ ଫେରିବେନି। ମାତ୍ର ସ୍ମରଣ କଲେ ଅନ୍ତର ଭିତରେ ଜଗାଇ ଦେବେ ଶୃଙ୍ଖଳା, ଜ୍ଞାନ, ସତ୍ୟ, ସାଧୁତା ଓ ବିବେକର ଶତସିଂହର ବଳ।

(ଲେଖାଟି ଶ୍ରୀ ନୃସିଂହ ଚରଣ ସାହୁଙ୍କ ସୌଜନ୍ୟରୁ ପ୍ରାପ୍ତ)



# ରେଭେନ୍‌ସା କଲେଜ ଓ ଆଲ୍‌ତାଫ୍ ହୁସେନ୍

*ଯତୀନ୍ଦ୍ର କୁମାର ନାୟକ*

୧୯୭୧ ମସିହା ଜୁଲାଇ ମାସ । ବାଳକାଟୀ ହାଇସ୍କୁଲ୍‌ରୁ ମାଟ୍ରିକ୍ୟୁଲେସନ୍ ପାସ୍ କରି ରେଭେନ୍‌ସା କଲେଜରେ ପ୍ରିୟୁନିଭରସିଟି ବିଜ୍ଞାନ ଛାତ୍ରଭାବ ଯୋଗ ଦେଇଥାଏଁ । ନିଉ ହଷ୍ଟେଲ୍‌ରେ ଗୋଟିଏ ଚାରିକୋଣିଆ ରୁମ୍‌ରେ ରହିବାକୁ ମିଳିଥାଏ । ଛୋଟ ସ୍କୁଲ୍‌ର ପରିସରରୁ ବାହାରି ଆସି ରେଭେନ୍‌ସା କଲେଜର ପ୍ରକାଣ୍ଡ ହତା ଭିତରେ ନିଜର ପରିଚିତି ନିଶ୍ଚିହ୍ନ ହୋଇଗଲା ପରି ଲାଗୁଥାଏ । ଛୋଟ ଗାଡ଼ିଆର ବେଙ୍ଗଟିଏ ମହାସମୁଦ୍ର ଭିତରକୁ ପଶିଗଲା ପରି ସ୍ଥିତି । ଲାଲ୍ ଲାଲ୍ ବଡ଼ ବଡ଼ କୋଠା, ବିରାଟ ବିରାଟ ଲନ୍ । ଅଗଣିତ ଛାତ୍ରଛାତ୍ରୀ, କନିକା ଲାଇବ୍ରେରୀର କାଚ୍ ଆଲମାରୀରେ ଅସୁମାରୀ ବହି ଓ ଛାତର ବଡ଼ ବଡ଼ ଲମ୍ବା ଛଡ଼ରୁ ଓହଳିଥିବା ଫ୍ୟାନ୍ । ଫିଜିକ୍ସ ଓ କେମିଷ୍ଟ୍ରୀର ଅଳ୍ପାଲୋକିତ ଗ୍ୟାଲେରୀ । ବଟାନୀ ବିଭାଗର ଅଚିହ୍ନା ଅଜଣା ବିଦେଶୀ ଗଛ ଓ ପରିଛନ୍ନ ଲନ୍ । ଜୁଲୋଜି ବିଭାଗରୁ ଭାସି ଆସୁଥିବା ଦୁର୍ଗନ୍ଧ, ଗମ୍ଭୀର ଦିଶୁଥିବା ଅଧ୍ୟାପକ ଏବଂ ପରିଶେଷରେ ସହରୀ ପିଲାଙ୍କ ଆଖିର ବେଖାତିର ଭାବ - ଏଇ ଥିଲା ଗାଁ ପିଲାଟି ପାଇଁ ରେଭେନ୍‌ସା କଲେଜର ପ୍ରଥମ ଅନୁଭୂତି । କ୍ଲାସ୍‌ର ଅଭିଜ୍ଞତା ଥିଲା ମଧ୍ୟ ନିଆରା । ପୂରା ଇଂରାଜୀରେ ଦିଆଯାଉଥିବା ଲେକ୍‌ଚର ବୁଝି ହେଉଥିଲେ ମଧ୍ୟ ଲାଗୁଥିଲା ଅଦ୍ଭୁତ । ଏଇଭଳି ଏକ ପରିବେଶରେ ନିଜର ତୁଚ୍ଛତା ବିଷୟରେ ସଚେତନ ଯେତିକି ହେଉଥିଲି ଏପରି ଏକ ମହାବିଦ୍ୟାଳୟରେ ପଢୁଥିବାର ସୁଯୋଗ ପାଇଥିବାରୁ ଟିକିଏ ଟିକିଏ ଗର୍ବବି ଲାଗୁଥିଲା । ଘର ପାଖରେ ଯଦିଓ ବିବେକି କଲେଜ ଥିଲା, କିନ୍ତୁ ବଡ଼ ଭାଇ ପଢୁଥିଲେ ରେଭେନ୍‌ସା କଲେଜରେ, ଗାଁକୁ ଆସିଲେ କହୁଥିଲେ ସର୍ବେଶ୍ୱର ଦାଶ, ପ୍ରଫୁଲ୍ଲ ପତିଙ୍କ ଭଳି ବିଦ୍ୱାନ ଅଧ୍ୟାପକଙ୍କ ବିଷୟରେ । ଶତବାର୍ଷିକ ସରିଥାଏ ବର୍ଷେ ତଳେ । ସେଇ ଅବସରରେ ପ୍ରକାଶିତ ଏକ ସ୍ମରଣିକା ଭାଇଙ୍କ ଠାରୁ ଆଣି ପଢ଼ିଦେଇଥାଏ । ଏବେବି ମନେ ଅଛି ବିଚିତ୍ରାନନ୍ଦ କରଙ୍କ ଲେଖାଟିଏ :

କେଉଁଠି ପଢୁଛୁ : ରେଭେନ୍ସା କଲେଜ

କେଉଁଠି ଅଧ୍ୟାପନା କରୁଛୁ : ରେଭେନ୍ସା କଲେଜ।

ଏ ଭଳିଆ ଉତ୍ତର ଦେବା ଲୋକ ସ୍ୱରରେ ଥିଲା ଗର୍ବ, ସ୍ୱାଭିମାନ।

କଲେଜର କରିଡ଼ରରେ, କ୍ଲାସ୍‌ରୁମ୍‌ରେ ସଂକୁଚିତ ହୋଇ କିଛି ସମୟ ବିତାଇବା ପରେ ଫେରି ଆସୁଥିଲି ହଷ୍ଟେଲ୍ ରୁମ୍‌କୁ। ଆମରି ଭଳି ଗାଁରୁ ଆସିଥିବା ପିଲାମାନେ ସନ୍ତର୍ପଣରେ ନିଜର ହିନମନ୍ୟତା ଲୁଚାଇ ସାଙ୍ଗ ଖୋଜିବାକୁ ଚେଷ୍ଟା କରୁଥିଲୁ। ଉପର ଶ୍ରେଣୀର ପିଲାମାନଙ୍କ ସହ ସଂପର୍କ ସ୍ଥାପନ କରିବାକୁ ଡରି ଡରି ଚେଷ୍ଟା କରୁଥିଲୁ। ଘରଠାରୁ ଦୂରରେ ଆଉ ଗୋଟିଏ ଘରୋଇ ପରିବେଶ ସୃଷ୍ଟି କରିପାରିଲେ ଟିକିଏ ନିରାପଦ ଲାଗିବ ଏଇ ଆଶାରେ। ହେଲେ ଫଙ୍କସନ୍ ହେଲେ ବଡ଼ କ୍ଲାସ୍ ପିଲାଙ୍କ ବୋଲହାକ କରିବାକୁ ବାହାରି ପଡୁଥିଲି ଆଗଭର ହୋଇ। ଧୀରେ ଧୀରେ ଜୀବନ ଏକ ଗୁଳାରେ ପଡ଼ିଗଲା। କଲେଜରେ ସାଙ୍ଗ ହେବା ପାଇଁ ପିଲା ମିଳିଗଲେ। ହଷ୍ଟେଲ୍‌ରେ ସାଙ୍ଗ ହୋଇ ସିନେମା ଯିବା ପାଇଁ; ସଂଧ୍ୟାରେ ବୁଲିଯିବା ପାଇଁ, ଖୁସୀଗପ କରିବା ପାଇଁ ସାଙ୍ଗ ଯୁଟିଗଲେ। କଲେଜରେ ଏତେ ଭଲ ଲାଗିଲା ଯେ ବର୍ଷେ ଦୁଇ ବର୍ଷ ପରେ ଖରାଛୁଟିରେ ଘରକୁ ନଯାଇ ହଷ୍ଟେଲ୍‌ରେ ରହିବାକୁ ଇଚ୍ଛା ହେଲା। ଏମିତି ବିତିଗଲା ପ୍ରାୟ ସାତବର୍ଷ ରେଭେନ୍ସା କଲେଜରେ। ଜୀବନର ସବୁଠାରୁ ସ୍ମରଣୀୟ କେତୋଟି ବର୍ଷ। କଲେଜ ସହ ସଂପର୍କ ଏତେ ନିବିଡ଼ ହୋଇଗଲା ଯେ ପରବର୍ତ୍ତୀ ଜୀବନରେ ଯେଉଁଠି ଥରେ ବି ରେଭନ୍ସାର କାହାକୁ ଦେଖିଲେ, କାହା ସହିତ କଥାବାର୍ତ୍ତା ହେବାର ସୁଯୋଗ ମିଳିଲେ ଲାଗେ ଅତି ନିକର କାହାରି ସହ ଦେଖାହେଲା ଭଳି।

ଦୀର୍ଘ ସାତ ବର୍ଷ ଭିତରେ ବହୁ ଅଧ୍ୟାପକଙ୍କ ବକ୍ତୃତା ଶୁଣିବାର ସୁଯୋଗ ମିଳିଛି। ବହୁ ଅଧ୍ୟାପକଙ୍କ ସଂପର୍କରେ ଆସିଛି। ସେମାନଙ୍କ ଭିତରୁ ଅନେକ ଥିଲେ ନିଜ ନିଜ କ୍ଷେତ୍ରରେ ପ୍ରସିଦ୍ଧ, ଅନେକ କିଛି ଶିଖିବାର ସୁଯୋଗ ମିଳିଲା ସେମାନଙ୍କ ଠାରୁ। ଆହୁରି ଅନେକ କିଛି ଶିଖିପାରିଥାନ୍ତି କିନ୍ତୁ ପାରିନାହିଁ ବୋଲି ମନେର ଅବଶୋଷ ମଧ୍ୟ ରହିଗଲା। ମାତ୍ର, ଏତେ ଶିକ୍ଷକଙ୍କ ଭିତରୁ ଯଦି ଆଜି ସବୁଠାରୁ କିଏ ମୋ ମନରେ ନିଜର ବ୍ୟକ୍ତିତ୍ୱ, ଜ୍ଞାନ ଓ ଶିକ୍ଷାଦାନର ଅନନ୍ୟ ଶୈଳୀ ଦ୍ୱାରା ଗଭୀର ରେଖାପାତ କରିଥିଲେ ସେ ଥିଲେ ଦୁଇଜଣ : ପ୍ରଫେସର

କେ.ଏସ୍.ଆର୍. ମୂର୍ତ୍ତି ଓ ପ୍ରଫେସର ଆଲ୍‌ତାଫ୍ ହୁସେନ୍। ପ୍ରଫେସର ମୂର୍ତ୍ତିଙ୍କର ଓଜସ୍ୱିନୀ ଜ୍ଞାନୋଦୀପ୍ତ ବକ୍ତୃତା ଶୁଣି ମୁଁ ତାଙ୍କୁ ଦୂରରୁ ସମ୍ମାନ ଜଣାଉଥିଲି। ପାଖକୁ ଯିବାର ସୁଯୋଗ ମିଳିନଥିଲା ଶେଷ ପର୍ଯ୍ୟନ୍ତ। କିନ୍ତୁ ପ୍ରଫେସର ହୁସେନ୍‌ଙ୍କୁ ଅତି ନିଟକରୁ ଜାଣିବାର ସୌଭାଗ୍ୟ ମିଳିଥିଲା। ପ୍ରଫେସର ମୂର୍ତ୍ତି ସୁଟ୍ ଓ ଲାଲ୍ ଟାଇ ପିନ୍ଧି କନିକା ଲାଇବ୍ରେରୀ ଭିତରେ ବହି ଖୋଜୁଥିବାର ମୁଁ ଦୂରରୁ ଛିଡ଼ା ହୋଇ ଲକ୍ଷ୍ୟ କରେ। ଥାକେ ବହି ଧରି ଅନ୍ୟମନସ୍କ ଭାବରେ ଚାଲିଯାଉଥିବାର ଦେଖେ। ତାଙ୍କର ବକ୍ତୃତାର "କରିଡ଼ର ଅଫ୍ ପାୱାର", "ଭର୍ଟିକଲ୍ ମେନ୍" ଭଳି କଥା ପ୍ରଥମଥର ପାଇଁ ଜୀବନରେ ଶୁଣିଥିଲି। "ଅରୱେଲ୍", "ସଲଟ୍‌ନିତ୍‌ସିନ୍", "ୟେଇଟସ୍", 'ଅଡ଼େନ୍'ଙ୍କ ଆଦି ବିଷୟରେ କହି ପ୍ରିୟୁନିଭରସିଟି ବିଜ୍ଞାନ ପଢୁଥିବା ପିଲାଙ୍କ ଜ୍ଞାନ ଚେତନାର ଦିଗନ୍ତକୁ କେତେ ପ୍ରସାରିତ କରିଦେଉଥିଲେ ପ୍ରଫେସର ମୂର୍ତ୍ତି !

ପ୍ରଫେସର ହୁସେନ୍ ଥିଲେ କିନ୍ତୁ ଅଲଗା ଧରଣର ଶିକ୍ଷକ। ତାଙ୍କ ବ୍ୟକ୍ତିତ୍ୱ ଓ ଶିକ୍ଷାଦାନର ଶୈଳୀ ଥିଲା ସ୍ୱତନ୍ତ୍ର। ସେ ଟିକିଏ ଲାଜକୁଳା ପ୍ରକୃତିର ଥିଲେ ଓ ସଭାସମିତିରେ ବକ୍ତୃତା ଦେବା ପାଇଁ ବିଶେଷ ଆଗ୍ରହୀ ନଥିଲା ଭଳି ଲାଗୁଥିଲେ। କେବଳ କଲେଜ ସ୍ପୋର୍ଟ୍‌ସ ଚାଲିଥିବା ବେଳେ ତାଙ୍କୁ କମେଣ୍ଟେରୀ ଦେବା ପାଇଁ ଡକାଯାଉଥିଲା। କାରଣ ତାଙ୍କର କହିବାର ଭଙ୍ଗୀ ଓ ମଜା କଥା ସମସ୍ତଙ୍କ ପାଇଁ ଆନନ୍ଦର ଖୋରାକ ଯୋଗାଉଥିଲା। ତାଙ୍କ ଇଂରାଜୀ ଥିଲା ଖୁବ୍ ପରିଚ୍ଛନ୍ନ ଓ ସାବଲୀଳ ଓ କଣ୍ଠ ସ୍ୱରରେ ଥିଲା ଏକ ଆକର୍ଷଣୀୟ ଗାମ୍ଭୀର୍ଯ୍ୟ। ନିଜେ ନ ହସି ଅଳ୍ପ ବା ଟିକିଏ ହସି ସେ ଏମିତି କଥାଟିଏ କହି ଦେଉଥିଲେ ଯେ ଶ୍ରୋତାମାନେ ନ ହସି ରହିପାରୁନଥିଲେ। ତାଙ୍କର ପ୍ରତ୍ୟୁତ୍ପନ୍ନମତିତା ଥିଲା ଅସାଧାରଣ। ପରିସ୍ଥିତିକୁ ଦେଖି ହଠାତ୍ କିଛି ନା କିଛି ମନେ ରଖିବା ଭଳି ବା ଚମକାଇ ଦେବା ଭଳି କଥାଟିଏ କହି ସେ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଇ ପାରୁଥିଲେ। ସେ ଯେପରି ଥିଲେ ସ୍ମୃତି ଓ ଅନୁଭୂତିର ଏକ ଅସରନ୍ତି ଗନ୍ତାଘର। କଲେଜ ସ୍ପୋର୍ଟସ୍ ଚାଲିଥିଲା ବେଳେ ଥରେ ସେ କଲେଜ ପ୍ରିନ୍‌ସିପାଲ୍ ଡକ୍ଟର ମହେନ୍ଦ୍ର କିଶୋର ରାଉତ୍‌ଙ୍କୁ ଛାତ୍ର ଜୀବନରେ 'ମକୁରା' ଡକାଯାଉଥିଲା ବୋଲି କଥା ଛଳରେ କହି ଦେଇଥିଲେ। ତା'ପରେ ବର୍ଷ ବର୍ଷ ଧରି ଡକ୍ଟର ରାଉତ୍, 'ମକୁରା' ନାମରେ କଲେଜରେ ପରିଚିତ ହୋଇଗଲେ।

କଲେଜର ପ୍ରଥମ ଦୁଇ ବର୍ଷ ମୁଁ ଥିଲି ବିଜ୍ଞାନର ଛାତ୍ର। କଳା ବିଭାଗର ଶିକ୍ଷକମାନଙ୍କ ବିଷୟରେ ବିଶେଷ କିଛି ଜାଣି ନଥିଲି। କେବଳ ଇଂରାଜୀ ବାଧ୍ୟତାମୂଳକ ହୋଇଥିବାରୁ ଇଂରାଜୀ ଅଧ୍ୟାପକମାନଙ୍କ କ୍ଲାସ୍‌କୁ ଯାଉଥିଲି। କିନ୍ତୁ ହଷ୍ଟେଲ୍‌ରେ ମୋର ଯେଉଁ ବନ୍ଧୁମାନେ କଳା ବିଭାଗରେ ଛାତ୍ରଥିଲେ ସେମାନଙ୍କ ଠାରୁ ଶୁଣିବାକୁ ପାଉଥିଲି ପ୍ରଫେସର ହୁସେନଙ୍କର ଭୂରି ଭୂରି ପ୍ରଶଂସା, ଲାଗୁଥିଲା ସେ ଯେପରି ଶିକ୍ଷକ ନଥିଲେ, ଥିଲେ ଶବ୍ଦର ଯାଦୁକର। ଛାତ୍ରମାନଙ୍କୁ ବିସ୍ମୟାଭୂତ କରି ଘଣ୍ଟା ଘଣ୍ଟା ଶ୍ରେଣୀ ଗୃହରେ ବସାଇ ରଖିପାରିବାର ଅଦ୍ଭୁତ ଶକ୍ତି ସଂପନ୍ନ ଜଣେ କଳାକାର। ତାଙ୍କ ବକ୍ତୃତା ଶୁଣିବା ପାଇଁ ଶ୍ରେଣୀ ଗୃହରେ କେବଳ ଇତିହାସ ବିଭାଗର ଛାତ୍ର ବସୁନଥିଲେ। ସେଠାରେ ବିଜ୍ଞାନ, ବାଣିଜ୍ୟ ବିଭାଗର ଛାତ୍ରମାନଙ୍କର ମଧ୍ୟ ଭିଡ଼ ଜମୁଥିଲା ବୋଲି ଶୁଣିଥିଲି। ତାଙ୍କୁ ମୋ ବଂଧୁମାନେ ମୋତେ ଦୂରରୁ ଦେଖାଇ ଦେଉଥିଲେ। ତାଙ୍କର ଚେହେରାରେ ଅସାଧାରଣ ବ୍ୟକ୍ତିତ୍ୱର ଚିହ୍ନ ବାରି ହୋଇପଡୁଥିଲା। ଆକାଶୀ ନୀଳ ରଂଗର ହାଫ୍‌ସାର୍ଟ ପିନ୍ଧି ଜଣେ ଅତି ସାଧାରଣ ଲୋକ ଭଳି ସେ ସାଇକେଲ୍‌ରେ ଯିବା ଆସିବା କରୁଥିଲେ। କିନ୍ତୁ, ତାଙ୍କୁ ଦେଖିବା ମାତ୍ରେ ଛାତ୍ର ଓ ଯୁବ ଅଧ୍ୟାପକମାନେ ସ୍ୱତଃସ୍ଫୁର୍ତ୍ତ ଭାବରେ ତାଙ୍କୁ ଯେଉଁ ସମ୍ମାନ ପ୍ରଦର୍ଶନ କରୁଥିଲେ ସେଥିରୁ ତାଙ୍କ ବ୍ୟକ୍ତିତ୍ୱର ସ୍ୱାତନ୍ତ୍ୟ ବିଷୟରେ ଧାରଣା କରିହେଉଥିଲା। ବେଳେବେଳେ ସେ ହଷ୍ଟେଲ୍‌ର କେତେକ ପ୍ରତିଯୋଗିତାର ବିଚାରକ ଭାବରେ ଆସୁଥିଲେ। ଖୁବ୍ କମ୍ କଥା କହୁଥିଲେ, ଅଳ୍ପ ହସୁଥିଲେ ଓ ପଦେ କହି ସମସ୍ତଙ୍କୁ ହସାଇ ଦେଉଥିଲେ।

ପ୍ରଫେସର ହୁସେନଙ୍କ କ୍ଲାସ୍‌ରେ ବସିବାର ସୁଯୋଗ ମିଳିଲା ବି.ଏ. ପ୍ରଥମ ବର୍ଷରୁ। କ୍ଲାସ୍‌ରେ ପିଲା ଭର୍ତ୍ତି। ସେ ପଶିଲା ମାତ୍ରକେ ସବୁ କୋଳାହଳ ବନ୍ଦ, ସମସ୍ତେ ସଂପୂର୍ଣ୍ଣ ନୀରବ ଓ ଉତ୍‌କର୍ଣ୍ଣ। ସେ କିନ୍ତୁ ଜଣାପଡୁଥିଲେ ଅନ୍ୟମନସ୍କ, ପଢ଼ାଇବା ଆରମ୍ଭ କଲାବେଳେ କ'ଣ ଭାବି ଭାବି କହୁଥାନ୍ତି। ଅଳ୍ପ କିଛି ସମୟ ପରେ ସେ ପୁରା ବଦଳିଗଲେ। ଫରାସୀ ବିପ୍ଲବ ବିଷୟରେ କହୁ କହୁ ପ୍ରସିଦ୍ଧ ଆବେସିଏ (Abbesieyes) ଲେଖିଥିବା ସମ୍ବିଧାନର ବିଭିନ୍ନ ଚିଠା ବିଷୟରେ କହିଲେ ଯେ ଆବେସିଏ ତାଙ୍କ କୋଟ୍‌ର ବିଭିନ୍ନ ପକେଟ୍‌ରେ ଗୋଟିଏ ଗୋଟିଏ ଚିଠା ରଖିଥାନ୍ତି। ଦରକାର ପଡ଼ିଲା ମାତ୍ରକେ କୁଆଡ଼େ ଗୋଟିଏ ପକେଟ୍ ଖୋଜି

ଗୋଟିଏ ଚିଠା କାଢ଼ି ଦେଉଥାନ୍ତି । ଏଇ କଥା କହୁ କହୁ ପ୍ରଫେସର ହୁସେନ୍ ନିଜେ ଆବେସିଏଙ୍କ ଭୂମିକାରେ ଅବତୀର୍ଣ୍ଣ ହୋଇ ନିଜର ପକେଟ୍ ଅଣ୍ଡାଳୁଥାନ୍ତି । ସରଳ ପରିଚ୍ଛନ୍ନ ଇଂରାଜୀରେ ବୁଝାଇ ଚାଲିଥାନ୍ତି ଫରାସୀ ବିପ୍ଳବର ବିଭିନ୍ନ ଦିଗ, ବିଭିନ୍ନ ଘଟଣା । ଭିନ୍ନ ଭିନ୍ନ ବ୍ୟକ୍ତିତ୍ୱ । ଦୀର୍ଘ ତେତିଶ ବର୍ଷ ପରେ ସେ ବକ୍ତୃତା ମୋର ଏବେ ବି ମନେ ଅଛି । ଜଣେ ପ୍ରତିଭାବାନ୍ ଶିକ୍ଷକ ଛାତ୍ର ମନରେ କିପରି ଛାପ ପକାଇ ପାରନ୍ତି ସେଇଠି ମୋର ଗୋଟିଏ ସମ୍ୟକ୍ ଧାରଣା ହେଲା । ଜୀବନରେ ବହୁ ଲୋକଙ୍କର ପ୍ରଭୁତ୍ୱ, ପ୍ରତିପତ୍ତି, ଐଶ୍ୱର୍ଯ୍ୟ, ସାଂସାରିକ ସାଫଲ୍ୟ ମନରେ ବେଳେବେଳେ ନିଶ୍ଚୟ ରେଖାପାତ କରେ । କିନ୍ତୁ ସମୟ ସେ ରେଖାକୁ ଲିଭାଇ ଦେଇଛି ବା ଅସ୍ପଷ୍ଟ କରିଦେଇଛି । ମାତ୍ର ପ୍ରଫେସର୍ ହୁସେନ୍‌ଙ୍କ ଭଳି ଶିକ୍ଷକ ମନରେ ଯେଉଁ ଛାପ ଛାଡ଼ି ଦେଇଛନ୍ତି ସମୟର ସୁଅ ତାକୁ ଆହୁରି ସ୍ପଷ୍ଟ କରିଦେଇଛି ।

ପ୍ରଫେସର ହୁସେନ୍‌ଙ୍କୁ ନିକଟରୁ ଜାଣିବାର ସୁଯୋଗ ଆସିଲା ଏହାର ଦୁଇବର୍ଷ ପରେ । ଇଂରାଜୀରେ ଏମ୍.ଏ. ପଢୁଥିବା ସମୟରେ କଲେଜରେ ବିଭିନ୍ନ ଫଙ୍କ୍‌ସନ୍‌ରେ କିଛି ସମୟ ଏକାଠି ହେବାର ସୁଯୋଗ ମିଳେ । ସେ ଥିଲେ ଛାତ୍ର ସଂସଦର ଉପଦେଷ୍ଟା । ବେଳେବେଳେ କାହା କାହା ବିଷୟରେ ସାର୍‌ଙ୍କୁ ପଚାରୁ । ଥରେ ଜଣେ ବହୁ ପରିଚିତ ଅନର୍ଗଳ ଭାଷଣ ଦେଇ ପାରୁଥିବା ବ୍ୟକ୍ତିଙ୍କ ବିଷୟରେ ତାଙ୍କ ମତାମତ ପଚାରିଲୁ । "Mediocrity mixed with drama" ସାର୍ କହିଲେ । ଆଉ ଦିନେ ଆଲିଗଡ଼ ବିଶ୍ୱବିଦ୍ୟାଳୟରେ ତାଙ୍କୁ ପଢ଼ାଉଥିବା ବିଖ୍ୟାତ ଶିକ୍ଷକମାନଙ୍କ ବିଷୟରେ କହୁଥିଲେ । ଫରାସୀ ବିପ୍ଳବ ଉପରେ ଲେଖିଥିବା ଗୋଟିଏ ରଚନା ଉପରେ ବିଖ୍ୟାତ ଐତିହାସିକ ପ୍ରଫେସର୍ ମହମ୍ମଦ ହବିବ୍ କୁଆଡ଼େ ଲେଖିଥିଲେ "It provokes thought. Thought provoking" ଶବ୍ଦକୁ ଆମେ ଶୁଆ ଭଳି ଘୋଷି ଚାଲିଥିଲୁ ଓ ବ୍ୟବହାର କରୁଥିଲୁ । provokes thought ବ୍ୟବହାର କରାଯାଇ ପାରେ ଜାଣିଲୁ ପ୍ରଥମେ । ପଦେ ପଦେ କଥାରେ ଆମର ଭାଷା ଓ ଚିନ୍ତାକୁ ମାର୍ଜିତ କରିଦେଉଥିଲେ ପ୍ରଫେସର ହୁସେନ୍ । ୧୯୭୬ରେ ଇମର୍ଜେନ୍‌ସି ପାଇଁ ଛାତ୍ର ପ୍ରତ୍ୟକ୍ଷ ନିର୍ବାଚନ ବଦଳରେ ପରୋକ୍ଷ ନିର୍ବାଚନ କରିବାର ସୁଯୋଗ ନିଆଗଲା । କଲେଜର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିବା କିଛି ଛାତ୍ରଙ୍କୁ ନେଇ ଇଲେକ୍ଟୋରାଲ୍ କଲେଜ ଗଢ଼ାହେଲା ଓ ସେହି କଲେଜ କର୍ମକର୍ତ୍ତାମାନଙ୍କୁ ନିର୍ବାଚିତ କଲା । ପ୍ରଫେସର

ହୁସେନ୍‌ଙ୍କୁ କଣେ କିଏ ପ୍ରଶ୍ନ କରିବାରୁ, କହିଲେ Aristocracy of talent, ପ୍ରଫେସର ହୁସେନ୍ ।

କେବଳ ବହିର ଇତିହାସ ପଢ଼ାଉ ନଥିଲେ ସାର୍ । କଲେଜର ଇତିହାସକୁ ଆମ ପାଇଁ ଜୀବନ୍ତ କରି ଦେଉଥିଲେ । ଥରେ ପ୍ରଫେସର ଭି.ଭି. ଜନ୍ କୁଆଡ଼େ ସାଇକେଲ୍‌ରେ ଆସୁଥିଲେ । କିଏ ଜଣେ କହିଲା- Prof. John, why don't you come in a car. You will look more dignified. ପ୍ରଫେସର ଜନ୍ କହିଲେ - It I want to look more dignified, I'd walk. ଏମିତି କେତେକଥା ଶୁଣୁଥିଲୁ ସାର୍‌ଙ୍କ ଠାରୁ । ନିଜେ ଯେଉଁ ଅନୁଷ୍ଠାନରେ ଛାତ୍ର ପଢ଼େ, ତା' ଇତିହାସ ନ ଜାଣିଲେ ସେ ଅନୁଷ୍ଠାନ ସହ ଏକ ଅନ୍ତରଙ୍ଗ ଦୀର୍ଘମିଆଦି ସଂପର୍କ ସୃଷ୍ଟି ହୋଇପାରେ ନାହିଁ । ଇତିହାସ ଆମକୁ ଆତ୍ମଆନ୍ତରିକତାରୁ ମୁକ୍ତି ଦିଏ । ଏହି ପାଠ ଆମେ ଶିଖିଥିଲୁ ସାର୍‌ଙ୍କ ଠାରୁ । ସେଇ ଇତିହାସରେ ନିଜର ଗୋଟିଏ ସ୍ଥାନ ସୃଷ୍ଟି କରିବାର ଇଚ୍ଛା ଜାଗ୍ରତ ହୋଇଥିଲା ସେତିକିବେଳେ । ଯେଉଁ ଅନୁଷ୍ଠାନ ତା'ର ଅତୀତ ସଂପର୍କରେ ସଚେତନ ନୁହେଁ ତା' ସହ କୌଣସି ନିବିଡ଼ ସଂପର୍କ ସ୍ଥାପନ କରି ହୁଏ ନାହିଁ । ଏ ଅନୁଭବ ଜୀବନରେ ପରେ ଆସିଲା ।

କଲେଜ ଛାଡ଼ିବା ପରେ ବି ସାର୍‌ଙ୍କ ପାଖକୁ ଯିବା ବନ୍ଦ ହୋଇ ନଥିଲା । ଥରେ ମୋର ଜଣେ ବନ୍ଧୁ ଓ ସାର୍‌ଙ୍କ ପ୍ରିୟ ଛାତ୍ର ସୁଧାଂଶୁ ମହାନ୍ତିଙ୍କ ସହ ସାର୍‌ଙ୍କ ଘରକୁ ଯାଇଥିଲି । ସାର୍ ନିଜ ହାତରେ ବିରିଆନି ଓ ଖଟାମିଠା ବାଇଗଣ ରାନ୍ଧି ଖୁଆଇ ଥିଲେ । ନିଜ ବ୍ୟକ୍ତିଗତ ଜୀବନର ଦୁଃଖ ଓ ବିଫଳତା ବିଷୟରେ ପଦେ ନ କହି ତାଙ୍କ ସ୍ୱଭାବ ସୁଲଭ ଭଂଗୀରେ ବିଭିନ୍ନ ବିଷୟରେ ଆଲୋଚନା କରି ଆମକୁ ଦୁଇ ଘଣ୍ଟା ପରେ ବିଦାୟ ଦେଇଥିଲେ । ତା'ର ଦୁଇବର୍ଷ ପରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗ ଦେବାପରେ ୧୯୯୬ ମସିହାରେ ଜାଣିବାକୁ ପାଇଲି ସାର୍ ରେଭେନ୍‌ସା କଲେଜର ଇତିହାସ ବିଭାଗକୁ କେ.ସି. ପାଣିଗ୍ରାହୀ ସ୍ମାରକୀ ବ୍ୟାଖ୍ୟାନ ପାଇଁ ଅନୁଷ୍ଠିତ ସଭାରେ ସଭାପତିତ୍ୱ କରିବା ପାଇଁ ଆସିବେ । ଗୋଟିଏ ରବିବାର । ଏକ ଅଦମନୀୟ ଆକର୍ଷଣ ଟାଣିନେଲା ରେଭେନ୍‌ସା କଲେଜକୁ । ସାର୍ ଚୁପ୍‌ଚାପ୍ ବସିଥାନ୍ତି ସଭାମଞ୍ଚ ଉପରେ । ବୟସର ଛାପ ସ୍ପଷ୍ଟ ବାରି ହୋଇ ପଡୁଥାଏ ତାଙ୍କ ଚେହେରାରୁ । ଦିଶୁଥାନ୍ତି କ୍ଳାନ୍ତ, କିନ୍ତୁ କହିବାକୁ ଆରମ୍ଭ କଲାବେଳେ ସମସ୍ତଙ୍କ ଆଖି ତାଙ୍କ ଉପରେ । ସତେ ଯେପରି ସଭାରେ ଉପସ୍ଥିତ

ଯମସ୍ତ ବ୍ୟକ୍ତି ପୁଣି ପାଲଟି ଯାଉଛନ୍ତି ଦ୍ୱିତୀୟ ବର୍ଷ କଳା ବିଭାଗର ଛାତ୍ରଛାତ୍ରୀ। ଯାର୍ ଆରମ୍ଭ କଲେ ତାଙ୍କ ଶିକ୍ଷକ ଜୀବନର ଏକ ଘଟଣା, ସାଧାରଣ ଜ୍ଞାନ କ୍ଲାସ୍ ହେଉଥିଲା ଦିନ ତିନିଟା ପରେ। ବିଜ୍ଞାନର ଛାତ୍ରଛାତ୍ରୀ ସେତେବେଳେ ପଢ଼ିବାକୁ ନାରାଜ। ପାଟିତୁଣ୍ଡରେ କ୍ଲାସ୍ ଉଠୁଛି ପଡୁଛି। ସାର୍ କହିଲେ ମୁଁ ପାଞ୍ଚ ମିନିଟ୍ ନେବି ଯଦି ମୋ କଥା ଭଲ ଲାଗିବ ନାହିଁ ତେବେ ତୁମେ ଚାଲିଯିବ। ଆରମ୍ଭ କଲେ, ସକ୍ରେଟିସ୍ ତାଙ୍କ ଶିଷ୍ୟଙ୍କ ଗହଣରେ ବସିଛନ୍ତି। ତାଙ୍କ ପତ୍ନୀ ବହୁତ ଗାଳି ଦେଲେ। ସକ୍ରେଟିସ୍ କିଛି ନ କହି ଚୁପ୍ ରହିଲେ। ତାଙ୍କ ପତ୍ନୀ ବାଲ୍‌ଟିଏ ପାଣି ତାଙ୍କ (ସକ୍ରେଟିସ୍) ମୁଣ୍ଡ ଉପରେ ଢ଼ାଳି ଦେଲେ। ସକ୍ରେଟିସ୍ କହିଲେ - After thunder comes the rain.... ସବୁପିଲା ଚୁପ୍ ହୋଇ ବସିଗଲେ। କ୍ଲାସ୍ ଚାଲିଲା। ଗୋଟିଏ ବିଷୟକୁ ସରଳ କରି କିପରି ପଢ଼ାଯାଇ ପାରେ ସାର୍ ନମ୍ର ଭାବରେ ତା'ର ଗୋଟିଏ ନମୁନା ଦେଲେ।

ଯା'ପରେ ମୋର ସାର୍‌ଙ୍କ ସହ ଆଉ ଦେଖା ହୋଇପାରିନାହିଁ। ସେ କିନ୍ତୁ ଯାହା ସହିତ ଦେଖାହୋଇଛନ୍ତି ପୁରୁଣା ଛାତ୍ରମାନଙ୍କ ବିଷୟରେ ପଚାରିଛନ୍ତି। ସେମାନଙ୍କ ଛାତ୍ର ଜୀବନରେ ଉଲ୍ଲେଖନୀୟ ଘଟଣା ବିଷୟରେ କହିଛନ୍ତି। ତାଙ୍କ ପାଇଁ ଅବସର ନେବା ସହିତ ଶିକ୍ଷକ ଜୀବନ ଶେଷ ହୋଇଯାଇ ନାହିଁ। ଦିନେ ତାଙ୍କର ଭଣଜାଠାରୁ ଶୁଣିଲି ସେ ବହୁତ ଅସୁସ୍ଥ। ସ୍ଥିର କଲି ଦେଖିବାକୁ ଯିବି। କିନ୍ତୁ ତାଙ୍କ ଭଣଜା କହିଲେ ସେ ଲୋକଙ୍କୁ ଘରକୁ ଡାକିଲେ ବିରକ୍ତ ହେଉଛନ୍ତି। ଯିବିନାହିଁ ବୋଲି ସ୍ଥିର କଲି। କିନ୍ତୁ ଦିନକ ପରେ ଖବର କାଗଜରୁ ତାଙ୍କ ଦେହାବସାନ ବିଷୟରେ ଜାଣିବାକୁ ପାଇଲି।

ଆଜି ସାର୍‌ଙ୍କ ବିଷୟରେ ଭାବିଲେ ନିଜ ପ୍ରତି ମୋ ଭଳି ତାଙ୍କର ଅଗଣିତ ଗୁଣମୁଗ୍ଧ ଛାତ୍ରମାନଙ୍କ ପ୍ରତି ରାଗ ଆସେ। ଦେଶ ବିଦେଶରେ ତାଙ୍କର ଅଜସ୍ର ଛାତ୍ର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ। ରେଭେନ୍‌ସାର ଛାତ୍ରମାନେ ଏକାଠି ହେଲେ ଆଲ୍‌ତାଫ୍ ହୁସେନ୍‌ଙ୍କ ବିଷୟରେ ନିଶ୍ଚୟ କଥା ହୁଅନ୍ତି। କାରଣ ସେ ନିଃସନ୍ଦେହରେ ତାଙ୍କ ସମୟର ଜଣେ କିମ୍ବଦନ୍ତୀ। କିନ୍ତୁ ପ୍ରଶଂସା କରିବା ଛଡ଼ା ତାଙ୍କ ପାଇଁ ଆଉ କିଛି କରା ହୋଇପାରିଥାନ୍ତା ନିଶ୍ଚୟ। ଅନ୍ତତଃ ତାଙ୍କର ଛାତ୍ରମାନେ ନିଜେ ଗୋଟିଏ festschrift ପ୍ରକାଶ କରିପାରିଥାନ୍ତେ।

ବଙ୍ଗଳାର ଅନେକ ପ୍ରଥିତଯଶା ଶିକ୍ଷକ ସାଂସାରିକ ଦୃଷ୍ଟିକୋଣରୁ ହୁଏତ

ସଫଳ ହୋଇ ନଥାଇ ପାରନ୍ତି । କିନ୍ତୁ ସେମାନଙ୍କ ଛାତ୍ରମାନଙ୍କ ଶ୍ରଦ୍ଧା ଓ ସମ୍ମାନ ସେମାନଙ୍କୁ ଏତେ ପ୍ରତିଷ୍ଠା ଆଣି ଦେଇଥାଏ ଯେ ନେତା, ପ୍ରଶାସକ ବା ସଫଳ ଶିଳ୍ପପତି ତା'ର କାଣିଚାଏଁ ସୁଦ୍ଧା ପାଇବା କଷ୍ଟ । ପ୍ରଫେସର ହୁସେନ୍‌ଙ୍କ ଭଳି ଶିକ୍ଷକ ଜୀବନରେ ହୁଏତ ଆଉ ଜଣେ ଦୁଇ ଜଣ ଦେଖିଥିବି । ମାତ୍ର ତାଙ୍କ ପରି ଆକର୍ଷଣୀୟ ବ୍ୟକ୍ତିତ୍ୱ ଖୁବ୍ କମ୍ ଲୋକଙ୍କ ପାଖରେ ଥିବ । ହଜାର ହଜାର ଛାତ୍ରଙ୍କର ଚିନ୍ତା, ଚେତନା ଓ ଚରିତ୍ର ଉପରେ ଏତେ ଗଭୀର ଛାପ ଛାଡ଼ି ଦେଇଥିବା ତାଙ୍କ ଭଳି ଶିକ୍ଷକ ଖୁବ୍ କମ୍ ଥିବେ । କିନ୍ତୁ ଦୁଃଖ ରହିଗଲା ଯେ କେବଳ ଗୁଣଗାନ କରିବା ଛଡ଼ା ଆମେ ଆଉ କିଛି କରିପାରିଲୁ ନାହିଁ । ଛାତ୍ରମାନେ ଯଦି ଆମ ଭଳି ହେବେ ପ୍ରଫେସର ହୁସେନ୍‌ଙ୍କ ଭଳି ଶିକ୍ଷକ ଆଉ ସୃଷ୍ଟି ହେବେ ନାହିଁ । ଓଡ଼ିଶାର ବୌଦ୍ଧିକ ଦାରିଦ୍ର୍ୟ ଆହୁରି ଉତ୍କଟ ହୋଇପଡ଼ିବ ।



# ଶିଖାଉଥିଲେ ବୋଲି ସେ ଥିଲେ ଶିକ୍ଷକ

**ସଂଗ୍ରାମ ଜେନା**

ମେ ମାସ। ୧୯୬୫ ମସିହା। ତାରିଖ ମୋ ମନେ ପଡୁନି। ମୁଁ କଟକ ଆସିଥାଏ। ରେଭେନ୍‌ସା କଲ୍‌ଜିଏଟ୍ ସ୍କୁଲ୍‌ରେ ଆଡ୍‌ମିସନ୍ ନେବା ଲାଗି। ସେତେବେଳେ କଟକରେ ତିନି, ଚାରୋଟି ଭଲ ସ୍କୁଲ୍ ଥାଏ। କଲ୍‌ଜିଏଟ୍ ସ୍କୁଲ୍ ବ୍ୟତୀତ ଥିଲା ପ୍ୟାରୀମୋହନ ଏକାଡ଼େମୀ, ସେକେଣ୍ଡାରୀ ବୋର୍ଡ ସ୍କୁଲ୍, ରାଣୀହାଟ ହାଇସ୍କୁଲ୍। ଧନୀ ପିଲାଙ୍କ ପାଇଁ ଥିଲା ଷ୍ଟୁଆର୍ଟ ଇଂଲିସ୍ ମିଡ଼ିୟମ୍ ସ୍କୁଲ୍। କଲ୍‌ଜିଏଟ୍ ସ୍କୁଲ୍‌ରେ ଆଡ୍‌ମିସନ୍ ନେବାକୁ ଅଧିକ ପିଲା ଆସୁଥିବାରୁ ଏଠି ଗୋଟିଏ ପ୍ରବେଶିକା ପରୀକ୍ଷା ଦେବାକୁ ପଡ଼େ। ପରୀକ୍ଷା ଫଳ ସ୍କୁଲ୍ ନୋଟିସ୍ ବୋର୍ଡରେ ବାହାରେ। ନାଁ ବାହାରି ଥିବାରୁ ସ୍କୁଲ୍‌ରେ ଆଡ୍‌ମିସନ୍ ହୋଇଗଲା। କଟକ ସହର ବାହାରୁ ଯେଉଁ ଛାତ୍ରମାନେ ଆସିଥାନ୍ତି ତାଙ୍କୁ ଅଗ୍ରାଧିକାର ଭିତ୍ତିରେ ହଷ୍ଟେଲ୍‌ରେ ଆଡ୍‌ମିସନ୍ ମିଳେ। ତା' ବି ମିଳିଲା। ସ୍କୁଲ୍‌ରେ ଆଡ୍‌ମିସନ୍ ଦାୟିତ୍ୱରେ ଥିବା ଶିକ୍ଷକ କହିଲେ ସଂଧ୍ୟାବେଳେ ହଷ୍ଟେଲ୍ ଯାଇ ସେଠି ସୁପରିଟେନ୍‌ଡେଣ୍ଟଙ୍କୁ ଦେଖାକର। ସେ ସେଠି ରୁମ୍ ଦେବେ।

ସଞ୍ଜବେଳେ ହଷ୍ଟେଲ୍‌କୁ ମୋ ଦାଦା ନେଇଗଲେ। ସେ ରହୁଥିଲେ କଟକରେ। ଆମେ ପହଞ୍ଚିଲା ବେଳକୁ ପ୍ରାର୍ଥନା ସଭା ଚାଲିଥାଏ। ଜଣେ କିଏ କହିଲେ ପ୍ରାର୍ଥନା ପରେ ସହକାରୀ ସୁପରିନ୍‌ଟେନ୍‌ଡେଣ୍ଟଙ୍କୁ ଦେଖାକର। ପ୍ରାର୍ଥନା ପରେ ହଷ୍ଟେଲ୍ ଭିତରକୁ ଯାଇ ତାଙ୍କ ଅଫିସ୍ କେଉଁଠି ପଚାରିଲୁ। ଜଣେ ପିଲା କହିଲା ଡାହାଣ ପଟେ ଶେଷ ଘର। ଅଫିସ୍‌ରେ ପହଞ୍ଚିଲୁ। କାଠ ଚେୟାରରେ ଜଣେ ଡେଙ୍ଗା ଲୋକ ବସିଥିଲେ। ତାଙ୍କ ଶରୀର କିନ୍ତୁ ଥିଲା ଦୁର୍ବଳ। ସେ ବସି ହିସାବ ଖାତା ଦେଖୁଥିଲେ। କିଛି ସମୟ ପରେ ମୁଣ୍ଡ ଟେକି ଆମକୁ ଚାହିଁଲେ। ମୁଁ ଡରି ଡରି ପ୍ରଣାମ କଲି। ଦାଦା ତାଙ୍କୁ କହିଲେ "ସାର୍, ମୁଁ ଏଇ ସ୍କୁଲ୍‌ର ଛାତ୍ର ଥିଲି। ମୋ ପୁତୁରାକୁ ଏଣୁ ଏଠି ଆଡ୍‌ମିସନ୍ କରିଛି। ହଷ୍ଟେଲ୍‌ରେ ରହିଲେ ଠିକ୍ ପାଠ ହେବ। ଏଣୁ ଆପଣଙ୍କ ପାଖରେ ଛାଡ଼ି ଦେଇ ଯାଉଛି।" ସେ ସବୁ ଶୁଣିଲେ,

ବିଶେଷ କିଛି କହିଲେ ନାହିଁ । ଆଡ୍‌ମିସନ୍ ରେଜିଷ୍ଟର ଆଣି ନାଁ ଲେଖିଲେ । ଦାଦାଙ୍କୁ ମଧ୍ୟ ଦସ୍ତଖତ କରିବାକୁ କହିଲେ । କହିଲେ "ଦରକାର ପଡ଼ିଲେ ମୁଁ ଆପଣଙ୍କୁ ଡକାଇବି ।" ପିଅନକୁ ଡାକି ଗୋଟିଏ ରୁମ୍‌କୁ ମୋତେ ନେଇଯିବାକୁ କହିଲେ । ବାକ୍ସ ଧରି ମୁଁ ତା' ସାଙ୍ଗରେ ସେ ରୁମ୍‌କୁ ଗଲି । ଆଗରୁ ପ୍ରତ୍ୟେକ ରୁମ୍‌ରେ ଦୁଇ ଜଣ ରହୁଥିଲେ । ପିଲା ବେଶି ହେବାରୁ ଏବେ ତିନି ଜଣକୁ ରହିବାକୁ ପଡୁଛି ବୋଲି ସେ ଲୋକଟି କହିଲା । ରୁମ୍‌ରେ ରହିବା ପରେ ଦାଦା ଚାଲିଗଲେ । ହଠାତ୍ ଖୁବ୍ ଏକୁଟିଆ ଲାଗିଲା । ରୁମ୍‌ରେ ଆଗରୁ ରହିଥିବା ଜଣେ ପିଲାକୁ ପଚାରିଲି ସୁପରିନ୍‌ଟେନ୍‌ଡେଣ୍ଟଙ୍କୁ କେତେବେଳେ ଦେଖା କରିବାକୁ ପଡ଼ିବ । ସେ କହିଲା "କିଛି ଦରକାର ନାହିଁ । ଏଠି ଆସିଷ୍ଟାଣ୍ଟ ସୁପରିନ୍‌ଟେନ୍‌ଡେଣ୍ଟ ସବୁକିଛି । ସେ ଖୁବ୍ କଡ଼ା ମିଜାକର ଲୋକ । ଟିକିଏ ଭୁଲ୍ ବି ବରଦାସ୍ତ କରନ୍ତି ନାହିଁ । ଏଥିପାଇଁ ତାଙ୍କ ପାଖରେ ଦୁଇ ତିନୋଟି ବେତ ଅଛି । କଥା କହନ୍ତି କମ୍ । ହସନ୍ତି ଆହୁରି କମ୍ । ତାଙ୍କ ନାଁ ସୁଧାକର ଦାଶ ।

ସୁଧାକର ସାର୍ ସ୍କୁଲ୍‌ରେ ଓଡ଼ିଆ ପଢ଼ାନ୍ତି । ବେଶୀ ସମୟ କଟାନ୍ତି ହଷ୍ଟେଲ୍‌ରେ । ଗୋଟିଏ ରୁମ୍‌ରେ ଏକା ରହନ୍ତି । ଟେବୁଲ ଉପରେ ଥାଏ ଗୋଟିଏ ଲ୍ୟାମ୍ପ ଆଉ କିଛି ବହି । ସେ ହଷ୍ଟେଲ୍‌ର ବାପା, ମା' ସବୁକିଛି । ଦିନବେଳେ କଠଉ ପିନ୍ଧି ଠକ୍‌ଠକ୍ ଚାଲନ୍ତି । ମାତ୍ର ରାତିରେ ଷ୍ଟଡ଼ି ଆୱାରରେ ଚପଲ ପିନ୍ଧି ସବୁ ରୁମ୍ ଆଗ ଦେଇ ବୁଲୁଥାନ୍ତି । ପଢ଼ା ସମୟ ସାଢ଼େ ଛ'ରୁ ନଟା । ଏହି ସମୟ ଭିତରେ ସେ କେତେବେଳେ ପିଲାଙ୍କୁ ଲକ୍ଷ୍ୟ କରନ୍ତି ଜାଣିବା କଷ୍ଟ । ନିଜେ ନ ପଢୁଥିଲେ ବା ଅନ୍ୟକୁ ପଢ଼ାଇ ନ ଦେଉଥିଲେ ଯଦି ତାଙ୍କ ନଜରକୁ ଆସିଲା ତେବେ ଅବସ୍ଥା ଖରାପ । ବେତ ମାଡ଼ ନ ହେଲେ ନିଲ୍ ଡାଉନ୍, ପ୍ରାର୍ଥନା ସଭାରେ ନହେଲେ ତାଙ୍କ ଅଫିସ୍ ଆଗରେ । ନକହିବା ପର୍ଯ୍ୟନ୍ତ ସେମିତି ରହିବାକୁ ପଡ଼େ । ଅନ୍ୟ ସମସ୍ତେ ତମକୁ ଦେଖୁଥିବେ । ସବୁଆଡ଼େ ଶୃଙ୍ଖଳା ରଖିବାକୁ ପଡ଼େ । ଖାଇବାକୁ ଡାଇନିଂ ହଲକୁ ଯିବାବେଳେ, ପ୍ରାର୍ଥନା ସଭାକୁ ଯିବାବେଳେ ପୁଣି ଶୋଇବା ବେଳେ ଲାଇଟ୍ ଲିଭିଛି କି ନାହିଁ, ମଶାରୀ ଟଙ୍ଗା ହୋଇଛି କି ନାହିଁ ଇତ୍ୟାଦି ଇତ୍ୟାଦି । ସେ ସବୁକଥା ଜାଣି ପାରନ୍ତି ବୋଲି ଆମେ ଭାବୁ, ଯେମିତି ଏଇଠି କୋଉଠି ଠିଆ ହୋଇ ବଡ଼ ବଡ଼ ଆଖିରେ ଅନେଇଛନ୍ତି । ହଷ୍ଟେଲ୍‌ରେ ରହିବାପରେ ସବୁ ଗତାନୁଗତିକ ହୋଇଗଲା । ଉଠିବା, ଖାଇବା, ପଢ଼ିବା, ପ୍ରାର୍ଥନା କରିବା, ନିଲ୍ ଡାଉନ୍ ହେବା, ଶୋଇବା ଇତ୍ୟାଦି ।

ହଷ୍ଟେଲ୍ ପରେ ପୁଣି ତାଙ୍କ ସଙ୍ଗରେ ସ୍କୁଲ୍‌ରେ ସାକ୍ଷାତ। ସେ ଆମର ଓଡ଼ିଆ କ୍ଲାସ୍ ନିଅନ୍ତି। ନବମ ଓ ଦଶମ ଶ୍ରେଣୀରେ ମୋର ମନେ ଅଛି ସେ ଆମକୁ 'ଗଳ୍ପଶ୍ରୀ' ପଢ଼ାଉଥିଲେ। ଗଳ୍ପଶ୍ରୀ ଭଳି ଏତେ ଭଲ ବଢ଼ିଆ ଗଳ୍ପ ସଂକଳନଟିଏ ମୁଁ ଆଜି ଯାଏ ଦେଖିନି। ସୁରେନ୍ଦ୍ର ମହାନ୍ତିଙ୍କ "ପିତା ଓ ପୁତ୍ର" ବା ପ୍ରାଣବନ୍ଧୁ କରଙ୍କ "ସୁଅ ମୁହଁର ପତର" ସେ ପଢ଼ାନ୍ତି, ପ୍ରତ୍ୟେକକୁ ଏକ ଅନନ୍ୟ ଢଙ୍ଗରେ। ଗୋଟିଏ ଯଦି ନାଟକୀୟ, ଅନ୍ୟଟି କରୁଣ। ମୋର ମନେଅଛି "ଆକାଶ ଦୀପ" ଗଳ୍ପ ପଢ଼ାଇଲାବେଳେ ଥରେ ତାଙ୍କ କଣ୍ଠ ରୁଦ୍ଧ ହୋଇଯାଇଥିଲା। ସ୍କୁଲ୍‌ରେ ତ ଅନେକ ଶିକ୍ଷକ ପାଠ ପଢ଼ାନ୍ତି। ମାତ୍ର ଏତେ ନିମଜ୍ଜିତ ହୋଇ ପଢ଼ାଉଥିବା ଶିକ୍ଷକ ମୁଁ ଖୁବ୍ କମ୍ ଦେଖିଛି। ତାଙ୍କର ସ୍ୱର ଥିଲା ସ୍ପଷ୍ଟ ଆଉ ବ୍ୟାଖ୍ୟା ସରଳ। କିଛି ସମୟ ପାଇଁ ତାଙ୍କର ଅଙ୍ଗଭଙ୍ଗୀ, ଉଚ୍ଚାରଣ କ୍ଲାସ୍ ରୁମ୍‌କୁ ଗୋଟିଏ ରଂଗମଂଚ କରିଦେଉଥିଲା। କୌଣସି ବିଷୟକୁ ବୁଝିବା ଓ ତାକୁ ଭଲ ପାଇବା ଦୁଇଟି ଅଲଗା ଜିନିଷ ବୋଲି ମୁଁ ଜାଣିଲି। ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତି ମୋର ଯାହାକିଛି ଅନୁରାଗ ରହିଛି ତା'ର ଆଦ୍ୟ ପ୍ରେରଣା ଥିଲେ ସୁଧାକର ସାର୍।

ସ୍କୁଲ୍‌ରେ ଥରେ ଗୋଟିଏ ଘଟଣା ଘଟିଲା। ଆମେ କିଛି ବଂଧୁ ଠିକ୍ କଲୁ ସବୁ ଇଂରାଜୀ ଶବ୍ଦକୁ ଓଡ଼ିଆରେ କହିବା। ପ୍ରଥମେ ଶ୍ରେଣୀରେ ଉପସ୍ଥାନ ପଡ଼ିବା ବେଳେ "ଇଏସ୍ ସାର୍" କହିବାକୁ ପଡୁଥିଲା। ତେଣୁ ଆମେ କେତେଜଣ ବଂଧୁ ପ୍ରଥମେ "ଉପସ୍ଥିତ ମହାଶୟ" ବୋଲି ଉତ୍ତର ଦେଲୁ। ପ୍ରଥମେ ଓଡ଼ିଆ କ୍ଲାସ୍‌ରୁ ଆରମ୍ଭ ହେଲା। ସାର୍ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ। ଆମେ କହିଲୁ ସାର୍ ଆମେ ସବୁ ପିରିୟଡ୍‌ରେ କହିବୁ ଓଡ଼ିଆରେ। ସେ କିଛି କହିଲେ ନାହିଁ। ସବୁଦିନେ ଯେମିତି ପଢ଼ାନ୍ତି ସେମିତି ପଢ଼େଇ ଚାଲିଗଲେ। ତା'ପରେ ଅନ୍ୟ ସାର୍‌ମାନଙ୍କ କ୍ଲାସ୍‌ରେ ମଧ୍ୟ ଓଡ଼ିଆରେ ଉପସ୍ଥାନ ପକାଇଲୁ। କିଛି ସାର୍ ହସିଲେ। କିଛି ସାର୍ ରାଗିଲେ। ଭାବିଲେ ଆମେ ବଦମାସି କରୁଛୁ। ଦିନେ ହେଡ୍‌ମାଷ୍ଟ୍ରେଙ୍କ କ୍ଲାସ୍ ପଡ଼ିଲା। ସେ ଥିଲେ ଜଣେ ବିଶିଷ୍ଟ ଗଣିତ ଶିକ୍ଷକ। ତାଙ୍କ ବହି ଆମ ସ୍କୁଲ୍‌ରେ ମଧ୍ୟ ଚଳୁଥିଲା। ତାଙ୍କ ନାଁ ଥିଲା ଶ୍ରୀଯୁକ୍ତ ନନ୍ଦକିଶୋର ରଥ। ସେ ଏକଥା ଦେଖି କ୍ଲାସ୍‌ରେ କିଛି କହିଲେ ନାହିଁ। ରିସେସ୍ ବେଳେ ତାଙ୍କୁ ଅଫିସରେ ଦେଖା କରିବାକୁ କହିଲେ। ପିଅନ ଆମ ଦଶ ଏଗାର ଜଣଙ୍କୁ ଡାକିନେଲା। ସେ ପଚାରିଲେ "ପାଠ ପଢ଼ିବାକୁ ଇଚ୍ଛା ଅଛିକି ନାହିଁ ? ଆମେ ଚୁପ୍ ରହିଲୁ। ଆମ ଭିତରୁ ଜଣେ କହିଲା "ସାର୍, ମାତୃଭାଷାରେ କଥା ହେବା ଭଲ।" ସେ ଆହୁରି

ରାଗିଗଲେ। କହିଲେ, ଯାହା କହିବା କଥା ଲେଖିକରି ଦିଅ।" ଆମେ ସମସ୍ତେ ଫେରି କ୍ଲାସ୍‌କୁ ଆସିଲୁ। ରିସେସ୍‌ରେ ଆମର ଜଳଖିଆ ଦିଆଯାଏ। ଡରରେ ଖାଇବାକୁ ଇଚ୍ଛା ହେଲାନି। ଆମ ଭିତରୁ ତା' ପରଦିନ ଠାରୁ କିଛି କିଛି ପିଲା ପୁଣି ଉପସ୍ଥାନ ବେଳେ ଇଂରାଜୀରେ କହିଲେ। ହେଡ୍‌ମାଷ୍ଟ୍ରେଙ୍କ ଆଗରେ ଉତ୍ତର ଦେଇଥିବା ପିଲାଟି ପ୍ରଥମେ ଇଂରାଜୀରେ କହିଲା। ଆସ୍ତେ ଆସ୍ତେ ଆମ ସଂଖ୍ୟା କମିବାକୁ ଲାଗିଲା. ମାତ୍ର ଭୟରେ ଆମେ କେହି ଲିଖିତ ଉତ୍ତର ଦେଲୁନାହିଁ। କ୍ରମେ କ୍ରମେ ଦେଖିଲୁ ସାର୍‌ମାନେ କେହି ବିରକ୍ତ ହେଉନାହାନ୍ତି। ଶେଷକୁ ଥିଲୁ ଆମେ ଦୁଇଜଣ, ମୁଁ ଓ ମୋର ଜଣେ ସାଙ୍ଗ ଚିତ୍ତରଂଜନ ବେହେରା। କିଛିଦିନ ପରେ ବିରକ୍ତ ହୋଇ ଆମେ ବି ଇଂରାଜୀରେ ଉପସ୍ଥାନ ପକାଇଲୁ। ବହୁଦିନ ପରେ ଆମେ ଶୁଣିଲୁ ସୁଧାକର ସାର୍ ଏ ଖବର ପାଇ ତା' ପରଦିନ ହେଡ୍‌ମାଷ୍ଟ୍ରଙ୍କୁ ଦେଖା କରିଥିଲେ। ସେ କହିଥିଲେ ଯେ ସେ ପିଲାମାନଙ୍କୁ ଇଂରାଜୀରେ ନ କହି ଓଡ଼ିଆରେ କହିବାକୁ କହିଥିଲେ। ଆଜିଯାଏଁ ମୁଁ ବୁଝିପାରେନା ଯେ ସେ ଆମକୁ ନା ଭାଷାକୁ ନା ଉଭୟଙ୍କୁ ଭଲ ପାଆନ୍ତି ବୋଲି ଏମିତି ମିଛଟିଏ କହିଥିଲେ। ସବୁଠୁଁ ଆଶ୍ଚର୍ଯ୍ୟ କଥା ଯେ ଏକଥା ସେ କେବେ ଆମକୁ କହିନାହାନ୍ତି। ତାଙ୍କର ଜଣେ ଅଂତରଙ୍ଗ ବଂଧୁ (ଶିକ୍ଷକ) ଏକଥା ଆମକୁ ପରେ କହିଥିଲେ।

ଆଉ ଦିନକର କଥା। ହଷ୍ଟେଲ୍ ଭିତରେ ଗୋଟିଏ ପିଜୁଳି ଗଛ ଥାଏ। ପିଲାଙ୍କ ଦୌରାତ୍ମ୍ୟରେ ଗୋଟିଏ ବି ଜସି ରହେନା। ମୋର ମନେଅଛି ପିଜୁଳି ଖାଇବାଠାରୁ ଗଛରେ ଚଢ଼ି ଛାତ ଉପରକୁ ଯିବା, ପିଜୁଳି ଖୋଜିବାରେ ବେଶୀ ଆନନ୍ଦ ମିଳୁଥିଲା। ଗଛରେ ଚଢ଼ିବା ବେଳେ ପଡ଼ିଯିବାର ଡର ଯେତିକି ନଥାଏ, ତା'ଠୁଁ ଅଧିକ ଡରଥାଏ କାଳେ ସୁଧାକର ସାର୍ ଦେଖିଦେବେ। ଥରେ ତାହାହିଁ ହେଲା। ମୋର ଜଣେ ସାଙ୍ଗ ସାର୍‌ଙ୍କୁ ଦେଖି ଗଛ ଅଧାରୁ ଖସି ତଳେ ପଡ଼ିଗଲା। ହାତ ଗୋଡ଼ରେ ମାଡ଼ ବାଜିଥାଏ। ସଂଗେ ସଂଗେ ତାକୁ ଡାକ୍ତରପାଖକୁ ନିଆଗଲା।

ସେଦିନ ସାର୍ ପ୍ରାର୍ଥନା ସଭାରେ ନଥିଲେ। ସ୍କୁଲ୍‌ରେ ମଧ୍ୟ ନଥିଲେ। ସୁସ୍ଥ ହୋଇ ଫେରିବା ପରେ ସେ କହିଲା ଯେ ସାର୍ ପ୍ରାୟ ତା' ପାଖରେ ମେଡ଼ିକାଲ୍‌ରେ ଦିନବେଳା ଓ ଅନେକ ରାତି ପର୍ଯ୍ୟନ୍ତ ରହୁଥିଲେ।

ସୁଧାକର ସାର୍‌ଙ୍କ ପରିବାରକୁ ଆମେ କେବେ ଦେଖିନୁ। ତାଙ୍କ ଘର ଭଦ୍ରକର ଇରମ୍। ରକ୍ତତୀର୍ଥ ଇରମ୍, ନିଜ ଗାଁ ପାଇଁ ସେ ବହୁତ ଗର୍ବ କରୁଥିଲେ।

ଅଗଷ୍ଟ ବିଦ୍ରୋହ ସମୟରେ ଇଂରେଜ ସରକାର ସେଠି ଗୁଳିକରି ଅନେକ ଲୋକଙ୍କୁ ମାରି ଦେଇଥିଲେ । ଏବେ ସେଠି ଗୋଟିଏ ଶହୀଦ ସ୍ମାରକୀ ହୋଇଛି । ସବୁ ମୃତ ଲୋକଙ୍କ ନାଁ ସେଥିରେ ଲେଖାଯାଇଛି । ଇରମ୍ ଉପରେ ସେ ପ୍ରବନ୍ଧ ଲେଖିଥିଲେ । ଗୋଟିଏ ନାଟକ ଲେଖିଥିବାର ମଧ୍ୟ ମୋ ମନେପଡୁଛି । ନିଜ ପିଲାମାନଙ୍କଠାରୁ ଏତେ ଦୂରରେ ରହି ଆମ ଗହଣରେ ହିଁ ତାଙ୍କ ଦିନ ବିତିଯାଉଥିଲା । ତାଙ୍କର ବି ସ୍ତ୍ରୀ, ପିଲା, ଘର , ବାପ ମା' ସବୁଥିଲେ ଏକଥା ଆମେ ଭୁଲିଯାଇଥିଲୁ । ବୋଧହୁଏ ସେ ବି କେତେକାଂଶରେ ଭୁଲିଥିଲେ । ଏଇଥିପାଇଁ ଯେ ପିଲାଙ୍କୁ ପାଠ ପଢ଼େଇବା କେବଳ ଗୋଟିଏ ବୃତ୍ତି ନୁହେଁ ସେଥିରେ କିଛି ପରିମାଣରେ ପ୍ରତିବଦ୍ଧତା, ମାନସିକ ତୃପ୍ତି ଓ ଆଦର୍ଶ ଜଡ଼ିତ ଥାଏ । ବୋଧହୁଏ ପଚାଶ ଓ ଷାଠିଏ ଦଶକ ଯାଏ ଏମିତି ଗୋଟିଏ ମାନବିକତା, ଗୋଟିଏ ମୂଲ୍ୟବୋଧ ଥିଲା ଯେଉଁଥିରେ ଜୀବିକା ଅପେକ୍ଷା ଜୀବନ ଥିଲା ଅଧିକ ସୁନ୍ଦର, ବୃତ୍ତି ଅପେକ୍ଷା ପ୍ରବୃତ୍ତି ଥିଲା ଅଧିକ ଲୋଭନୀୟ ।

ଦଶମ ଶ୍ରେଣୀର ଶେଷ ବେଳକୁ ମୁଁ ଓ ମୋର କିଛି ସାଙ୍ଗ ମିଶି ହଷ୍ଟେଲ୍‌ରେ ଗୋଟିଏ ୱାଲ୍ ମାଗାଜିନ୍ ବା ପ୍ରାଚୀର ପତ୍ରିକା ବାହାର କରିବାକୁ ସ୍ଥିର କଲୁ । ସାର୍‌ଙ୍କୁ ପଚାରିଲୁ । ସେ ପଚାରିଲେ କିଏ ସବୁ ଲେଖିବ । ଆମେ କହିଲୁ ଆମେ ସବୁ ହଷ୍ଟେଲ୍ ପିଲା ଲେଖିବୁ । ତା'ପରେ ତାଙ୍କ ପ୍ରଶ୍ନ ଥିଲା, "ତମେ ସବୁ କ'ଣ ପଢ଼ିଛ, କ'ଣ ଦେଖିଛ ଯାହା ଲେଖିବ ।" ଦୁଇଟି କଥା ସେତେବେଳେ ସେ କହିଥିଲେ ବେଶୀ ପଢ଼ି କମ୍ ଲେଖ । ପଢ଼ିବାଠୁଁ ବେଶୀ ଦେଖ । ଏହା କେତେ ଠିକ୍ ଏବେ ମୁଁ ବୁଝିପାରୁଛି । ଏଇଥିପାଇଁ ଭଲ ଲେଖକଠାରୁ ଭଲ ପାଠକଟିଏ ହେବା ଅଧିକ କଷ୍ଟ । ଏଇ ୱାଲ୍ ମାଗାଜିନ୍ କଲାବେଳେ ଅନେକ କଥା ସେ ଆମକୁ ଶିଖାଇଥିଲେ । ଲେଖା ଲେଖିବା, ସଜେଇବା, ସଂପାଦନ କରିବା ଇତ୍ୟାଦି । ୱାଲ୍ ମାଗାଜିନ୍ ପରେ ହାତଲେଖା ପତ୍ରିକା ଗୋଟିଏ ଆମେ ବାହାର କଲୁ । ସେଥିରେ ଲେଖା ଆଉ ଚିତ୍ର ଉଭୟ ରହୁଥିଲା । ବେଳେବେଳେ ସାର୍ ସେଥିରେ ଅଗ୍ରଲେଖାଟିଏ ଲେଖୁଥିଲେ । ସେବର୍ଷ ବହୁତ ବର୍ଷା ହେଲା । ନଈରେ ବଢ଼ି ଆସିଲା । କଟକ ସହର ସାରା ପାଣିରେ ଭର୍ତ୍ତି ହୋଇଗଲା । ଥରେ ସଂଧ୍ୟାବେଳେ ସାର୍ କହିଲେ "ପଟାପୋଲ ଅଞ୍ଚଳ ଦେଖିଆସ । ପାଣିରେ କେମିତି ଲୋକ ରହୁଛନ୍ତି । ପତ୍ରିକାରେ ସେ କଥା ଲେଖିବ ।" ସାହିତ୍ୟ କହିଲେ ଖାଲି କଳ୍ପନା ନୁହେଁ, ତମ ଚାରିକଡ଼େ ଯାହା ଘଟୁଛି ତା' ବି ସାହିତ୍ୟର ବିଷୟବସ୍ତୁ । ସବୁକଥା

ତମ ଦେଖିବା ଉପରେ ନିର୍ଭରକରେ।" ଏତେଦିନ ପରେ ଏବେ ମୁଁ ବୁଝୁଛି। ଜହ୍ନତ ଗୋଟିଏ, ସବୁଆଡ଼େ ଏକା ଦେଖାଯାଏ, ହେଲେ ସଚ୍ଚି ରାଉତରାୟ କାହିଁକି "ମାଟିଆ ବୁରୁଜରେ ଜହ୍ନ" ଲେଖିଥିଲେ।

ଆସ୍ତେ ଆସ୍ତେ ଆମେ ଗଛ ପରି ବଢ଼ିଚାଲିଲୁ। ଏକାଦଶ ଶ୍ରେଣୀ ପାସ୍ କରି ସ୍କୁଲ୍ ଛାଡ଼ିଲୁ। ହଷ୍ଟେଲ୍ ଛାଡ଼ିବା ଦିନ ବିଦାୟ ଉତ୍ସବ ହୋଇଥିଲା। ସାର୍ ବେଶୀ କିଛି କହିପାରିନଥିଲେ। ବାହାରକୁ ଏଡ଼େ ରୁକ୍ଷ ଓ ଦୟାହୀନ ଦେଖାଯାଉଥିବା ଲୋକଟିର ଉଦାସ ଆଖିରେ ଜମାଟ ବାନ୍ଧିଥିଲା ଲୁହ। ଜିନିଷ ପତ୍ର ନେଇ ଘରକୁ ଫେରି ଆସିଲି, ଘରେ ପହଞ୍ଚିବା ବେଳକୁ ସଞ୍ଜ ଗଡ଼ିଗଲାଣି। ମନେପଡ଼ିଲା ପ୍ରାର୍ଥନା ସଭା। ସାଙ୍ଗମାନଙ୍କ କଥା, ସାର୍‌ଙ୍କ କଥା, ତାଗିଦ୍, ଏମିତି କେତେକଣ।

ରେଭେନ୍ସା କଲ୍‌ଜିଏଟ୍ ସ୍କୁଲ୍‌ରୁ ରେଭେନ୍ସା କଲେଜ। ତଫାତ୍ ଦୁଇ କିଲୋମିଟର। ମାତ୍ର ଏଠି ଜୀବନଯାପନ ଶୈଳୀରେ ମାଇଲ୍ ମାଇଲ୍ ବ୍ୟବଧାନ। ଏଠିବି ସାର୍‌ମାନେ ଅଛନ୍ତି। ଭଲ ପଢ଼ାନ୍ତି। ଏମାନଙ୍କର ଜ୍ଞାନ ବେଶୀ, ସ୍ନେହ କମ୍। ତାରିଫ୍ ବେଶୀ, ତାଗିଦ୍ କମ୍। କ୍ରମେ କ୍ରମେ ତା' ବି ଦେହସୁହା ହୋଇଗଲା।

ଅନେକ ଦିନ ପରେ ସ୍କୁଲ୍ ଆଡ଼େ ଯାଇଥିଲି। ହଷ୍ଟେଲ୍ ଭିତରକୁ, ଗଲି। କିଛି ପିଲା ଆସି ନମସ୍କାର କଲେ। "ପଚାରିଲି ସୁଧାକର ସାର୍ ଅଛନ୍ତି ?" ସେମାନେ କହିଲେ ସାର୍ ସିନିଅର୍ ହୋଇଗଲେ। ତାଙ୍କୁ କ୍ୱାଟରସ୍ ମିଳିଗଲା। ସେ ଏବେ କ୍ୱାଟରସ୍‌ରେ ରହୁଛନ୍ତି। ପଚାରି କ୍ୱାଟରକୁ ଗଲି। ପାଦଛୁଇଁ ପ୍ରଣାମ କଲି। ସେ ଚିହ୍ନି ପାରିଲେ ନାହିଁ। ତାଙ୍କ ସ୍ୱାସ୍ଥ୍ୟ ଆହୁରି ଦୁର୍ବଳ ଦେଖାଯାଉଥିଲା। ମୁହଁରୁ ଗାମ୍ଭୀର୍ଯ୍ୟ କିନ୍ତୁ କମିନଥିଲା। ନାଁ କହିବାରୁ ବହୁତ କଷ୍ଟରେ ମନେପକେଇଲେ। ଘର ବାରଣ୍ଡାରେ ଗୋଟିଏ ହାତ ଥିବା ଚୌକିଟିଏ ପଡ଼ିଥିଲା ସେଇଠି ତାଙ୍କ ପାଖରେ ବସିଲି। ତାଙ୍କ-ଘର କଥା ପଚାରିଲି, ଯାହା ଆଜିଯାଏ ପଚାରିବାକୁ ସାହସ କରିନଥିଲି। ସାର୍‌ଙ୍କ ସାତ ଝିଅ। ସ୍ତ୍ରୀ ରୋଗୀ। ହାତରେ ରୋଷେଇ କରନ୍ତି। ସ୍କୁଲ୍‌ରୁ ଘର। ବାହାରକୁ ପ୍ରାୟ ବାହାରନ୍ତି ନାହିଁ। ଗାଁରେ ଜମିବାଡ଼ି ବି ବେଶୀ ନାହିଁ। ସାର୍ କହିଲେ, ସମସ୍ୟା ତ ସବୁବେଳେ ଥିଲା, କିନ୍ତୁ ହଷ୍ଟେଲ୍‌ରୁ ଆସିବା ପରେ ମୁଁ ଖୁବ୍ ଏକୁଟିଆ ହୋଇଯାଇଛି। ଆଉ ଅଳ୍ପ ଦିନ ରିଟାୟାର୍‌ମେଣ୍ଟ୍ ରହିଲା। ଗାଁକୁ ଚାଲିଯିବି। ଏଠି କ'ଣ ବା ଅଛି ?" ବ୍ୟକ୍ତିଗତ

କଥାରୁ ଧ୍ୟାନ ଏଡ଼ାଇବା ପାଇଁ ସାର୍‌ଙ୍କୁ ସ୍କୁଲ୍ କଥା ପଚାରିଲି । କହିଲେ ତମ ବେଳ ଆଉ ନାହିଁ । ନୂଆ ପିଲା, ନୂଆ ଶିକ୍ଷକ ସମସ୍ତଙ୍କ ହାବଭାବ ଅଲଗା । ମୁଁ କିଛି ଉତ୍ତର ଦେଲିନି । କେମିତିବା ତାଙ୍କୁ କହିଥାନ୍ତି ଯେ ତିରିଷ ବର୍ଷ ତଳର ମାନସିକତା, ଆଦର୍ଶ ନେଇ ଏବେ ବଞ୍ଚିବା କଷ୍ଟ । ନୂଆକୁ ଆଦରି ନେବାରେ ହିଁ ନିସ୍କୃତି । ନମସ୍କାର କରି ଉଠିଆସିଲି । ପିଲାଦିନେ ଗାଁରେ ବାପାଙ୍କୁ ଛାଡ଼ି ହଷ୍ଟେଲ୍‌କୁ ଆସିବା ବେଳେ ଯେମିତି ଲାଗେ, ସେଦିନ ପୁଣିଥରେ ସେମିତି ଲାଗୁଥିଲା । ଲାଗୁଥିଲା ଜ୍ଞାନର ଅଂଧାର ଭିତରେ ପିଲାଦିନର ସରଳ, ନିଷ୍ପାପ ମନ, ଅନେକ ଅନ୍ତରଙ୍ଗ ମଣିଷଙ୍କ ମୁହଁ ସବୁ ହଜିଯାଇଛି । ସୁଧାକର ସାର୍ ଥିଲେ ସେଇ ସ୍ମୃତିର ସବୁଜ ସ୍ମାରକୀ ।



# ନିର୍ଭୀକପୂଜା

ପ୍ରତିଭା ଶତପଥୀ

ଆଜିଠୁଁ ଷାଠିଏ ବର୍ଷ ତଳେ, ମଫସଲ ଗାଁରେ, ଗୋଟେ ଝିଅର ପୁଣି ପାଠପଢ଼ା ! ଅବଶ୍ୟ, ମୋ ବାପାଥିଲେ ସ୍ୱାଧୀନତା ସଂଗ୍ରାମୀ, ପରେ ହେଲେ ଡାକ୍ତର ଓ ମୁଁ ଭଲ ପଢୁଥିବାରୁ ମୋ ପାଠପଢ଼ା ଏକରକମ ନିଶ୍ଚିତ ଥିଲା । ଆମ ଗ୍ରାମ, ସତ୍ୟଭାମାପୁରରେ ବାଳିକାସ୍କୁଲ୍‌ଟିଏ (ଉତ୍କଳଗୌରବ ମଧୁସୂଦନଙ୍କ ଦ୍ୱାରା ପ୍ରତିଷ୍ଠିତ) ଥିଲା । ତେଣୁ କଟକ ସହରଠାରୁ ୧୨ ମାଇଲ ଦୂର ଗାଁଟିରେ, ଝିଅମାନେ ଅନ୍ତତଃ ନିମ୍ନ ପ୍ରାଥମିକ ସ୍କୁଲ ଯାଏଁ ପଢୁଥିଲେ । ତା'ପରେ, ଝିଅ ୧୧/ ୧୨ ବର୍ଷର ହେବା ପରେ ପୁଣି ଅନ୍ୟଗାଆଁ ସ୍କୁଲ ଯାଇ ପାଠପଢ଼ିବା ଏକ କାଠିକର କାମ ଥିଲା । ସେଇଥିପାଇଁ କେହି ଆଉ ତୃତୀୟଶ୍ରେଣୀରୁ ଆଗକୁ ବଢୁ ନ ଥିଲେ । ମୋର ସେ ବାଳିକା ସ୍କୁଲ୍, କି' ସୁନ୍ଦର ତା'ର ପରିବେଶ ! ସେପରି ନିମ୍ନପ୍ରାଥମିକ ସ୍କୁଲ୍‌ଟିଏ ଆଜିଯାଏଁ ଅନ୍ୟ କୋଉଠି ମୁଁ ଦେଖିନାହିଁ । ବିରାଟ ହତା, ସିଝୁବାଡ଼ର ପାଚେରୀ, କାଠ ଫାଟକ । ଫାଟକଠାରୁ ସ୍କଲ୍‌ର ଶ୍ରେଣୀଗୃହଯାଏ ଦୁଇ କଡ଼ରେ ଦୁଇ ଧାଡ଼ି ଟଗରଗଛ । କୋଠା ଘର, ପ୍ରଶସ୍ତ ବାରଣ୍ଡା । ସାମ୍ନାରେ ବଗିଚ଼ାକାମ ପାଇଁ ପ୍ରଶସ୍ତ ଜାଗା, ବାଁ କଡ଼ରେ କୂଅ, ପକ୍କାଚ଼ାନ୍ଦିନୀ, ବାଡ଼ିପଟ ବାଁ ହାତିକୁ ପାଇଖାନା କୋଠା । ଅବଶ୍ୟ, ତାହା ବ୍ୟବହାର ହୁଏ ନାହିଁ । ବାଡ଼ିପଟ ବାଡ଼ମୂଳେ 'ଏକ' ଓ ଅନତିଦୂରରେ ଥିଲା ନିର୍ଜନ ବାଲିବନ୍ତ ଓ ବାଲିପୋଖରୀ, ସେଇଠି 'ଦୁଇ' । ସେଇ ବାଳିକାସ୍କୁଲ୍‌ରେ ମୁଁ ଦ୍ୱିତୀୟ ଶ୍ରେଣୀରେ ନାମଲେଖାଇଲି । ତା' ପୂର୍ବରୁ ବାପାଙ୍କ ଚାକିରିସ୍ଥଳ କୋରାପୁଟରେ ବଡ଼ଭଉଣୀ, ବଡ଼ଭାଇ ଓ ମୁଁ ଟ୍ୟୁସନ୍‌ରେ ପଢୁଥିଲୁ । ସେବେ, କୋରାପୁଟ ସହରରେ ସ୍କୁଲ୍ ନଥିଲା ।

ସତ୍ୟଭାମାପୁରରେ ନାମଲେଖାଇଲା ବେଳକୁ ଜଣେ ଶିକ୍ଷୟିତ୍ରୀ ଥିଲେ । ତାଙ୍କ ନାଆଁ ଚାରୁବାଳା ଦାସୀ (ବୋଧେ ବିଧବା, ଅବ୍ରାହ୍ମଣ ସ୍ତ୍ରୀଲୋକଙ୍କ ସାଙ୍ଗା ସେତେବେଳେ ସେପରି ରହୁଥିଲା) । ସେ କଟକର ମହିଳାଟ୍ରେନିଂ ସ୍କୁଲ୍‌ରେ, ସଦ୍ୟବିବାହିତା ମୋ ବୋଉ ସହିତ ମାଇନର ଶ୍ରେଣୀରେ ପଢୁଥିଲେ । ସ୍କୁଲ୍ ପାଖ ଗନାପୁରରେ ଘରଭଡ଼ା ନେଇ ରହୁଥିଲେ । ଦିନେ ବୋଉ ତାଙ୍କୁ ଆମଘରକୁ

ଖାଇବାକୁ ଡାକିଥିଲା । କିନ୍ତୁ, ସେ ଦିଦିଙ୍କ ଠାରୁ କ'ଣ ଶିଖିଥିଲି ମନେ ନାହିଁ । ମୋର ମଧ୍ୟ ଶିଖିବାର ସଚ୍ଚେତନତା ନଥିଲା ।

ମୁଁ ଚତୁର୍ଥ ଶ୍ରେଣୀରେ ପାଖଗାଆଁ ଗୋପୀନାଥପୁର ମାଇନର ସ୍କୁଲ୍‌ରେ ପଢ଼ିଲି । ସେ ବର୍ଷ ଆମଗାଆଁରୁ ଦୁଇ ଜଣଝିଅ ସେ ସ୍କୁଲ୍‌କୁ ଗଲୁ - ଦୁଇ ବର୍ଷ ପରେ ଜଣେ ଗଲା, ଆଉ ଜଣେ ଆସିଲା । କିନ୍ତୁ ଆମ ଗାଆଁ ବହୁତ ବଡ଼ - ତେଣୁ ଅଧିକାଂଶ ଦିନ ମୋତେ ଦେଢ଼ ମାଇଲବାଟ ଏକୁଟିଆ ଯିବାକୁ ହେଉଥିଲା । ସ୍କୁଲ୍‌ଟି ତିନିଚାରି ବର୍ଷତଳେ ଆରମ୍ଭ ହୋଇଥାଏ । ଚାଳଛପର, ମାଟିଘର, ଅଧାକାନ୍ଥ ଦିଆ ଗୋଟେ ହଲ୍ ଘର । ଚତୁର୍ଥ ଶ୍ରେଣୀରେ ଶିଖିଲୁ ଇଂରାଜୀ । ଆମ ସାଇରେ କେହି ସେତେବେଳେ ଭଲପଢୁଆ ପିଲା ନ ଥିଲେ । ବଡ଼ଭାଇ ମୋ ନାନୀ ପାଖରେ ଦେବଗଡ଼ରେ ରହି ପଢୁଥିଲେ । ମୋତେ ଘରେ ସାହାଯ୍ୟ କରିବା ପାଇଁ କେହିନାହିଁ । ଅତଏବ, ମୋତେ ଇଂରାଜୀ ଆସୁ ନ ଥାଏ । ପୂଜାଛୁଟିରେ ଗଲି ମାମୁଁ ଘର । ସେଠାରେ ମତେହେଲା ପାରାଟାଇଫଏଡ୍ । ରହିଗଲି ଚାରି ମାସ କାଳ, ବୋଉ ସାଙ୍ଗରେ । ସେତକଦିନ ମୋ ଅଜା ମୋତେ ଇଂରାଜୀ ପଢ଼ାଇଲେ । ଅଜା ସେବକୁ ପ୍ରାୟ ଅନ୍ଧ । ଗୋଟିଏ ଆଖିରେ ମୋତିଆବିନ୍ଦୁ ହୋଇ, ଫୁଲାପଡ଼ି ଅନ୍ୟ ଆଖିଟି ବି ନଷ୍ଟ ହୋଇଯାଇଥିଲା । କିନ୍ତୁ ସେ ଥିଲେ ସାହସୀ, ବହୁଶାସ୍ତ୍ରଦର୍ଶୀ ଓ ସମାଜସଂସ୍କାରକ । ସେ କାଳରେ ବୋଉକୁ ବି ସେ ପାଠ ପଢ଼ାଇଥିଲେ । ସେ ମୋତେ ବନାନ ପଚାରନ୍ତି । ମୁଁ କହେ "ଜି. ଆଇ.ଆର୍.ଏଲ୍."। ସେ କହନ୍ତି "ଗର୍ଲ୍, ମାନେ ବାଳିକା । ଏମିତି ମୋ ଇଂରାଜୀ ପଢ଼ା ଚାଲିଥାଏ । ସେ ଅଞ୍ଚଳରେ ପିଲାଙ୍କ ଭିତରେ ମୋର ଇଂରାଜୀ ବୁଝିବାଦେଖି ସମସ୍ତେ ବାହାବା ଦେଲେ । ବାର୍ଷିକ ପରୀକ୍ଷାରେ ଇଂରାଜୀରେ ଫାଷ୍ଟ । ଅଜାଙ୍କର ଏହି ଶିକ୍ଷାଦାନ ମୋ ପାଇଁ କେତେ ବଡ଼କଥା ତାହା ଆଜି କହିବାର ନୁହେଁ । କିନ୍ତୁ ସେହି ସ୍କୁଲ୍‌ରେ ମୁଁ ଜଣେ ଆଦର୍ଶ ଶିକ୍ଷକଙ୍କୁ ଭେଟିଲି- ଷଷ୍ଠ ଶ୍ରେଣୀରେ । ସେ ଥିଲେ ଅବସରପ୍ରାପ୍ତ ପ୍ରଧାନଶିକ୍ଷକ ମକଦମ ଶ୍ରୀ ନୀଳମଣି ଦାଶ । ଆମର ତ ବେସରକାରୀ ସ୍କୁଲ୍, ସେ ହୋଇଥିଲେ ହେଡ୍‌ମାଷ୍ଟର । 'CHILD'S EASY FIRST GRAMMAR'ରେ ସେ ଧୂରୀଣ । ସେ ଆମର ଇଂରାଜୀ ଓ ଭୂଗୋଳ ପଢ଼ାଉଥିଲେ । ଆଉ ମୋ କ୍ଲାସ୍‌ରେ ମୁଁ ଜଣେ ମାତ୍ର ଝିଅ, ଆଉଜଣେ ପାଖ ଗାଁର ଝିଅ ପଢୁଥିଲା ଯେ, ପଞ୍ଚମଶ୍ରେଣୀରୁ ଘରେ ରହିଯାଇଥିଲା । ୧୧/୧୨ ବର୍ଷ ବେଳକୁ ଆମେ ଝିଅପିଲାଏ ଖୁବ୍ ସଂକୁଚିତ ହେଉଥାଉ । ସହପାଠୀଙ୍କ କଥା ତ ଦୂରକଥା, ଶିକ୍ଷକଙ୍କ ସହ

କଥାଭାଷା, କ୍ଲାସ୍ ବାହାରେ ପାଠ ପଚାରିବା ବି ସମ୍ଭବ ହୁଏନାହିଁ। ସେହି ସ୍କୁଲ୍‌ରେ ଜଣେ ଶିକ୍ଷକ ଥାଆନ୍ତି ଶ୍ରୀରବିନାରାୟଣ ଦାଶ। ସେ ଆମକୁ ହିନ୍ଦୀରେ ପରୀକ୍ଷାଦେବାକୁ (ରାଷ୍ଟ୍ରଭାଷା ପରୀକ୍ଷା) ଉତ୍ସାହିତ କରୁଥିଲେ ଓ ପ୍ରତ୍ୟେକ ରବିବାର ଦି'ପହରେ ସେ ସ୍କୁଲ୍‌ରେ ଆମକୁ ମାହାଳିଆରେ ପଢ଼ାଉଥିଲେ। ତାଙ୍କ ଯତ୍ନ ଫଳରେ ମୁଁ 'ପ୍ରାରମ୍ଭିକ', 'ପ୍ରବେଶ' ଓ 'ପରିଚୟ' ପାସ୍ କରିଥିଲି। ମାଇନର ସ୍କୁଲ୍‌ରେ କେବଳ 'ପ୍ରାରମ୍ଭିକ' ପରୀକ୍ଷା ଦେଇ, ପ୍ରଥମ ଶ୍ରେଣୀରେ ଗୋଲ୍‌ଡମେଡ଼ାଲ୍ ପାଇଲି - ୱାର୍ଦ୍ଧାରୁ ମେଡ଼ାଲ୍ ଓ ସାର୍ଟିଫିକେଟ ଆସିଥିଲା। ସେଥିପାଇଁ ସେ ମୋତେ ଅଧିକ ଧ୍ୟାନରେ ପଢ଼ାନ୍ତି। ମୋ ଆତ୍ମକଥା "ଶୈଶବରୁ ସଂସାର"ରେ ମୁଁ ତାଙ୍କ କଥା ଲେଖିଛି। ୧୯୭୫ରେ ନୈନିତାଲରେ ଅନୁଷ୍ଠିତ କବି ସମ୍ମିଳନୀରେ, ମୁଁ ପ୍ରଥମେ କବିତାବୃତ୍ତି କଲି ଓ ହିନ୍ଦୀ ଅନୁବାଦ ପଢ଼ିଲି। ଶ୍ରୋତା ଏଥିପାଇଁ ଖୁବ୍ ସାବାସି ଦେଲେ। ରାତିରେ ଗେଷ୍ଟ ହାଉସ୍‌ରେ ପହଞ୍ଚି, ମୁଁ ମନେମନେ ସେହି ହିନ୍ଦୀ ଶିକ୍ଷକଙ୍କୁ ପ୍ରଣାମ ଜଣାଇଥିଲି।

ସେହି ମାଇନର ସ୍କୁଲ୍‌ରେ ମୁଁ ଶିକ୍ଷକମାନଙ୍କର ଅନାଦର୍ଶ ରୂପ ବି ଦେଖିଥିଲି। ୧୧/୧୨ ବର୍ଷର ଝିଅର ଶରୀର ଯେତେ ପରିଣତ ହୋଇଥାଏ, ବୁଦ୍ଧି ଓ ବିଚାର ସେତେ ପରିଣତ ହୋଇନଥାଏ। ଏହାର ସୁଯୋଗ ନେବାର ଦୁଇଜଣ ବିବାହିତ ଶିକ୍ଷକଙ୍କୁ ମୁଁ ଦେଖିଛି। ସେମାନେ ଯୁବକ, ଛାତ୍ରୀଙ୍କ ଉପରେ ହାତ ପକାନ୍ତି - ସମ୍ମତି ଜାଣିଲେ, ଆହୁରି ଆଗାନ୍ତି। ମୋର ଗୋଟିଏ ସାଙ୍ଗ (ଅନ୍ୟକ୍ଲାସ୍‌ର) ଏହାର ଶିକାର ହୋଇଥିଲା, ଏକାଧିକ ଥିଲେ ଭୁକ୍ତଭୋଗୀ। ଆଜିପରି ମିଡ଼ିଆଗୋଳ ନଥିଲା ଓ ବାପମାଆମାନେ ପଦାରେ କହିବାକୁ ଲାଜ ଓ ଭୟ କରୁଥିଲେ। ଲମ୍ବାଛୁଟି ଭିତରେ, ମାଗଣାରେ ଛାତ୍ରଛାତ୍ରୀଙ୍କୁ ଦି'ପହରେ ଟ୍ୟୁସନକୁ ଡାକି, ଏ କାମ ଆଗୋଉଥିଲା- ମୋର ସେ ସାଙ୍ଗଟି ଜୀବନମରଣ ବିପଦଗ୍ରସ୍ତା ହୋଇଥିଲା। ମୁଁ, ମୂର୍ଖୀ, ଏହା ଜାଣିଲା ଦିନୁଁ ତା' ସହ ସଂପର୍କ କାଟି ଦେଇଥିଲି। ଯଦିଓ, ପରେ, ବହୁତପରେ, ଭୁବନେଶ୍ୱରରେ କେବେ କେମିତି ସେ ସାଙ୍ଗଟି ସହ ଦେଖାହୁଏ, ଖରାପ ଲାଗେନି, ଦି'ଜଣ ସାଧାରଣ କଥା ଗପୁ। ଯେଉଁ ଝିଅଙ୍କ କଥା କହିଲି ସେମାନଙ୍କ ବାପା ଗାଁରେ ନାମଜାଦାଲୋକ, ସଂଗତି ସଂପନ୍ନ ଘର।

ସେଠାରୁ ହାଇସ୍କୁଲ୍। ଘରଠାରୁ ପ୍ରାୟ ଦୁଇ ତିନି ମାଇଲ୍ ଦୂର, ବହୁଗ୍ରାମର ବିବେକାନନ୍ଦ ବିଦ୍ୟାପୀଠରେ ପଢ଼ିଲି। ଆଖପାଖ ଗାଁ ମାନଙ୍କରୁ ଅଳ୍ପ ସଂଖ୍ୟକ

ଝିଅ ସେଠାରେ ପଢ଼ନ୍ତି । ଶାଢ଼ିପିନ୍ଧି, ଘୋଡ଼ିଘାଡ଼ି ହୋଇ, ବହିଖାତା ସୁତୁଲିରେ ବାନ୍ଧି, ଛାତିରେ ଜାକି ମୁଁ ସ୍କୁଲ୍ ଯାଏ । ଆମ ସାଇର ମୋ ସମବୟସ୍କ ଛାତ୍ର ଜଣେ ଯାଆନ୍ତି ଯେ, କେବେ କେବେ ମୋତେ ଏକୁଟିଆ ଯିବାକୁ ହୋଇଥାଏ । ସେଠାରେ, ଜୀବନ ଗଢ଼ିବାର ପ୍ରେରଣାଦାତା କେତେକ ଶିକ୍ଷକଙ୍କୁ ପାଇଥିଲି । ସ୍କୁଲ୍‌ଟି ଗୋଟେ ଆଦର୍ଶ ସ୍କୁଲ୍ । ବେସରକାରୀ ଓ ପ୍ରାୟ ନୂଆ ସ୍କୁଲ୍ । ଆମ ସ୍କୁଲ୍‌ରେ ସିଲେଇ ଓ ସଂଗୀତ ଝିଅମାନଙ୍କୁ ଓ କାଠକାମ ଶିକ୍ଷା ପୁଅମାନଙ୍କୁ ଦିଆଯାଉଥିଲା । ପ୍ରତିବର୍ଷ ବିବେକାନନ୍ଦଙ୍କ ଜନ୍ମୋତ୍ସବ ପାଳିତ ହୁଏ ଓ ଏଯାବତ୍ ତାହା ପାଳିତ ହୋଇଚାଲିଛି । ବାର୍ଷିକୋତ୍ସବରେ ନାଚ଼, ଗୀତ, ଡ୍ରାମା ଧୂମ୍‌ଧାମ୍‌ରେ ହୁଏ । ତର୍କ ପ୍ରତିଯୋଗିତା କବିତା ପ୍ରତିଯୋଗିତା ବି ହୁଏ । ପ୍ରତିଦିନର ପ୍ରାର୍ଥନାସଭାରେ ଶିକ୍ଷକ ବିପିନ୍ ବିହାରୀ ଦାସ (ସେତେବେଳର ବେତାର ଶିଳ୍ପୀ) ହାର୍ମୋନିୟମ୍‌ରେ ପ୍ରାର୍ଥନା ଗାଆନ୍ତି । ଆମେ ଛାତ୍ରଛାତ୍ରୀମାନେ ଧାଡ଼ିବାନ୍ଧି ଠିଆ ହୋଇଥାଉ ଓ ତାଙ୍କ ପରେ ପ୍ରାର୍ଥନା ବୋଲୁ । ମୁଁ ସୁଛାତ୍ରୀ ଥିଲି । ସ୍କୁଲର ସକଳ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି କୃତିତ୍ୱ ହାସଲ କରୁଥିଲି । ଏକଥା ସତ । ହେଲେ, କେଇଜଣ ଆଦର୍ଶ ଶିକ୍ଷକଙ୍କୁ ମୁଁ ମୋର ଭାଗ୍ୟବଶରୁ ପାଇଥିଲି । ମୋତେ ଗଢ଼ିବାରେ ଓ ମୁଁ ସ୍କୁଲ୍, କଲେଜ ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇବାରେ ସେମାନଙ୍କ ଅବଦାନ ଅତୁଳନୀୟ । ମତେ ଲାଗେ, ଈଶ୍ୱରଙ୍କ ନିର୍ଦ୍ଦେଶରେ ମୁଁ ଏପରି ଶିକ୍ଷକଗଣଙ୍କୁ ପାଇଥିଲି । ବାପା, ଭାଇ ଦୂରରେ । ଘରେ ପାଠର ଯତ୍ନ ନେବାକୁ କେହି ନାହିଁ । ବୋଉ ମୋ ପାଠପଢ଼ାଠାରୁ ବିଭାଘର ପାଇଁ ବେଶି ଆଗ୍ରହୀ । ଗାଁର ଅବସ୍ଥା ଏପରି ଯେ, ୧୫/୧୬ ବର୍ଷ ବୟସ ଭିତରେ ସବୁ ଝିଅ ବାହାହୋଇ ଯାଆନ୍ତି । କେହି କେହି ଖୁବ୍ ବେଶିରେ ମାଇନର ପାସ୍ କରିଥାଆନ୍ତି ।

କିନ୍ତୁ ମୋତେ ଏପରି ଶିକ୍ଷକ ମିଳିଲେ, ମୋ କବିତା ଲେଖା, ପାଠପଢ଼ା, ନାଚ଼ଗୀତ, ସବୁଥିପାଇଁ ମୋତେ ଉତ୍ସାହ ଦିଅନ୍ତି । ଯାହାହେଲେ ବି ରକ୍ଷଣଶୀଳତା ତ ଥାଏ । ସେତେବେଳେ ହାଇସ୍କୁଲ୍‌ରେ ୧୪/୧୫ ବର୍ଷର ଝିଅ, କେତେ ସତର୍କରେ ଚଳିବ, ପୋଷାକ ପରିଛଦରେ, ଆଚ଼ାର ବ୍ୟବହାରରେ ! ପୁଣି, ଘରେ କେହି ପୁରୁଷ ଲୋକ ନଥାନ୍ତି; ବାପା ଥାଆନ୍ତି ଦୂର ବିଦେଶରେ ! ତେବେ, ମୋ ବୋଉ ଧୈର୍ଯ୍ୟଶୀଳା, ସେବକାର ଶିକ୍ଷିତା, ସ୍ୱାଧୀନତା ସଂଗ୍ରାମୀଙ୍କ ଦୀକ୍ଷିତା ପତ୍ନୀ, ରକ୍ଷଣଶୀଳତାର ଊର୍ଦ୍ଧ୍ୱରେ ଥାଏ । ଅଷ୍ଟମଶ୍ରେଣୀର ବାର୍ଷିକ ପରୀକ୍ଷାରେ ମୁଁ ପ୍ରଥମ ହୁଏ । ମାତ୍ର ଗଣିତରେ ଥାଏ ୫୯ ନମ୍ବର - ସେଇ ସର୍ବୋଚ୍ଚ ନମ୍ବର । ସେହିବର୍ଷ

ସ୍କୁଲ୍‌ରେ ଯୋଗ ଦେଇଥାନ୍ତି ବି.ଏସ୍.ସି. ପାସ୍ ଶିକ୍ଷକ ବୃନ୍ଦାବନ ସିଂହ। ଖାଲିପାଦରେ ଚାଲନ୍ତି, ପରିଧାନ ଧୋତି ଓ ହାଫ୍‌ସାର୍ଟ(ଧଳା); ମଧ୍ୟଉଚ୍ଚତା, ଶ୍ୟାମଳବର୍ଣ୍ଣ ଯୁବକ। କେବଳ ମୁଁ ନୁହେଁ, ଶହ ଶହ ଛାତ୍ରଛାତ୍ରୀ ତାଙ୍କଠାରେ କୃତଜ୍ଞ। ପରବର୍ତ୍ତୀ କାଳରେ, ବହୁଭଲ ସ୍କୁଲ୍‌ରେ ସେ ଶିକ୍ଷକତା କରିଛନ୍ତି। ରାଜ୍ୟପାଳ ଓ ରାଷ୍ଟ୍ରପତିଙ୍କ ଦ୍ୱାରା ପୁରସ୍କୃତ ହୋଇଛନ୍ତି। ଅଯାଚିତ ଭାବେ ସେ ମୋର ଯତ୍ନନେଲେ। ଜାଣିଲେ ଯେ, ସ୍କୁଲ୍‌ର ସବୁଠାରୁ ଭଲ ଛାତ୍ରୀ ଗଣିତରେ ଦୁର୍ବଳ ଅଛି। ଥରେ ହେଲେ ବତାଇ ଦେବାକୁ କେହି ସାରା ଗାଆଁରେ ନାହାନ୍ତି। ସେ ବର୍ଷ ଗ୍ରୀଷ୍ମଛୁଟିରେ, ସାର୍ ଗୋଟିଏ ସପ୍ତାହ ଆମଘରକୁ ନିୟମିତ ଆସିଲେ। ସ୍କୁଲ୍ ହଷ୍ଟେଲ୍‌ରେ ରହୁଥାଆନ୍ତି, ଆସନ୍ତି ସାଇକେଲରେ, ୩/୪ଟା ବେଳେ। ପ୍ରାୟ ଘଣ୍ଟାଏ ଧରି ମୋତେ ପଢ଼ାନ୍ତି। ତା'ପରେ ଫେରିଯାଆନ୍ତି। ବୋଉ ତାଙ୍କୁ ଆଦର କରି କଳଖିଆ ଖୁଆଏ। ସାର୍ ମୋ ବୋଉକୁ ଆଭୂମ ପ୍ରଣାମ କରନ୍ତି। ସେଇ ସପ୍ତାହଟିର ଗଣିତଶିକ୍ଷା ମୋତେ ମୋର କ୍ୟାରିଅରରେ ପ୍ରତିଷ୍ଠିତ କରାଇ ଦିଏ। ମୁଁ ନବମଶ୍ରେଣୀରେ ଗଣିତକୁ ଇଚ୍ଛାକୃତ ବିଷୟ ଭାବେ ନିଏ ଓ ୧୦୦ ନମ୍ବର ରଖେଁ। ତାଙ୍କୁ କୃତଜ୍ଞତା ଜଣାଇବାର ସାମର୍ଥ୍ୟ ମୋର କାହିଁ ? କେବେ, ତାଙ୍କର କୌଣସି ଉପକାରରେ ଆସିପାରିନାହିଁ ମୁଁ। ତାଙ୍କ ସ୍ତ୍ରୀ ମୋତେ ଓ ମୋ ପିଲାଙ୍କୁ ବହୁତ ସ୍ନେହ କରନ୍ତି। ଅନେକ ଗରିବ ଛାତ୍ରଙ୍କୁ ସାର୍ ମାଗଣାରେ ନିଜଘରେ ରଖାଇ ପାଠ ପଢ଼ାନ୍ତି। ଭାବୀ (ତାଙ୍କ ସ୍ତ୍ରୀ) ରାନ୍ଧିବାଢ଼ି ସେ ପିଲାଙ୍କୁ ଖୁଆନ୍ତି। ଏ ଯୁଗରେ ସେଭଳି ଶିକ୍ଷକ କ'ଣ ସତରେ ଆଉ ଅଛନ୍ତି ?

ଅନ୍ୟଜଣେ ଶିକ୍ଷକ ବୀରକିଶୋର ମହାନ୍ତି - ସାହିତ୍ୟିକ ସୁରେନ୍ଦ୍ର ମହାନ୍ତିଙ୍କ ସାନଭାଇ। ଅବଶ୍ୟ, ତାଙ୍କର ଅକାଳମୃତ୍ୟୁ ବହୁଦିନରୁ ହୋଇସାରିଛି। ସେ ପଢ଼ାନ୍ତି ଇଂରାଜୀ ଓ ସୋସିଆଲଷ୍ଟଡ଼ି। ସିଲାବସ୍ ବାହାରେ ସେ ଆମକୁ ଏତେ ବ୍ୟାପକ ଜ୍ଞାନ ଦିଅନ୍ତି, ଆଜି ଭାବିଲେ ଆଶ୍ଚର୍ଯ୍ୟ ଲାଗେ। କେତେ ଉଦ୍ଧୃତି, କେତେ କାବ୍ୟ ନାଟକ, ଆଲୋଚ଼ନା କରି ଆମ ଚିତ୍ତବୃତ୍ତିକୁ ପ୍ରଶସ୍ତ କରିଦିଅନ୍ତି। ସେ ଫିନ୍ ଫିନ୍ ମଷ୍ଟରାଇଜଡ ଧୋତି, ଫୁଲସାର୍ଟ ଓ ଗୋଟିଏ ବଡ଼ ପଥରବସା ସୁନାମୁଦି ପିନ୍ଧିଥାଆନ୍ତି। ମୋ କବିତାଲେଖାକୁ ସେ ଉତ୍ସାହ ଦିଅନ୍ତି।

ସେହି ହାଇସ୍କୁଲ୍‌ରେ ପ୍ରଧାନଶିକ୍ଷକ ଥାଆନ୍ତି ମୋର ପରମପୂଜ୍ୟ ଭାସ୍କରଚନ୍ଦ୍ର ଦାଶ। ଇଂରାଜୀରେ ତାଙ୍କର ପ୍ରବଳ ବ୍ୟୁତ୍ପତ୍ତି - ଓଡ଼ିଶାରେ ସେ ଜଣେ

ଜଣାଶୁଣା ଆଦର୍ଶ ଶିକ୍ଷକ । ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ । ଇରାକ୍‌ଠାରେ ମଧ୍ୟ ଶିକ୍ଷକତା କରିଛନ୍ତି । ଅସଂଖ୍ୟ ଆଜ୍ଞାଧୀନ ଛାତ୍ର ତାଙ୍କର । ସେ ପିନ୍ଧନ୍ତି ଖଦଡ଼ ଧୋତି, ପଂଜାବୀ, ଚପଲ । ଗଂଭୀର, ଶୃଙ୍ଖଳାନିଷ୍ଠ, ମିତବାକ୍ । ଆମର ଏକାଦଶ ଶ୍ରେଣ ସାରା ସେ ସକାଳୁ ଇଂରାଜୀରେ କୋଚ଼ିଂକ୍ଲାସ୍ କରନ୍ତି, ଅବୈତନିକ । ମୁଁ ସକାଳ ଛଅଟାରୁ ଆମଘରୁ ବାହାରିଯାଏ, କୋଚ଼ିଂ କ୍ଲାସ୍ କରେ ଓ ଦିନ ୧୦ଟାବେଳେ ହଷ୍ଟେଲ୍ ମେସ୍‌ରେ ଖାଏ - ମେସ୍ ଚାର୍ଯ ଦେଇଦିଏ । ଅତି ଗରିବ ପିଲାଏ ମଧ୍ୟ କୋଚ଼ିଂ କ୍ଲାସ୍ କରିସାରି ୧୦ଟାବେଳେ ହଷ୍ଟେଲ୍ ମେସ୍‌ରେ ମାଗଣାରେ ଖାଆନ୍ତି । ହେଡ୍‌ମାଷ୍ଟଙ୍କ ଯୋଗୁଁ ଏହା ସମ୍ଭବ ହୁଏ । ବହୁ ଗରିବ ପିଲା ତାଙ୍କ ଶିକ୍ଷାଦାନର ମହତ୍ତ୍ୱରେ ମଣିଷ ହୋଇଯାଇଛନ୍ତି । ଆମ ଗାଁର ଶେଷ ମୁଣ୍ଡରେ ଥିବା ବୈଷ୍ଣବସାହିର (ମାଳିକଟା ସାହି) ଜଣେ ଛାତ୍ର, ତା' ବାପା ଭାରି ଗରିବ, ଭିକମାଗନ୍ତି, ବଖରାଏ ଚାଳଘର; ସେ କେବଳ ହେଡ୍‌ମାଷ୍ଟଙ୍କ ଯତ୍ନଯୋଗୁଁ ମାଟ୍ରିକ୍ ପାସ୍ କଲା, ଚାକିରି କଲା । ନହେଲେ, ତା' ପକ୍ଷରେ ଇଂରାଜୀରେ ଫେଲ୍ ହବା ଥିଲା 'ଥୟ୍' । ସାର୍ ବାଣୀବିହାର ସ୍କୁଲ୍‌ରେ ହେଡ୍‌ମାଷ୍ଟ ଥିଲାବେଳେ ମୋ ଝିଅ ପାରମିତାକୁ ବି ପଢ଼ାଇଛନ୍ତି । ସେ ଗଦ୍ ଗଦ୍ ହୋଇ ଇଂରେଜୀରେ କହନ୍ତି, "I am teaching generations after generations." ବର୍ତ୍ତମାନ ମଧ୍ୟ ସାର୍ ସମାଜସେବାରେ କାର୍ଯ୍ୟରତ । କେବଳ ତାଙ୍କରି ଯୋଗୁଁ, ମୁଁ ମଫସଲ ସ୍କୁଲ୍‌ର ଛାତ୍ରୀ, ରେଭେନ୍‌ସା କଲେଜରେ ପଢ଼ିଲାବେଳେ ଷ୍ଟୁଆର୍ଟ ଓ କନ୍‌ଭେଣ୍ଟରେ ପଢ଼ି ଆସିଥିବା ଛାତ୍ରଛାତ୍ରୀମାନଙ୍କ ସହ ଇଂରାଜୀରେ ସମାନ ନମ୍ବର ରଖୁଥିଲି । ମୁଁ ପାଠ ପଢ଼ି ପାରିଲି ନାହିଁ । ଠିକ୍ ଭାବରେ, ସେ ଅନ୍ୟ ଏକ ପ୍ରସଙ୍ଗ ।

ତଥାପି ରେଭେନ୍‌ସା କଲେଜରେ ମୋର ଦ୍ୱିତୀୟ ବର୍ଷ ବିଜ୍ଞାନ ଶିକ୍ଷାକ୍ଷେତ୍ରରେ, ଆମର ସାଧାରଣଜ୍ଞାନ ପାଠ୍ୟଥିବାରୁ, ପ୍ରାୟ କଳା ଓ ବିଜ୍ଞାନର ସବୁ ବିଭାଗ ମୁଖ୍ୟ ଆମର କ୍ଲାସ୍ ନିଅନ୍ତି । ଇଂରାଜୀରେ ଡଃ ଏ.ପି. ଓ'ବ୍ରାଇନ୍, ଫିଜିକ୍ସରେ ଡଃ ତ୍ରିଲୋଚ଼ନ ପ୍ରଧାନ ଓ ଡଃ କୁଳମଣି ସାମଲ ମୋର ଶିକ୍ଷାଦାତା ଥିଲେ । ଓ' ବ୍ରାଇନ୍ ସାର୍ ଓ କୁଳମଣିସାର୍, ମୁଁ ଭଲ ପଢୁଥିବାରୁ ମୋତେ ଶ୍ରଦ୍ଧା କରୁଥିଲେ । ଏବେ କୁଳମଣିସାର୍‌ଙ୍କ ଦେହାନ୍ତ ହେବାର ସମ୍ବାଦ ଦେଖି, ତାଙ୍କ ଫଟୋରେ ମୁଣ୍ଡ ଲଗାଇ ପ୍ରଣାମ କଲି । ସେ ମହାନ୍ ଆତ୍ମାମାନଙ୍କୁ ପ୍ରଣିପାତ କରିବା ବ୍ୟତୀତ, କୃତଜ୍ଞତା ଜଣାଉଛି । ମାତ୍ର ସେମାନେ ମୋଠାରୁ କୃତଜ୍ଞତା

ଚାହିଁନଥିଲେ। ତାଙ୍କ ଶିକ୍ଷାଦାନର ସଦୁପଯୋଗ ମୁଁ କରେଁ, ସେମାନେ ଏହା ଆଶା କରିଥିଲେ। ମୁଁ ତାହା କରି ପାରି ନାହିଁ।

ଶେଷରେ, ଆଉଜଣେ ସାର୍, ମୋର ଗବେଷଣାର ଦିଗ୍‌ଦର୍ଶନ, ପ୍ରଫେସର ଡଃ କୃଷ୍ଣଚରଣ ସାହୁ। ତାଙ୍କ ବିଷୟରେ ନ କହିଲେ, ଲେଖାଟି ଅପୂର୍ଣ୍ଣ ରହିଯିବ। ସେ ସିନା କ୍ଲାସ୍‌ରେ ମୋତେ ପଢ଼ାଇନାହାନ୍ତି, ମାତ୍ର ତାଙ୍କର ଅନ୍ତରଂଗତା, ସହୃଦୟତା ଓ ସୁପରାମର୍ଶ ମୋତେ କମ୍ ଉତ୍ସାହିତ କରିନାହିଁ। ମୋର ଗବେଷଣା ନିବନ୍ଧକୁ ନେଇ ତାଙ୍କର କି ଗର୍ବ ! ମୁଁ ଯତ୍ନର ସହିତ, ଜ୍ଞାନ ଓ ଧ୍ୟାନ ପ୍ରୟୋଗ କରି ନିବନ୍ଧଟି ରଚନା କରିଛି, ଏହା ସାର୍ ତାଙ୍କର ପ୍ରିୟ ଛାତ୍ରଛାତ୍ରୀ ମାନଙ୍କୁ କହନ୍ତି। ସେ ମଧ୍ୟ ଦିବଂଗତ। ଏହି ଗୁରୁସକଳ ସ୍ୱୀୟ ନିଃସ୍ୱାର୍ଥପରତା, ନିଷ୍ଠା ଓ ଛାତ୍ରବତ୍ସଳତାର ଗୋଟାଏ ଗୋଟାଏ ଉଜ୍ଜ୍ୱଳସ୍ତମ୍ଭ ସଦୃଶ। ଆଜି, ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି - ଏହି ଶିକ୍ଷାଜଗତକୁ ଆଦର୍ଶ ଗୁରୁଗଣ ବିମଣ୍ଡିତ କରି ଛାତ୍ରଙ୍କୁ ଉଦ୍‌ବୁଦ୍ଧ କରନ୍ତୁ।



# ଅବିସ୍ମୃତ ମୋର ସେହି ଶିକ୍ଷକ

*ବିକ୍ରମ କେଶରୀ ଦାସ*

ସେତେବେଳେ ବିହାର ଓ ଓଡ଼ିଶା ମିଶି ଗୋଟାଏ ପ୍ରଦେଶ । ତା'ର ରାଜଧାନୀ ପାଟନାରେ ଘର କରି ରହୁଥିବା ଏକ ଓଡ଼ିଆ ପରିବାରରେ ମୋର ଜନ୍ମ । ବାଲେଶ୍ୱର ଜିଲ୍ଲାର କେଉଁ ଏକ ଅଜଣା ଗାଁରେ ଜନ୍ମଗ୍ରହଣ କରି ବାପା ମୋର କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଓ ବି.ଏଲ୍ ପାସ୍ କଲେ ଏବଂ ୧୯୧୭ରେ ପାଟନା ଉଚ୍ଚ ନ୍ୟାୟାଳୟରେ ଓକିଲାତି ଆରଂଭ କଲେ । ତା'ର ୧୮ ବର୍ଷ ପରେ ଯେତେବେଳେ ତାଙ୍କୁ ୪୮ ବର୍ଷ ବୟସ ସେତେବେଳେ ମୋର ଜନ୍ମ । ବାପା-ମାଙ୍କର ପାଞ୍ଚଗୋଟି ସନ୍ତାନ ମଧ୍ୟରେ ମୋର ସ୍ଥାନ ଚତୁର୍ଥ ।

୧୯୪୦ରେ ପାଟନାରେ ନୂଆଁ କରି ସ୍କୁଲ୍‌ଟିଏ ସ୍ଥାପିତ ହେଲା - ସେଣ୍ଟ ଜାଭିଅର ଉଚ୍ଚ ବିଦ୍ୟାଳୟ (St. Xavior's High School)) । ଜେସଏଟ୍‌ସ ମିସିନାରୀମାନଙ୍କ ଉଦ୍ୟମରେ ସ୍ଥାପିତ ସ୍କୁଲ୍‌ରେ, ସ୍ଥାପନର କିଛି ମାସ ପରେ ମୋର ନାଁ ଲେଖା ହେଲା । ସ୍କୁଲ୍‌ର ଅଧିକାଂଶ ଶିକ୍ଷକ ଥିଲେ ଆମେରିକାର ପାଦ୍ରୀ । ସେମାନଙ୍କ ମଧ୍ୟରୁ କେତେକ ଦୀର୍ଘ ଦିନ ଧରି ଭାରତରେ ଅବସ୍ଥାପିତ ଥିଲେ ଏବଂ ହିନ୍ଦୀ କହି ପାରୁଥିଲେ । ହେଲେ ଅନ୍ୟମାନେ ସଦ୍ୟ ଆମେରିକାରୁ ଆସିଥିଲେ । ସେମାନଙ୍କ ଇଂରାଜୀ ଉଚ୍ଚାରଣ ମୁଁ କେମିତି ବୁଝୁଥିଲି କେଜାଣି ! ହେଲେ ସେତେବେଳେ ଭାରତ ଥିଲା ଇଂରେଜ ସାମ୍ରାଜ୍ୟରେ । ଗୋରା ଲୋକଙ୍କର ମୁହଁ ଦେଖିଲେ ଆଶ୍ଚର୍ଯ୍ୟ ଲାଗୁ ନ ଥିଲା ।

ଶ୍ରେଣୀରେ ଧାରଣା ଥିଲା ମୁଁ ଜଣେ ଭଲ ପିଲା । ଗଣିତରେ ଖୁବ୍ ଦୁର୍ବଳ ଥିଲି, ଯଦିଓ ଇଂରାଜୀରେ ଠିକ୍ ଠାକ୍ ଲେଖି ପାରୁଥିଲି । ମୋର ସ୍ୱଭାବ ଥିଲା ଲାଜକୁଳା କିସମର; ଡିବେଟରେ ମୋର ଖୁବ୍ ଦକ୍ଷତା ନ ଥିଲା ।

୧୯୪୯ ପର୍ଯ୍ୟନ୍ତ ମୁଁ ସେଣ୍ଟ ଜାଭିଅର ସ୍କୁଲ୍‌ରେ ପାଠ ପଢ଼ିଲି । ସେହି ବର୍ଷ ସିନିଅର କେଂବ୍ରିଜ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି । ଏହି ଅବଧିରେ ଅନେକ ଘଟଣା ଘଟିଗଲା - ୟୁରୋପରେ ଦ୍ୱିତୀୟ ମହାଯୁଦ୍ଧ ସଂଘଟିତ ହେଲା, ମୋର ହିରୋ

ଥିଲେ ହିଟଲର। ୧୯୪୨ରେ ମୋର ବଡ଼ ଭଉଣୀର ବାହାଘର ହେଲା। ସେହି ବର୍ଷ ଜାପାନୀମାନେ କଲିକତା ଉପରେ ବୋମା ବର୍ଷଣ କଲେ। ୧୯୪୫ରେ ମିତ୍ରଶକ୍ତି ଯୁଦ୍ଧ ଜିଣିଲେ ଏବଂ ବର୍ଷର ଶେଷ ଆଡ଼କୁ ଆଜାଦ ହିନ୍ଦ୍ ଫୌଜର ତିନିଜଣ ଅଫିସରଙ୍କ ବିରୁଦ୍ଧରେ ଦିଲ୍ଲୀର ଲାଲକିଲ୍ଲାରେ କେଶ ଚାଲିଲା। ସେମାନଙ୍କ ନାଁରେ ଅଭିଯୋଗ ହେଲା ଯେ ସେମାନେ ଭାରତ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ। ଅନ୍ତତଃ ସେମାନେ ବିଚାର ପରେ ଛାଡ଼ ପାଇଲେ। ୧୯୪୭ରେ ଭାରତ ସ୍ୱାଧୀନ ହେଲା। ଆଉ ଅନେକ ସ୍କୁଲ୍ ଛାତ୍ରଙ୍କ ଭଳି ମୁଁ ମଧ୍ୟ ଜାତୀୟ ପତାକା ଧରି ପ୍ରଥମ ସ୍ୱାଧୀନତା ଦିବସ ପାରେଡ଼ରେ ଭାଗ ନେଇଥିଲି। ୧୯୪୮ରେ ମହାତ୍ମା ଗାନ୍ଧି ଓ ଜବାହରଲାଲ ନେହେରୁଙ୍କୁ ଦେଖିବାର ମତେ ସୁଯୋଗ ମିଳିଥିଲା। ଗୋଟାଏ ଅବସରରେ ଦୀର୍ଘ ମାସେ କାଳ ମତେ ମହାତ୍ମା ଗାନ୍ଧିଙ୍କ ବ୍ୟାଖ୍ୟାନ ଶୁଣିବାର ସୌଭାଗ୍ୟ ମିଳିଥିଲା, ଯଦିଓ ତହିଁରୁ ବିଶେଷ କିଛି ବୁଝି ପାରିବାର ମୋର ବୟସ ହୋଇ ନ ଥିଲା। ଜଣେ କିଶୋର ପାଇଁ ତାହା ଥିଲା ଏକ ଅଭିନବ ସମୟ।

ସେହି ବାଲ୍ୟାବସ୍ଥାର ଅନେକ ସ୍ମୃତି ଏବେ ମଧ୍ୟ ମନରେ ରହିଯାଇଛି। ସ୍କୁଲ୍‌ରେ ମୋର ଥିଲେ ଅନେର ବିଦ୍ୱାନ ଶିକ୍ଷକ। ବିଶେଷ କରି ମୋର ମନେ ପଡ଼େ ଫାଦର କ୍ଲିଅରୀ (Father Cleary) ନାମକ ସେହି ଆୟରିଶ ପାଦ୍ରୀଙ୍କର କଥା, ଯିଏ ରନଜି ଟ୍ରଫି ପ୍ରତିଯୋଗିତାରେ କ୍ରିକେଟ୍ ଖେଳୁଥିଲେ। ଆହୁରି ମନେ ପଡ଼ନ୍ତି ପୋଲାଣ୍ଡ-ଆମେରିକୀୟ ଫାଦର ରବଲସ୍କି (Father Wroblewski)। ଫାଦର କ୍ଲିଅରୀ ଆମକୁ ବାକ୍ୟ ସଂରଚନା କଳା ପଢ଼ାଉଥିଲେ। ଫାଦର ରବଲସ୍କି ପଢ଼ାଉଥିଲେ ମେକବେଥ ନାଟକ। କାହିଁକି କେଜାଣି ଆମେ ସମସ୍ତେ ଏହି ଦୁଇଜଣ ଶିକ୍ଷକଙ୍କ ପ୍ରତି ଟାଣି ହୋଇ ଯାଉଥିଲୁ। ଆଜି ମଧ୍ୟ ସେମାନେ ମନରେ ଅବିସ୍ମରଣୀୟ ହୋଇ ରହିଯାଇଛନ୍ତି।

ହେଲେ ଯେଉଁ ଶିକ୍ଷକଙ୍କ ସଂବଂଧରେ ମୋର ଏବେ କହିବାକୁ ଇଚ୍ଛା ସେ ଥିଲେ ଜଣେ ଖାପ ଖାଉନ ଥିବା ଚରିତ୍ର, ଯାହାଙ୍କର ଈର୍ଷା କଲା ଭଳି କୌଣସି ମନୋହାରୀ ରୂପ ନ ଥିଲା। ତଥାପି ତାଙ୍କୁ ମୁଁ ଭୁଲି ପାରିନି। ଅବଶ୍ୟ ମୋର ସମସାମୟିକ ବଂଧୁମାନେ, ତାଙ୍କ ସଂବଂଧରେ ସେଭଳି ଧାରଣା ରଖନ୍ତି ବୋଲି ମୁଁ ଦୃଢ଼ ଭାବେ କହିପାରିବିନି। ଏହି ଶିକ୍ଷକଙ୍କର ନାଁ ଥିଲା ଶ୍ରୀଯୁକ୍ତ ତରଫଦାର।

ସେ ଜଣେ ବଂଗାଳି ଭଦ୍ର ବ୍ୟକ୍ତି। ପାଞ୍ଚ ଫୁଟ ହେବ ଉଚ୍ଚତା। ସେ କେଉଁ ନିର୍ଦ୍ଦିଷ୍ଟ ବିଷୟର ଶିକ୍ଷକ ଥିଲେ ତାହା ମୁଁ ଶେଷ ଯାଏଁ ଜାଣି ପାରିଲିନି। ସେ କେମିଷ୍ଟ୍ରି ପଢ଼ାଉଥିଲେ; ଭୂଗୋଳ ପଢ଼ାଉଥିଲେ, ଇଂରାଜୀ ସାହିତ୍ୟ ପଢ଼ାଉଥିଲେ; ପୁଣି ସଂସ୍କୃତ ବି ପଢ଼ାଉଥିଲେ। ଏସବୁକୁ ବାଦଦେଲେ "ସେଣ୍ଟ ଜର୍ଜ ଆଂବୁଲାନ୍‌ସ" ନାମକ ଏକ ସଂସ୍ଥା ପକ୍ଷରୁ ପ୍ରାଥମିକ ଚିକିତ୍ସା ସଂବଂଧରେ ଶିକ୍ଷା ଦେଉଥିଲେ। ମନେ ହେଉଥିଲା, ଏହି ପ୍ରାଥମିକ ଚିକିତ୍ସା ଶିକ୍ଷାରେ ସେ ଥିଲେ ସର୍ବାପେକ୍ଷା ଅଧିକ ଧୂରୀଣ। ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ବିଷୟ ପଢ଼ାଇବା ଥିଲା ଯେମିତି ତାଙ୍କର ନିଶା। ଯେତେବେଳେ ଯେଉଁ ଶିକ୍ଷକ ଅନୁପସ୍ଥିତ, ତାଙ୍କ ସ୍ଥାନରେ ଆସନ୍ତି ସେ। ଗେଡ଼ା ଶରୀର; ତାଙ୍କର ଲମ୍ବା ଓ ସିଧା ଚୁଟି କାଂଧ ଯାଏଁ ଓହଳିଥାଏ; କେତେ ହେବ ତାଙ୍କ ଅସଲି ବୟସ ଅନୁମାନ କରି ହୁଏନା। ତାଙ୍କ ରୂପର ଯାହା ଅତ୍ୟନ୍ତ ଅବିସ୍ମରଣୀୟ, ତାହା ହେଲା ତାଙ୍କ ନାକ ତଳର ନିଶ। ତାକୁ ସମସ୍ତେ କହନ୍ତି 'ଟୁଥ୍‌ବ୍ରଶ' ନିଶ। ଆଉ ଏକ ଅବିସ୍ମରଣୀୟ କଥା ହେଲା ତାଙ୍କ ଦୀର୍ଘ ମୋଟା ପଶମ ଓଭରକୋଟ। ପାଟନା ସହରର ଗରମରେ ମଧ୍ୟ କଦାଚିତ ଓଭରକୋଟକୁ ଦେହରୁ ଓହ୍ଲାନ୍ତି ନାହିଁ। ଥରେ ତାଙ୍କୁ ମୁଁ "ସର୍ବଦା କୋଟ ପରିହିତ କାହିଁକି ଆପଣ" ବୋଲି ପଚାରିଲି। ଉତ୍ତରରେ କହିଲେ ମଧ୍ୟରାତ୍ରୀବେଳକୁ ଏହାର ଖୁବ୍ ଆବଶ୍ୟକତା ଥାଏ। ଅର୍ଥାତ୍ ଅଧରାତି ଯାଏଁ ତାଙ୍କୁ ସହରର କେଉଁଠି ନା କେଉଁଠି ସାଇକଲ ଚଢ଼ି ଯାଉଥିବାର ଦେଖିହେବ। ଥରେ ତାଙ୍କୁ ଟେଲର ଦୋକାନରେ ଗ୍ରାହକମାନଙ୍କର ମାପ ନେଉଥିବାର ମୁଁ ଦେଖିଲି। ଆମମାନଙ୍କୁ ସାମନାରେ ପାଇ ଆଦୌ ଅଶ୍ୱସ୍ତିବୋଧ କରି ନ ଥିଲେ। ପ୍ରକୃତରେ କହିବାକୁ ଗଲେ, ତାଙ୍କ ସଂସ୍ପର୍ଶରେ ଆସିଥିବା ସେହି କେତେ ବର୍ଷର ଅବଧିରେ ଆମେ କେବେ ବି ତାଙ୍କ ମୁଖମଣ୍ଡଳର ଭାବ ପରିବର୍ତ୍ତନ ହେବାର ଲକ୍ଷ୍ୟ କରି ନାହୁଁ। ସର୍ବଦା ଥାଏ ତାଙ୍କଠାରେ ଏକ ନିର୍ମୋହୀ ଭାବ। କେହି, କୌଣସି ସ୍ଥିତି ତାଙ୍କୁ ନା ଆଶ୍ଚର୍ଯ୍ୟଚକିତ କରି ପାରିବ, ନା ଆମୋଦ ଦେଇ ପାରିବ, ନା ବିଚଳିତ କରି ପାରିବ ! ଆମେମାନେ ତାଙ୍କୁ ଶ୍ରେଣୀରେ କେଉଁ ପ୍ରଶ୍ନ ବା ନ ପଚାରନ୍ତି ! ସେ ବୀଜଗଣିତର ସୂତ୍ର ବୁଝେଇ ଦେବେ, ବିଶ୍ୱ ଇତିହାସର ପାଠ କହିଦେବେ, ପୁଣି ନିଉ ଟେଷ୍ଟାମେଣ୍ଟ (New Testament)ର ଗହନ କଥାକୁ ତରଳ କରିଦେବେ। ଆମେ ବିଭିନ୍ନ ବିଷୟରେ ତାଙ୍କ ବିଦବତ୍ତାର ଗଭୀରତାକୁ ମାପିବା ପାଇଁ ଯଥେଷ୍ଟ

ପ୍ୟାଡ଼୍ ବି ପଢ଼ାଉଥିଲେ। ହେଲେ କେବେ ସେ ଆମକୁ ନିରାଶ କରି ନାହାନ୍ତି। ସବୁ ପ୍ରଶ୍ନର ଚଟାପଟ ଉତ୍ତର ଖୋଜି ଦେଇଛନ୍ତି।

ପ୍ରାୟତଃ ଶ୍ରୀଯୁକ୍ତ ତରଫଦାର ଭଳି ଚରିତ୍ର ବିସ୍ମୃତ ରହନ୍ତି। ମାତ୍ର ଷାଠିଏ ବର୍ଷ ପରେ ବି ସେ ମୋ ସ୍ମୃତିରୁ ତିରୋହିତ ହୋଇ ନାହାନ୍ତି। ଆଗକୁ ବି ତିରୋହିତ ହେବାର ଆଶଙ୍କା ମୁଁ ଦେଖିପାରୁନାହିଁ।

(ପ୍ରଫେସର ବିକ୍ରମ କେଶରୀ ଦାସ "ସ୍ମୃତିରେ ଶିକ୍ଷକ" ପାଇଁ ଲେଖିଥିବା ଇଂରେଜି ଲେଖା "The Teacher I cannot Forget"ର ଓଡ଼ିଆ ଅନୁବାଦ।)



# ମୋ ଶିକ୍ଷକ

*ପ୍ରୀତୀଶ ଆଚାର୍ଯ୍ୟ*

ଆଜି ନିଜର ଛାତ୍ର ଜୀବନକୁ ଫେରି ଚାହେଁ ଯେତେବେଳେ, ମନେହୁଏ, ଅଳ୍ପ କେତେ ଜଣ ମୋର ଶିକ୍ଷକଙ୍କୁ ବାଦ ଦେଲେ ଅନ୍ୟମାନଙ୍କୁ କୁ-ଶିକ୍ଷକ ତାଲିକାରେ ରଖି ହେବନି। ପୁଣି, ସେହି ଅଳ୍ପ କେତେଜଣଙ୍କ ପ୍ରତି ମଧ୍ୟ ଭକ୍ତି ଭାବ ନ ଆସିଲେ ବି' ମନରେ ଏବେ ଘୃଣାଭାବ ଆସୁନି, ଯଦିଓ ସେତେବେଳେ ରାଗ ମାଡୁଥିଲା। ଅନ୍ୟ ଯେଉଁମାନେ ଆସିଛନ୍ତି, ମୋ ପାଇଁ 'ଶିକ୍ଷକ' ସେମାନେ। ଶିକ୍ଷକ ଶବ୍ଦରେ ହିଁ 'ଆଦର୍ଶ' କଥାଟି ଅନ୍ତର୍ନିହିତ। ତେଣୁ, 'ଶିକ୍ଷକ' ନାଁ ଆଗରେ ଆଦର୍ଶ ଶବ୍ଦ ଯୋଡ଼ିବା ଦରକାର ନାହିଁ। ତା' ସତ୍ତ୍ୱେ, କିଛି କଣ ଶିକ୍ଷକ ଶିକ୍ଷାଦାନ କରିଥିବାର ଅନେକ ବର୍ଷ ପରେ ସୁଦ୍ଧା ସ୍ୱତଃ ମନେ ପଡ଼ନ୍ତି, ବେଶି ମନେ ପଡ଼ନ୍ତି। ଅନ୍ୟମାନଙ୍କୁ ମନେ ପକେଇବା ଲାଗି ସାମାନ୍ୟ ପ୍ରୟାସ କରିବାକୁ ହୁଏ। ଏହି ତଫାତ ଯୋଗୁଁ ବିଶେଷ ଭାବେ ମନେ ପଡୁଥିବା ଶିକ୍ଷକଗଣଙ୍କୁ ଯଦି ମୋ ଜୀବନରେ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି କହିବି, ତେବେ ମୋର ଆଉ ଶିକ୍ଷକମାନଙ୍କ ପ୍ରତି ଅସମ୍ମାନ ହେବ ନିଶ୍ଚୟ। ବରଂ ସେମାନଙ୍କୁ ମୋଟ ଶିକ୍ଷକ ସମାଜର ଏକ ରକମର ପ୍ରତିନିଧି କହିବା ଉଚିତ ହେବ। କେବଳ ସେମାନଙ୍କ ସ୍ମୃତିକୁ ସାଇତିବାରେ ସୁବିଧା ଏତିକି ଯେ, ଲେଖାର ପରିଧିକୁ ସୀମିତ ରଖିହେବ - ଯାହା ଲେଖକ ଲାଗି ସର୍ବଦା ଏକ ବଡ଼ ଆବଶ୍ୟକତା।

ସ୍ୱତଃ ନାଁ ମନେ ପଡୁଥିବା ଶିକ୍ଷକଙ୍କ ମଧ୍ୟରେ ପ୍ରଥମେ ଆସନ୍ତି ଆମ ଗାଁ ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ କପ ମଟାରୀ। ୧୯୬୬-୬୭ରେ ଗାଁ ଲୋକଙ୍କ ଘରୋଇ ପ୍ରୟାସରେ ସେହି ସ୍କୁଲ୍‌ଟି ଆରଂଭ ହୋଇଥିଲା। ମୋଟ ଛାତ୍ର ସଂଖ୍ୟା (ଆମ ବେଳେ-୧୯୭୨-୭୩ରେ) ତିରିଶରୁ ବଳିବ ନାହିଁ। ଗାଁର ଶିକ୍ଷିତ ପିଲା ଭାବରେ କପମଟାରୀକୁ ସେଠି ଅଳ୍ପ ଦରମାରେ ପ୍ରଧାନ ଶିକ୍ଷକ ଦାୟିତ୍ୱରେ ରହିବାକୁ ହୋଇଥିଲା। ଗାଁରେ "କପ ମାଷ୍ଟର" ଏବଂ ଆମ ପିଲାଙ୍କ ଦୁନିଆଁରେ 'ହେଡ଼ମାଷ୍ଟ୍ରେ' ନାଁରେ ପରିଚିତ ଏହି ଶିକ୍ଷକ କଣକ ପଢ଼ିଥିଲେ ମାତ୍ର ପ୍ରି. ୟୁନିଭର୍ସିଟି ଯାଏଁ; ତାଲିମ କିଛି ନ ଥିଲା। ପରେ ନିଜ ପ୍ରୟାସରେ ସିଟି ଟ୍ରେନିଂ କଲେ ଓ ବିଏ ପାସ୍ କଲେ। ପରିବାରର ପ୍ରଥମ ପିଢ଼ିର ଶିକ୍ଷିତ ସେ; ବାପା ତାଙ୍କର ଗାଁର 'ଝାଙ୍କର' ବା ସାମାଜିକ ସୁରକ୍ଷା କର୍ମୀ। ଜାତି ଗଉଡ଼।

'ହେଡ୍‌ମାଷ୍ଟ୍ରେ' ଧୋତି ଫଂକାବି ପିଂଧି ସ୍କୁଲ୍ ଆସନ୍ତି । ବର୍ଣ୍ଣ କଳା । ଦେଖିବାକୁ ସୁନ୍ଦର ଗଢ଼ଣର ନୁହନ୍ତି ।  ହାତରେ ଘଣ୍ଟା ନ ଥାଏ - ମନେ ହୁଏ ପରିବାରର ଆର୍ଥିକ ଅସୁବିଧା ତା' ପଛରେ କାରଣ । ଫଂକାବି ବି ସେହି ଗୋଟାଏ ବା ଦୁଇଟା । ତାକୁ ରୋକ ରୋକ ପିଂଧି ଆସନ୍ତି । ଯେହେତୁ ହାତରେ ଘଣ୍ଟା ନଥାଏ, ସ୍କୁଲ୍ ଆସିବା, ସ୍କୁଲ୍‌ରୁ ଯିବା, ଶ୍ରେଣୀରେ ପ୍ରବେଶ କରିବା ଆଦି ସବୁ କାମ ଅନୁମାନରେ ଚାଲେ । ଗାଁ ସ୍କୁଲ୍; ଅନ୍ୟ ଦୁଇ କଣ ଶିକ୍ଷକ ବି ଗାଁର; ମାତ୍ର ଅଳ୍ପ କେତେକଣଙ୍କୁ ବାଦ ଦେଲେ ସବୁଯାକ ପିଲା ବି ଗାଁର । ଏମିତି ସ୍ଥିତିରେ ନିୟମ ଓ ବେନିୟମ ମଧ୍ୟରେ ବିଶେଷ ପାର୍ଥକ୍ୟ ଦେଖିବାକୁ ମିଳେନା । ବାଟରେ, ଘାଟରେ, ବିଲରେ, ମନ୍ଦିର ହତାରେ, ତଥା ଭୋକି ଭାତରେ କେଉଁଠି ବି ଭେଟ ହୋଇଯାଏ ଶିକ୍ଷକଙ୍କ ସାଙ୍ଗେ । ଫଳରେ ଶିକ୍ଷକ ଓ ଛାତ୍ର ମଧ୍ୟରେ ଦୂରତା ରହେନା । ଯିଏ ଶିକ୍ଷକ, ସେ ପୁଣି ସଂପର୍କରେ 'ଦାଦା' ବା 'କାକା' । ଔପଚ଼ାରିକତା ଓ ଅନୌପଚ଼ାରିକତା ମଧ୍ୟରେ ଗାଁ ଜୀବନରେ ଖୁବ୍ କମ୍ ତଫାତ୍ । ମାତ୍ର ଗାଁରେ ବାରଂବାର ଭେଟ ହେଲେ ବି, ଲାଗେ, ସେ ହେଡ୍‌ମାଷ୍ଟ୍ରେ ବ୍ୟତୀତ ଅନ୍ୟ କୌଣସି ଚରିତ୍ର ପାଇଁ ଫିଟ୍ ହୋଇ ନ ପାରନ୍ତି । ଶିକ୍ଷିତ, ଅଥଚ଼ ଗାଁର ସଭା ଏମିତିରେ ତାଙ୍କର ବିଶେଷ ଭୂମିକା ନ ଥାଏ । ଆନ୍ତିରକ କଳିଗୋଳର ବିଚ଼ାର ବେଳେ ସେ 'ଫଂଚ଼' ନୁହନ୍ତି! ଲୋକ ସମାଗମର ପଛରେ ତାଙ୍କ ସ୍ଥାନ । ଅତି ପାରିବାରିକ କିମ୍ବା ଅନୌପଚ଼ାରିକ ପରିବେଶ ନ ହେଲେ ତାଙ୍କ ମୁହଁ ଖୋଲିବନି । କେବଳ ଛାତ୍ର କାହିଁକି, ଅନ୍ୟମାନେ ବି ତାଙ୍କୁ ନିଜ ଆଡୁ କିଛି ଆଗ କରି ନ ପଚ଼ାରିଲେ, ତାଙ୍କର ପାଟି ଖୋଲିବନି । ଯୌଥ ପରିବାର, ଭାଇ, ଭଉଣୀ, ବାପା, ମା' ଓ ତାଙ୍କର ନିଜର ଗୁଡ଼ାଏ ଛୁଆ ପିଲା । ଗୃହକର୍ତ୍ତା ସେ ନିଜେ । ସେହି ଦୃଷ୍ଟିରୁ ଦେଖିଲେ ସଂସାରୀ ମଣିଷ ଜଣେ । ପୁଣି, ସାମାଜିକ ବ୍ୟକ୍ତି ଭାବରେ ଗାଁର 'ତଳ' ଜାତି, ଅଶିକ୍ଷିତ, ଦିନ ମଜୁରିଆଙ୍କ ସାଙ୍ଗରେ ତାଙ୍କର ବସିବା-ଉଠିବା; ସେମାନଙ୍କୁ ନାଟକ ଶିଖାନ୍ତି; ତାଙ୍କ ପାଇଁ ନାଟକ ଲେଖନ୍ତି । ତାଙ୍କ ବାପା ନିରକ୍ଷର, ହେଲେ ସାଙ୍ଗରେ ଜଣେ ଆଶୁକବି ମଧ୍ୟ । ସେ ଶିକ୍ଷିତ ପୁଅର (ହେଡ୍‌ମାଷ୍ଟ୍ରେ) ଅତି ତଳସ୍ତର ଲୋକଙ୍କ ସହ ମିଶିବାଟାକୁ ଥଟ୍ଟାରେ ବିଦୃପ କରି ଗାଆନ୍ତି:

ବୁଚ଼ି ମାଠିଆରେ ବୁଚ଼ି ମାଠିଆ
ନାଟକ କରୁଛନ ଯେତେ ଗୋଡି କୋଠିଆ
ସେଥିଁ ଅଛେ ଆମର ଜପ ନିର୍ବୁଧିଆ

(କୁଜି ମାଠିଆ । ନାଟ କରୁଛନ୍ତି ଯେତେ ଦିନ ମଜୁରିଆ ଏବଂ ତହିଁରେ ରହିଛି ଆମ ବୁଦ୍ଧିହୀନ ଜପ)

ବାପାଙ୍କର ଏହି ଥଟ୍ଟାଳିଆ ବିଦୃପ ପୁଅ କପ ମଟାରୀଙ୍କୁ ବାଧେନା । ତାଙ୍କର ମଜୁରିଆ ଶ୍ରେଣୀର ଲୋକଙ୍କ ସହ ଅନ୍ତରଙ୍ଗତା ଉଣା ହୁଏନା । ସଂସାରୀ ତଥା ପୂର୍ଣ୍ଣତଃ ସାମାଜିକ ହେଲେ ସୁଦ୍ଧା ଗାଁରୁ ଅନତି ଦୂରରେ ସ୍ଥିତ ସ୍କୁଲ୍ ଘରେ ପୁଣି ସାର୍ ମାସ ମାସ ଧରି ସନ୍ୟାସୀ ଭଳି ମଢିରେ ରହିଯା'ନ୍ତି । ଘରୋଇ ଭାବେ ଉଚ୍ଚ ଶିକ୍ଷା ପାଇଁ ପ୍ରସ୍ତୁତି ତଥା ନାଟକ ଲେଖା ଆଦି ସେହି ସମୟରେ ହୁଏ; ନିରୋଳାରେ, ବିନା ଲାଇଟ୍, ବିନା ପଂଖାର ସ୍କୁଲ୍‌ର ଅଫିସ୍ କୋଠରୀରେ ! ସେତେବେଳେ ଲାଗେ 'ହେଡ୍‌ମାଷ୍ଟ୍ରେ' ଜଣେ ସନ୍ୟାସୀ; ପରିବାର ତାଙ୍କ ପାଇଁ ଏକ ଅହେତୁକ ବୋଝ ! ସଂସାର ଭିତରେ ରହି ସନ୍ୟାସୀ ଜୀବନ କିଇଁବାର କଳା ତାଙ୍କୁ ଭଲ ଭାବେ ଜଣା !

ଆମ ଗାଁ ସ୍କୁଲ୍‌ର ସେମିତି କିଛି ନାଁ ନ ଥିଲା । ପ୍ରାଇମେରୀ ପାଠ ପରେ ପଢ଼ାର ଏକମାତ୍ର ବିକଳ୍ପ ଭାବେ ଗାଁ ପିଲାଏ ସେଠି ବାଧ୍ୟରେପଢ଼ନ୍ତି । ସପ୍ତମ ଶ୍ରେଣୀ ଶେଷରେ ବୃତ୍ତି ପରୀକ୍ଷା ହୁଏ । ଯେଉଁ ସ୍କୁଲ୍ ପିଲାଙ୍କୁ ବୃତ୍ତି ପରୀକ୍ଷାରେ ସଫଳତା ମିଳେ, ସେହି ସ୍କୁଲ୍ ସ୍ଥାନୀୟ ଅଂଚଳରେ ପ୍ରସିଦ୍ଧି ପାଏ । ଆମ ସ୍କୁଲ୍‌କୁ ସେହି ପ୍ରସିଦ୍ଧି ମିଳିବାର କୌଣସି ଇତିହାସ ନ ଥିଲା । ବର୍ଷକୁ ଥରେ ଗୀତ, ଖେଳ, ତର୍କ, ନିବଂଧ ଲିଖନ ଆଦି ପ୍ରତିଯୋଗିତା ହେବାର ନଜିର ବି ସ୍କୁଲ୍‌ରେ ନାହିଁ । ସ୍କୁଲ୍ ହତା ବି ସଫା ସୁତୁରା ନୁହେଁ । 'ହେଡ୍‌ମାଷ୍ଟ୍ରେ' ଜଣେ ଦକ୍ଷ ପ୍ରଶାସକ ଯଦି ହୋଇଥାନ୍ତେ ସ୍କୁଲ୍‌ର ଏହି ଧରଣର ଅଧୋଗତି ହୁଅନ୍ତା ନାହିଁ ବୋଲି ସାଧାରଣରେ ମତ ପ୍ରକାଶ ପାଏ । ମାତ୍ର କିଏ କହିବ ? 'ହେଡ୍‌ମାଷ୍ଟ୍ରେ' ଗାଁର; ଅନ୍ୟ ଦୁଇଜଣ ଶିକ୍ଷକ ବି ଗାଁର । ଅନ୍ୟ ଗାଁର ହୋଇଥିଲେ ବା ତାଙ୍କୁ ଗାଁ ଲୋକ ତାଗିଦ କରି କହି ପାରନ୍ତେ !

ଏମିତି ଜଣେ ଅନାକର୍ଷଣୀୟ ବ୍ୟକ୍ତିତ୍ୱ ବିଶିଷ୍ଟ 'ହେଡ୍‌ମାଷ୍ଟ୍ରେ' ଦିନେ ମୋ ବ୍ୟକ୍ତିତ୍ୱକୁ ବଦଳେଇ ଦେଇଥିଲେ ! ଷଷ୍ଠ ଶ୍ରେଣୀ ପାସ୍ କଲା ଉତ୍ତାରୁ ଆମେ ଦଶ ଜଣ ମାତ୍ର ଛାତ୍ର ସପ୍ତମ ଶ୍ରେଣୀକୁ ଗଲୁଁ । ସ୍କୁଲ୍‌ର ଏକମାତ୍ର ଛାତ୍ରୀ ଜଣକ ଓ ଆଉ ନଅ ଜଣ ସହାଧ୍ୟାୟୀ ଷଷ୍ଠ ଶ୍ରେଣୀରେ ଫେଲ୍ ହୋଇ ରହିଲେ । ଅନେକ ତନ୍ମଧ୍ୟରୁ ପଢ଼ା ଛାଡ଼ିଲେ । ଗାଁରେ ତାହା ହିଁ ନିୟମ ! ଝିଅର ବଡ଼ ହେଲା ପରେ ପାଠ ବନ୍ଦ ହୁଏ; ଅନେକ ପୁଅ ଚାଷକାମ ଯୋଗ୍ୟ ହେଲେ ପଢ଼ା ଛାଡ଼ନ୍ତି । ତା' ପଛରେ ବାପା-ମାଙ୍କର ସହମତି ଥାଏ । କ୍ୱଚିତ ପିଲା ପଢ଼ା ଛାଡ଼ି ଦୁଃଖିତ ହୁଅନ୍ତି । "ଚାଷ କାମ ଯୋଗ୍ୟ" ହେବା ଅର୍ଥ ଗାଈ ଚରାଇବା, ଗୋବର ଗୋଟାଇବା ତଥା ବାପାଙ୍କୁ କ୍ଷେତରେ ସାହାଯ୍ୟ କରିବା । ସ୍କୁଲ୍ ପାଠ ତୁଳନାରେ ଏଥିରେ ପରିଶ୍ରମ

ଅଧିକ। ତା' ସତ୍ତ୍ୱେ, ସ୍କୁଲ୍‌ର ବଂଧନରୁ ମୁକ୍ତି ଓ ସ୍ୱାଧୀନତା ସେମାନଙ୍କୁ ଖୁସି ରଖେ। ଆମେ ଯେଉଁମାନେ ଅଭିଭାବକଙ୍କ ଚାପରେ ସ୍କୁଲ୍ ଯିବାକୁ ବାଧ୍ୟ ହେଉଁ, ଆମର ସେହି ସ୍କୁଲ୍ ତ୍ୟାଗୀ ସହପାଠୀମାନଙ୍କୁ ଦେଖି ଈର୍ଷା ହୁଏ। ସେତେବେଳେ ଜୀବନରେ ବଂଚି ରହିବାକୁ ହେଲେ ପାଠ ପଢ଼ିବାର ଆବଶ୍ୟକତା ରହିଥିବା କଥା ମନକୁ ପଶି ନଥାଏ। କିଏ ସହପାଠୀ ସ୍କୁଲ୍ ଛାଡ଼ିଲେ, ମନଦୁଃଖ ଲାଗେ ନିଶ୍ଚୟ, ମାତ୍ର, ତା'ପାଇଁ କାରଣ ହେଲା ତା' ସହ ଆଉ ସାଙ୍ଗ ହେବାର ବିଶେଷ ମଉକା ମିଳିବ ନାହିଁ !

ଆଦ୍ୟ କୈଶୋରର, ଏମିତି ଏକ ତରଳ ମନୋସ୍ଥିତିରେ ମୋର ଆସିଥିଲେ ଜପ ମାଷ୍ଟ୍ରେ, ହେଡ୍‌ମାଷ୍ଟ୍ରେ। ସପ୍ତମ ଶ୍ରେଣୀର (୧୯୭୩) ସାହିତ୍ୟ ବହିରେ ପ୍ରଥମ ପାଠ ଥାଏ "ସନ୍ଥ କବି ଭୀମ ଭୋଇ"। ପାଠର ଆରଂଭ ହୁଏ କବିଙ୍କ ପ୍ରଖ୍ୟାତ ପଂକ୍ତିରୁ :

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ।

ସାହିତ୍ୟ ଶିକ୍ଷକ 'ହେଡ୍‌ମାଷ୍ଟ୍ରେ'। ଖରାଛୁଟୀ ପରେ ସ୍କୁଲ୍ ଆରଂଭ ହେବାର ପ୍ରଥମ ବା ଦ୍ୱିତୀୟ ଦିନ ଆସି ସେ ଆରଂଭ କଲେ ପାଠଟି। ତେଣିକି ଦୁଇ-ତିନି ମାସ ଧରି ରୋଜ ଚାଲିଲା ସେହି ପଂକ୍ତିଟିର ବିଶ୍ଳେଷଣ। ପ୍ରତିଦିନ ସକାଳୁ ଖାଇ ଛୁଟୀ ଯାଏଁ। ଦିନଗଲା, ସପ୍ତାହ ଗଲା, ମାସ ଗଲା; ହେଲେ ଆମ ଦଶ ଜଣ ଛାତ୍ର ବିଶିଷ୍ଟ ସେହି ସପ୍ତମ ଶ୍ରେଣୀର ଛୋଟିଆ ଦୁନିଆଁଟି ଯେମିତି ସେଇଠି ଅଟକି ଗଲା। ଆତ୍ମା, ପରମାତ୍ମା, ମାନବୀୟ ମୂଲ୍ୟବୋଧ, କଳା ରାଜନୀତି, ଜୀବପ୍ରତି ଦୟାଭାବ, ଦର୍ଶନ- କ'ଣ ଯେ ନ ଆସିଛି ତହିଁରେ କହିହେବ ନାହିଁ। ଜାଣି, ସମଗ୍ର ବିଶ୍ୱକୁ ଏବଂ ତା' ମଧ୍ୟରେ ନିଜକୁ ଖୋଜିବା ଲାଗି ସନ୍ଥକବିଙ୍କ ପଂକ୍ତିଟି ଏକ 'ବାଇସ୍କୋପ' ଏବଂ ହେଡ୍‌ମାଷ୍ଟ୍ରେ ତା'ର ପରିଚାଳକ ! ପରସ୍ତ ପରସ୍ତ କରି ସେ କବାଟ ଖୋଲନ୍ତି; ଗହନରୁ ଗହନତର ସ୍ତରକୁ ସେ ଆମକୁ ବୁଝେଇବା ପ୍ରକ୍ରିୟାରେ ନେଇଯା'ନ୍ତି; ପୁଣି ନିଜେ ବି ଚାଲି ଚାଲି ତା' ଭିତରକୁ ଯାଆନ୍ତି; ଅନେକ କଥା ଆମେ ବୁଝି ପାରନ୍ତିନି; ତା' ସତ୍ତ୍ୱେ ବାଟ ହୁଡ଼ିବାର ନାହିଁ। 'ହେଡ୍‌ମାଷ୍ଟ୍ରେ' ଆମର ହାତ ଧରିଛନ୍ତି; ଅବାଟରେ କେବେ ଯିବାକୁ ଦେବେନି। କାହିଁ କେଉଁଠି ହଜି ଯିବାର ଡ଼ର ନାହିଁ, ରାସ୍ତା ଭୁଲିଯିବାର ନାହିଁ। ଜୀବନଟା ପାଠ ବହି ଯାକେ ସୀମିତ ନୁହେଁ; ବରଂ ବହିପାଠଟା ପୂରା ଜୀବନର ଏକ ଛୋଟିଆ ଅଂଶ ମାତ୍ର - ଏହା ଉଭୟ ସନ୍ଥକବିଙ୍କ ବାଣୀ ଓ ହେଡ୍‌ମାଷ୍ଟ୍ରଙ୍କ

ବ୍ୟାଖ୍ୟାନକୁ ଶୁଣି ବୁଝି ହେଲା ଭଳି ମନେ ହେଲା । ଏହି ଅବବୋଧ ଦେବାରେ ଉଭୟଙ୍କ ମଧ୍ୟରୁ ମୁଖ୍ୟ କିଏ ଓ ଗୌଣ କେଉଁଟା - ତାହା କହିବା ସେତେବେଳେ ଯେମିତି କଠିନ ଥିଲା, ଆଜି ବି ସେମିତି ମୁସ୍କିଲ । ଜୀବନର ଅର୍ଥ ଯେତିକି ଅନ୍ୟକୁ ତା' ପରିଚୟ ମାଗିବା, ତା' ଠାରୁ ଅଧିକ ନିଜକୁ ଚିହ୍ନିବା !

ଆଜ୍ଞାଙ୍କର ପାଠ ପଢ଼ାର ବିଶେଷତ୍ୱ ହେଲା ଯେ ଚଉକିରୁ ସେ ଉଠିବେ ନାହିଁ; କଳାପଟାରେ କିଛି ଲେଖିବେ ନାହିଁ; ବଡ଼ ପାଟିରେ କହିବେ ନାହିଁ । ମୋଟ ଦଶ ଜଣ ପିଲା ଶ୍ରେଣୀରେ । ବେଶ କେବଳ ସେମାନଙ୍କୁ ତାଙ୍କ କଥା ଶୁଭାଯିବ । ତାଙ୍କ ବ୍ୟାଖ୍ୟାନରେ "ତୁମେ ଏହା କର ବା ନ କର" ବୋଲି କେବେ ନୀତିବାଣୀ ବି ନ ଥାଏ । ଅର୍ଥାତ୍ ଆଦର୍ଶ ଅଧ୍ୟାପନାର କୌଣସି ଲକ୍ଷଣ ନ ଥାଏ ତାଙ୍କ ପାଠ ପଢ଼ାରେ । ଗୋଟାଏ ପିରିଅଡ୍ ଚାଲେ ଦିନ ଦଶଟାରୁ ଗୋଟାଏ ଯାଏଁ । ଆଜ୍ଞାଙ୍କ ହାତରେ ଘଣ୍ଟା ନାହିଁ; ସ୍କୁଲ୍‌ର ବି ଘଣ୍ଟା ନାହିଁ । ପୁଣି ନିଜେ ସେ ପ୍ରଧାନ ଶିକ୍ଷକ । କିଏ କହିବ ତାଙ୍କୁ ? କ୍ଲାସ୍ ଚାଲିଥିବ ଯେ ଚାଲିଥିବ । ଅନତି ଦୂରରେ ସ୍ଥିତ ପ୍ରାଥମିକ ସ୍କୁଲ୍ ପିଲାଏ ଦିନ ଗୋଟାଏରେ ରିସେସ୍‌କୁ 'ଖାଇଛୁଟୀ' କହି ବଡ଼ ପାଟିରେ ଗୁହାଳରୁ ବାଛୁରୀ ଫିଟିଲା ପରି ଯେତେବେଳେ ରାସ୍ତାରେ ଦଉଡ଼ନ୍ତି, ଆଜ୍ଞା ପିରିଅଡ଼ ଶେଷ କରନ୍ତି । ଜାଣି, ତାଙ୍କ ଧ୍ୟାନ ଭଗ୍ନ ହେଲା !

ଏମିତି ଜଣେ ଅନାଦର୍ଶ ଶିକ୍ଷକଙ୍କ ସନ୍ଥକବିଙ୍କୁ ନେଇ ବ୍ୟାଖ୍ୟାନ ପରେ ପୁଣି ଆମେ ମାନେ ଶ୍ରେଣୀରେ ନିରାମିଷାଶୀ ହେବାକୁ ଗୋଷ୍ଠୀଗତ ଭାବେ ନିଷ୍ପତ୍ତି ନେଇଛନ୍ତି; ଜୀବନରେ ମିଛ ନ କହିବାକୁ ପ୍ରତିଜ୍ଞା କରିଛନ୍ତି; ଦଳବଦ୍ଧ ହୋଇ ଗାଁ ଦାଣ୍ଡ ସଫା କରିଛନ୍ତି; ମୁଷ୍ଟିଭିକ୍ଷା କରି ଦରିଦ୍ର ନିବାରିଣୀ ପାଣ୍ଠି ତିଆରିଛନ୍ତି । କେବଳ ସେତିକି ନୁହେଁ, ସମାଜ ସଂସ୍କାର ଉଦ୍ଦେଶ୍ୟରେ ଆଜ୍ଞା 'ଯୁଗ ସୈନିକ' ନାମରେ ନାଟକଟିଏ ଆମ ପାଇଁ ଲେଖିଲେ, ଯାହାକୁ ଆମେ, ଅର୍ଥାତ୍ ସେହି ମଧ୍ୟ ଇଂରାଜୀ ବିଦ୍ୟାଳୟର ଛୁଆମାନେ ମଂଚ୍ନ କଲେ ଗାଁ ଦାଣ୍ଡରେ । କେତେ ସାହସ ସେତେବେଳେ ! ଲାଗେ, ସବୁ ଆମେ କରି ପାରିବୁ ! ଏହି ଆଶାବାଦ ଓ ସାମର୍ଥ୍ୟ ସୃଷ୍ଟି କରିବା ମୂଳରେ ଥାଏ ହେଡ୍‌ମାଷ୍ଟ୍ରେଙ୍କର ପ୍ରଚ୍ଛନ୍ନ ସହଯୋଗ, ଯଦିଓ ସେ ନାଟକ ବେଳେ ଆମ ସାଙ୍ଗରେ ନଥା'ନ୍ତି, ନା ଥା'ନ୍ତି ଦାଣ୍ଡ ସଫା କଲାବେଳେ ! ଭାରି ବିଚିତ୍ର ବ୍ୟକ୍ତିତ୍ୱ ତାଙ୍କର । ତା' ସତ୍ତ୍ୱେ, ସେ ନାହାନ୍ତି ବୋଲି ହତୋତ୍ସାହିତ ଲାଗେନି । ବରଂ, ଲାଗେ ସଦା ସେ ସାଙ୍ଗରେ ଅଛନ୍ତି; କାହିଁ କେଉଁଠି ଆମେ ଭୁଲ କଲେ ସେ ମନରେ ଦୁଃଖ ପାଇବେ !

ଏହି ଭାବନା ସେତେବେଳେ ଆମକୁ କାମିକା କରାଏ । ଶିକ୍ଷକ ଜଣେ ଯଦି

ଏଯାଏଁ ନେଇ ଆସିଲା ପିଲାକୁ, ସେ କି କମ କଥା ? ପିଲା ଦିନ ସେ । ବାଲିଘର ଭାଙ୍ଗିଲା ପରି ସେତେବେଳର ଅନେକ ନିଷ୍ପତ୍ତି ଆମର ଭାଙ୍ଗି ଯାଇଛି । ମାତ୍ର ତା' ପାଇଁ ସେ (ହେଡ୍‌ମାଷ୍ଟ୍ରେ) ଦାୟୀ ହୋଇ ନ ପାରନ୍ତି । ଭୀମ ଭୋଇଙ୍କ ଭଳି ନିଜର ସୀମିତ ପରିଧିରେ ବିଶ୍ୱ ଦୃଷ୍ଟିଟିଏ ଦେବାକୁ ସେ ପ୍ରୟାସ କରିଛନ୍ତି; ପରୀକ୍ଷାରେ ଭଲ ନମ୍ବର ରଖିବାଟା କେବଳ ଜୀବନର ଲକ୍ଷ୍ୟ ହୋଇ ନ ପାରେ ବୋଲି ବାଟଟିଏ ଦେଖାଇଛନ୍ତି- ସେ କିଛି କମ କଥା ନୁହେଁ ! ବ୍ୟୟ ବହୁଳ ତାଲିମ ପ୍ରାପ୍ତ ଶିକ୍ଷକ ନ ହେବା ସତ୍ତ୍ୱେ ଶିକ୍ଷକତାକୁ ଜୀବନ ଧର୍ମ କରି ବଞ୍ଚିବାକୁ ଚାହିଁଥିଲେ ସେ । ଏଥିପାଇଁ ସେ ଅନନ୍ୟ !

ଆଜ୍ଞାଙ୍କର ପାଠ ପଢ଼ା ଶୈଳୀର ବିଶେଷତ୍ୱ ହେଲା ଯେ ଆମେ ଛାତ୍ରମାନେ ସେହି ପଢ଼ା ଭିତରେ ନିର୍ଭୟରେ ତାଙ୍କୁ ତାତ୍ତ୍ୱିକ ପ୍ରଶ୍ନ ଠାରୁ ଆରଂଭ କରି ବ୍ୟକ୍ତିଗତ ପ୍ରଶ୍ନ ଯାଏ, ଯାହା ମନକୁ ଆସେ ପଚାରନ୍ତି ଏବଂ ଆଜ୍ଞା ବିନା ବିରକ୍ତିରେ ତା'ର ଉତ୍ତର ଦିଅନ୍ତି । "ଆଜ୍ଞା, ଆପଣ ବିଡ଼ି କାହିଁକି ପିଅନ୍ତି ?" "ଗାଁରେ ଅମୁକ ଉପରେ ଯେତେବେଳେ ଅନ୍ୟାୟ ହେଲା, ଆପଣ କାହିଁକି ସଭାରେ ତା'ର ପକ୍ଷ ନେଲେ ନି ?" କୌଣସି ପ୍ରଶ୍ନ ସେତେବେଳେ ଲାଗେ ପାଠ ବାହାରେ ନୁହେଁ । ଆଜ୍ଞା ସନ୍ତୋଷ ଜନକ ଉତ୍ତର ଦେଇ ନ ପାରିଲେ ବି ଲାଗେନି ଯେ ସେ ହାରି ଯାଇଛନ୍ତି । ଆମକୁ 'ତୁ' ସ୍ଥାନରେ 'ତୁମେ' ବୋଲି ସଂବୋଧନ କରନ୍ତି । ଯେମିତି ସେ ଆମର ସାଙ୍ଗ । ଗାଳି କରନ୍ତି ନି; ମାଡ଼ ମାରିବା ତ ପଛ କଥା । ଛାତ୍ରଙ୍କ ବ୍ୟବହାରକୁ ନେଇ ସେ ମନଦୁଃଖ କଲେ ହିଁ ଲାଗେ ଆମ ପାଇଁ ତାହା ବଡ଼ ଦଣ୍ଡ !

୧୯୬୬ରେ ସାଇକେଲରେ ଗାଁରୁ ସୋହେଲା ଯାଉଥିବା ବେଳେ ହୃଦଘାତରେ ଆଜ୍ଞାଙ୍କର ପ୍ରାଣ ଗଲା । ଅନେକ ପାରିବାରିକ ଦୁଷ୍ଚିନ୍ତା ଭିତରେ ରହୁଥିଲେ ସେ । ମୃତ୍ୟୁବେଳକୁ ମାତ୍ର ୫୦ ବା ୫୨ ବର୍ଷ ହେଉଥିବ । ଶ୍ରଦ୍ଧାଞ୍ଜଳି ଦେବା ପାଇଁ ଗାଁ ସ୍କୁଲ୍‌ରେ ସଭାଟିଏ ହେଲା । ତା' ପାଇଁ ସେ କଲେଜରେ ଦାଖିଲା ନେଲାବେଳେ ଯେଉଁ କଳାଧଳା ପାସପୋର୍ଟ ସାଇଜର ଫଟୋଟିଏ ଉଠାଇଥିଲେ, ତା' ହିଁ ମିଳିଲା । ଖୁବ୍ ପୁରୁଣା ଫଟୋ । ଚିହ୍ନା ପଡୁ ନ ଥିଲେ ତହିଁରେ । ତାଙ୍କ ବ୍ୟକ୍ତିତ୍ୱ ଆଗରେ ଫଟୋଟି ନିହାତି ସାନ ଓ ଅପରିଚିତ ମନେ ହେଉଥାଏ । ମାଟିର ମଣିଷ ସେ; ମାଟିରେ ମିଶିବା ଯେମିତି ତାଙ୍କ ନିୟତି ! ସ୍ମୃତିର ଶିକ୍ଷକ ହେବା ପାଇଁ ତାଙ୍କଠାରେ ଯେମିତି କୌଣସି ଆକାଂକ୍ଷା ନାହିଁ । ଏମିତିକି ଭଲ ଚିହ୍ନି ହେଲା ଭଳି ଫଟୋଟିଏ ବି ଛାଡ଼ି ଯାଇ ନାହାନ୍ତି !

ମାଧ୍ୟମିକ ଶିକ୍ଷା ପାଇଁ ଆମେ ଯାଆନ୍ତି ସୋହେଲା, ଗାଁରୁ ଦୂର ପାଞ୍ଚ କି.ମି.। ସହର ଭଳି ସେ ବଡ଼ ଗାଁଟିଏ। ଗାଁ ଭାଷାରେ ମାଧ୍ୟମିକ ଶିକ୍ଷାର ସମାର୍ଥବୋଧକ ଶବ୍ଦ ହୁଏ "ସୋହେଲା ପାଠ"। ବାପା-ମା' ଗର୍ବରେ କହନ୍ତି ପୁଅ ଗାଁ ପାଠ ସାରି ସୋହେଲା ପାଠ ପଢ଼ିବାକୁ ଗଲାଣି। ପ୍ରାୟ ଆଠ-ଦଶ କି.ମି.ର ସେହି ବିଶାଳ ପରିଧିରେ ମାଧ୍ୟମିକ ଶିକ୍ଷା ଲାଗି ସୋହେଲା ହାଇସ୍କୁଲ୍ ହୁଏ ଏକମାତ୍ର ବିକଳ୍ପ। ଚାରି ଶହ ପ୍ରାୟ ଛାତ୍ର-ଛାତ୍ରୀ। ଛାତ୍ରୀମାନେ ମୁଖ୍ୟତଃ ସୋହେଲାରୁ ଆସନ୍ତି। ପୁଅ ପିଲାଏ ଆସନ୍ତି ସୋହେଲା ଓ ଗାଁମାନଙ୍କରୁ। ଆମ ଗାଁର ତିରିଶ ଜଣିଆଁ ସ୍କୁଲ୍ ଓ କାହିଁ ସେ ବିରାଟ ସୋହେଲା ହାଇସ୍କୁଲ୍ ! କିଛି ଦିନ ମତେ ବାଉଳା ଲାଗିଗଲା। ହଜିଗଲି ଯେମିତି ମୁଁ ସୋହେଲାର 'ବଡ଼' ପରିବେଶରେ।

ଗର୍ଭଣା (ଆମ ଗାଁ) ଗୋଟାଏ ବଡ଼ ଗାଁ। ଅଷ୍ଟମରୁ ଏକାଦଶ ଶ୍ରେଣୀ ମଧ୍ୟରେ କେବଳ ଆମ ଗାଁରୁ କୋଡ଼ିଏ-ପଚିଶ ପିଲା ସୋହେଲା ଯା'ନ୍ତି। ଏ ଆମ ପାଇଁ ଏକ ଶକ୍ତି। ସ୍କୁଲ୍‌ରେ କିଛି କ'ଣ ଗଣ୍ଡଗୋଳ ହେଲେ ଆଗ କରି ସନ୍ଦେହ ଘେରକୁ ଆସନ୍ତି ଗର୍ଭଣା ପିଲା ! ଆମ ଭିତରେ ଦୁଇ ଚାରି ଜଣକୁ ବାଦ ଦେଲେ ଅନ୍ୟମାନେ ପାଦରେ ଯାଆନ୍ତି ସ୍କୁଲ। ସେହି ଦୃଷ୍ଟିରୁ ସାଇକେଲ ଯାତ୍ରୀଙ୍କ ତୁଳନାରେ ପଦଯାତ୍ରୀ ହେଲେ ସଂଖ୍ୟା ବହୁଳ। ପ୍ରାୟ କାହାରି ପାଦରେ ଚପଲ ନ ଥାଏ। ଦିନ ଦଶଟାରେ ସ୍କୁଲ୍। ସକାଳ ନଅଟାରୁ ବାହାରି ଫେରନ୍ତି ସଂଧ୍ୟା ପାଞ୍ଚଟାରେ। ମଝିରେ ଟିଫିନ୍ ଖାଇବା କଥା। ଅନେକଙ୍କ ସେ ସାମର୍ଥ୍ୟ ନ ଥାଏ। କିଛିଦିନ ପରେ ଟିଫିନ ନାଁରେ ଘରୁ ମୁଢ଼ି ଆଣୁଥିବା ଅଳ୍ପ କେତେଜଣ ପିଲାଙ୍କ ସଂଖ୍ୟା ଊଣା ହେବାକୁ ଲାଗେ। ତେଣୁ, ରିସେସ୍'ରେ ଟିଫିନ୍ ନ ଖାଇବା ପିଲାଙ୍କ ସଂଖ୍ୟା ଅଧିକ। ଏପରିକି ପ୍ରତିଟି ବିଷୟରେ ପାସ୍ ମାର୍କ ରଖୁଥିବା ପିଲା ବି ସଂଖ୍ୟାନ୍ୟୂନ। ତେଣୁ, ସଂଖ୍ୟା ବହୁଳ ଫେଲ୍ ପିଲା ବି ପାଠରେ ଊଣା ବୋଲି ଲଜ୍ୟା ଅନୁଭବ କରନ୍ତି ନାହିଁ। ମୋଟ କଥା ହେଲା, କିଛି ନ ଥାଇ ବି ଆମ ଭିତରେ ଥିଲାଭାବ ସଦା ରହିଥାଏ ଭରପୂର ହୋଇ। ଏହି ଆତ୍ମବିଶ୍ୱାସ ହିଁ ପଢ଼ିବା ପାଇଁ, ବଢ଼ିବାପାଇଁ ବଳ ଯୋଗାଏ; ଅହେତୁକ ଦୟାଭାବରୁ ବିମୁକ୍ତ କରେ; ତଥା ହୀନମନ୍ୟତାରୁ ଉନ୍ମୁକ୍ତ କରାଏ। ସାଙ୍ଗରେ ବେଳେବେଳେ ଏହା 'ଦାଦାଗିରି'ର ରୂପ ନିଏ। ଆମକୁ ଭଲ ପାଉଥିବା ଶିକ୍ଷକ ବି ଆମର ଦଳଗତ ପରାକ୍ରମ ଦେଖି ତ୍ରାହି ତ୍ରାହି ଡାକନ୍ତି। ଆଦ୍ୟ ଯୌବନର ଚଗଲାମି ପରବର୍ତ୍ତୀ ସମୟରେ ଆମକୁ ବାଳୁଙ୍ଗା କରିଦେବ ବୋଲି ଅଭିଭାବକମାନେ ବି ଡରନ୍ତି।

କୈଶୋରାବସ୍ଥା ସେ। ଏମିତି ଏକ ନିର୍ଣ୍ଣାୟକ ମୋଡ଼ରେ ତାହା ନେଇ ଆମକୁ ପହଞ୍ଚାଇଥାଏ ଯେ ଆଗରୁ ହେଡ୍‌ମାଷ୍ଟ୍ରେଙ୍କଠାରୁ ଶୁଣିଥିବା ଭୀମ ଭୋଇଙ୍କ ବାଣୀର ଆଉ ପ୍ରଭାବ ନ ଥାଏ। ଥରେ ପାଣି ପଡ଼ିଲେ ଯେମିତି ଗଛଟିଏର ବଞ୍ଚିବା ସୁନିଶ୍ଚିତ ହୁଏନା, ଠିକ୍ ସେମିତି କଥା। କୈଶୋରାବସ୍ଥାର ଏଭଳି ଏକ ସଂଧିକ୍ଷଣରେ ଆସନ୍ତି ମୋର ଜଣେ କାକା ଓ ହାଇସ୍କୁଲ୍‌ର ଶିକ୍ଷକ ଗିରିଜା ଶଙ୍କର ଆଚାର୍ଯ୍ୟ। ଗାଁରେ ରହନ୍ତି ସେ; ପ୍ରତିଦିନ ଆମ ଭଳି ହାଇସ୍କୁଲ୍‌କୁ ଯାଆନ୍ତି, ଯେହେତୁ ସେ ସାଇକଲରେ ଆସନ୍ତି, ଆମମାନଙ୍କ ଡେର ପରେ ଘରୁ ବାହାରନ୍ତି; ଫେରିବା ବେଳେ ବି ସ୍କୁଲ୍‌ରୁ ଡେରିରେ ଫେରନ୍ତି। ରାସ୍ତାରେ କିଏ ରହି ଯାଇଥିଲେ, ଅର୍ଥାତ୍ ସ୍କୁଲ୍ ପହଞ୍ଚିବାରେ ତା'ର ଡେରି ହେଲେ ତାକୁ ସାଇକେଲରେ ନେଇ ଆଣନ୍ତି। ହାଇସ୍କୁଲ୍‌ରେ ଆମେ ତାଙ୍କର ଚାରି/ ପାଞ୍ଚ ଜଣ ଭାଇ, ପୁତୁରା ଆଦି। ଶିକ୍ଷକ ଭାବରେ ତାଙ୍କର ଯେଉଁ ସମ୍ମାନ, ତହିଁରୁ ଆମକୁ ବି ଭାଗ ମିଳେ। ଫଳରେ ଚାରିଶହ ପିଲାଙ୍କ ବଡ଼ ସ୍କୁଲ୍‌ରେ ବି ପରେ ବାଉଳା ଲାଗିଲାନି। ଗାଁର ସବୁ ପିଲାଙ୍କ ଲାଗି କାକା ସ୍କୁଲ୍‌ରେ ଅଭିଭାବକ। ଗର୍ଭଣା ପିଲା କିଛି ବଦମାସି କଲେ ତାଙ୍କୁ ହିଁ ସଫେଇ ଦେବାକୁ ହୁଏ। ଠିକ୍ ସେମିତି, ଗାଁରେ ବି ତାଙ୍କ ନଜର ଆମ ଉପରେ। ସଂଧ୍ୟାରେ ପ୍ରତିଦିନ ପାଠ ପଢ଼ି ବସିବା ପଛରେ ବାପାଙ୍କ ଡର ଥାଏ, ମାତ୍ର ତା'ଠାରୁ ଅଧିକ ରହିଥାଏ କାକାଙ୍କ ଡର। ଭଲ ଶିକ୍ଷକ ସେ; ପଢ଼ାନ୍ତି ଯେମିତି, ଭୁଲ ପାଇଁ ଶାସ୍ତି ଦିଅନ୍ତି ସେମିତି। ତାଙ୍କରି ସେତେବେଳର ଇତିହାସ ପଢ଼ା ମତେ ଅଧିକ ଇତିହାସ ପଢ଼ିବା ପାଇଁ ପ୍ରୋତ୍ସାହିତ କରିଛି। ଇତିହାସ ସଂବଂଧୀୟ ଦର୍ଶନ (ଇତିହାସ ତତ୍ତ୍ୱ) ହୁଏତ ତାଙ୍କୁ ବିଶେଷ ଜଣା ନାହିଁ। ମାତ୍ର ଯେଉଁ ତନ୍ମୟତାର ସହିତ ସେ ଇତିହାସର ଚରିତ୍ରମାନଙ୍କୁ ଶ୍ରେଣୀଗୃହରେ ଉପସ୍ଥାପିତ କରନ୍ତି, ଲାଗେ ଏସବୁ ଚରିତ୍ରମାନଙ୍କୁ ମୋର ଅଧିକ ନ ଜାଣିଲେ ପୂର୍ଣ୍ଣ ସନ୍ତୁଷ୍ଟୀ ମିଳିବ ନାହିଁ।

କୈଶୋରାବସ୍ଥା ସେ। ଅନେକ ସମୟରେ ଜଣା ବି ପଡ଼େନି - ଭୁଲ କେଉଁଠି ? ଠିକ୍ କ'ଣ ? ଏମିତି ବେଳାରେ ସାହା ସେହି କାକା। ଅଷ୍ଟମ ଶ୍ରେଣୀ ପଢୁଥିବା ବେଳେ ଆମେ କେତେଜଣ ସାଙ୍ଗ ମିଶି ରଥଯାତ୍ରା ଦିନ ଲଟେରୀ ଭଳିଆ ଖେଳଟିଏ ଆରଂଭ କଲୁ। ଦଶ ପଇସା ଦେଇ 'ଭାଗ୍ୟଶାଳୀ' ବିଜେତା ଟଙ୍କାକର ସାମଗ୍ରୀ ଜିଣିବେ ! ଆମ ନଜରରେ ଭାରି ଅନନ୍ୟ ସେ ଖେଳ; ଅଭିଭାବକମାନେ ପ୍ରଶଂସା କରିବା କଥା। ମାତ୍ର ପର ଦିନ ସ୍କୁଲ୍‌ରେ ଏଥିପାଇଁ କାକାଙ୍କଠାରୁ ବହୁତ ଦଣ୍ଡ ମିଳିଲା - "ବଡ଼ ହେଲେ କ'ଣ ଜୁଆ, ସଟ୍ଟାବାଜ ହେବାକୁ ଇଚ୍ଛା ?"

ସେତେବେଳେ ମୁଁ ଜାଣିଲି ଯେ ଏହା ଜୁଆ ଭଳି ଏକ ନ କରିବା କାମ !

କୈଶୋରାବସ୍ଥାର ବିଶେଷତ୍ୱ ହେଲା ଯେ କିଶୋରଟିର ମନ ଓ ଶରୀରରେ ଅଫୁରନ୍ତ ଶକ୍ତି ଥାଏ; ତା'ର ଇଚ୍ଛା, ଶକ୍ତିର ବିନିଯୋଗ ହେଉ; ତା'ର ସ୍ୱାତନ୍ତ୍ୟଭରା ବ୍ୟକ୍ତିତ୍ୱକୁ ଅନ୍ୟମାନେ ସ୍ୱୀକାର କରନ୍ତୁ। ହେଲେ ତା' ପାଇଁ ମାଧ୍ୟମ କ'ଣ ? ରାସ୍ତାଘାଟରେ ଉତ୍ପାତ କରିବା, ଝିଅବୋହୂଙ୍କ ଉପରେ ଦୁର୍ବ୍ୟବହାର କରିବା, ବିଡ଼ି ଟାଣିବା, ଅନ୍ୟ ଗାଁ ପିଲାଙ୍କ ଆଗରେ ବଦମାସି କରିବା ଅଥବା ଗାଧୁଆ ତୁଠରେ କୌଣସି ନା କୌଣସି କାଣ୍ଡ ଭିଆଇବା। ଏସବୁକୁ ବାଦ ଦେଲେ ଆମ ପାଇଁ ଆଉ ଏକ କାମ ହେଲା ପାଞ୍ଚ କି.ମି. ଦୂର ସ୍କୁଲ୍‌କୁ ପାଠ ପଢ଼ିବାକୁ ଗଲାବେଳେ ଗାଡ଼ି ମୋଟରକୁ ଟେକା ଫିଙ୍ଗିବା। ଏସବୁ ଉତ୍ପାତରୁ ଯଥା ସଂଭବ ନିବୃତ୍ତ ରଖିବାକୁ ଗାଁରେ, ସ୍କୁଲ୍‌ରେ ସବୁଠି ସେହି କାକା। କେବଳ ସେତିକି ନୁହେଁ, ଆମ ଶକ୍ତିର ଏକ ସକାରାତ୍ମକ ଉପଯୋଗ ପାଇଁ ବର୍ଷକୁ ଦୁଇ ଥର, ଗ୍ରୀଷ୍ମ ଓ ଦଶହରା ଛୁଟୀ ବେଳେ, ନାଟକ କରାନ୍ତି। ନିର୍ଦ୍ଦେଶକ ସେ; ଆମ ସାଙ୍ଗରେ ଅଭିନେତା ବି ସେ ! ପୁଣି ଗାଁ କୀର୍ତ୍ତନ୍ୟରେ ସେ ଆଗରେ। ସେତେବେଳେ ଲାଗେ, ସାଙ୍ଗ ସେ ! ତାଙ୍କ ଭଳି ଶିକ୍ଷିତ ବ୍ୟକ୍ତିମାନଙ୍କ ସଂପୃକ୍ତି ଯୋଗୁଁ ଗାଁ କୀର୍ତ୍ତନ୍ୟ ଦଳ ଗାଁର 'ତଳ', 'ଉପର', ପଢ଼ା-ଅପଢ଼ା, ସମସ୍ତଙ୍କ ପାଇଁ ମନୋରଂଜନର ମାଧ୍ୟମ ହୁଏ। ପୁଣି ଗାଁର କାହିଁ କେଉଁଠି ବିବାହ ବା ଶ୍ରାଦ୍ଧକ୍ରିୟା ଆଦି କାର୍ଯ୍ୟରେ ବି କାକା ସ୍ୱେଚ୍ଛାସେବୀ ଭୂମିକାରେ। ତାଙ୍କରି ନିର୍ଦ୍ଦେଶନାରେ ଆମେ ପୋଖରୀ ତୁଠ ସଫା କରୁଥିଲୁ; ଗାଁ ଦାଣ୍ଡର ଅଳିଆ ସଫା କରୁଥିଲୁ ଆମେ ସ୍କୁଲ୍ ଯିବା ଆଗରୁ ନୋହିଲେ ସ୍କୁଲ୍‌ରୁ ଫେରି। ଜପ ମାଷ୍ଟ୍ରେଙ୍କଠାରୁ କାକା ଭିନେ, କାରଣ ସବୁ କାମରେ ସେ (କାକା) ନିଜେ ସକ୍ରିୟ ହୋଇ ଭାଗ ନିଅନ୍ତି। କୌଣସି ପିଲାଠାରୁ ତାଙ୍କ ପ୍ରତ୍ୟକ୍ଷ ସଂପୃକ୍ତି କମ୍ ମନେ ହୁଏନି। ସେତେବେଳେ ଲାଗେ, କାକା ଅନ୍ୟ କୌଣସି ବଡ଼ ଉଦ୍ଦେଶ୍ୟ ନେଇ ନୁହେଁ, ବରଂ ନିଜେ ଆନନ୍ଦ ନେବା ପାଇଁ ସବୁ କାମରେ ନିମଜ୍ଜିତ ହୋଇଛନ୍ତି। କାମ କରିବା ଭିତରେ ତାଙ୍କ ଆତ୍ମ-ସେବା ମନୋଭାବ ରହିଥାଏ ବୋଲି କାମ କଲାବେଳେ ଆତ୍ମ-ଦୟା ପ୍ରବୃତ୍ତି ଆସି ପାରେନା। ଏହା ହିଁ ତାଙ୍କ ଶିକ୍ଷକତା ଓ ବ୍ୟକ୍ତିତ୍ୱର ବିଶେଷତ୍ୱ ! ଶ୍ରେଣୀ ଗୃହର ପାଠପଢ଼ା ଓ ଶ୍ରେଣୀ ବାହାରର ସାମାଜିକ ଜୀବନ ମଧ୍ୟରେ ଥିବା ଅନୁପୂରକତାକୁ ସେ ସାଧ୍ୟମତେ ନିର୍ବାହ କରୁଥିଲେ ବୋଲି, ବୋଧହୁଏ, ଭରପୂର ଆନନ୍ଦ ନେଉଥିଲେ। ଶିକ୍ଷକତା ତାଙ୍କ ପାଇଁ ତ୍ୟାଗ ହେବା ବଦଳରେ ଏକ ଜୀବନଶୈଳୀ ହୋଇ ପାରିଥିଲା। ଏଭଳି ଜଣେ ଶିକ୍ଷକ ବା ଜୀବନରେ ନିରାଶ ହେବ କାହିଁକି ?

ସେତେବେଳେ ଟ୍ୟୁସନର ପ୍ରଚଳନ ବିଶେଷ ନ ଥିଲା। ଗାଁରେ ତ ଆଦୌ ନୁହେଁ। କାକା ଟ୍ୟୁସନ ପଢ଼ାନ୍ତି ନାହିଁ। ସ୍କୁଲ୍‌ରୁ ଫେରି ଶହେ ପ୍ରତିଶତ ଗାଁ ଲୋକ ହେବାରେ ହିଁ ତାଙ୍କ ଖୁସୀ। ଆମେ ଗୋଟାଏ କୁଟୁମ୍ବର ହେବା ସତ୍ତ୍ୱେ କୌଣସି ଅବୁଝା ପାଠ ଭୟରେ ତାଙ୍କ ପାଖକୁ ବୁଝିବାକୁ ବି ଯାଆନ୍ତି ନାହିଁ। ସଂଧ୍ୟାରେ ଅଭ୍ୟାସ ମତେ ଆମେ ପଢ଼ି ବସିଲେ ସେ ଖୁସୀ; ପଢ଼ି ନ ବସିବା ଦଣ୍ଡନୀୟ ଅପରାଧ। ମୁଁ ବେଶୀ ପଢ଼େ ଉପନ୍ୟାସ, ଗୋୟେନ୍ଦା ଗପ। ବସ୍ତାନି ଭିତରେ ଯେମିତି ହେଲେ ଖଣ୍ଡେ ଦି'ଖଣ୍ଡ ମିଳିଯିବ। କିନ୍ତୁ କାକା ନିଜର ସୀମା ଲଂଘି ବସ୍ତାନି ଅଣ୍ଡାଳନ୍ତି ନାହିଁ। ଏହା କିଛି କମ୍ ସାହାଯ୍ୟ ନୁହେଁ ? ସାହିତ୍ୟ ରୁଚି ମୋର ଜନ୍ମିଲା ସେହି ନିଷିଦ୍ଧ ରଚନା ଶ୍ରେଣୀର ଗୋୟେନ୍ଦା ଗପ ପଠନରୁ।

ଏକାଦଶ ଶ୍ରେଣୀର ପରୀକ୍ଷା ଆମ ପାଇଁ ବଡ଼ ଘାଟି। ସେ ଯାଏଁ ଆସିଲା ବେଳକୁ ଆମ ଗାଁରୁ ମାତ୍ର ଜଣେ ମୁଁ ରହି ଯାଇଥାଏଁ। ଆଉ ସହପାଠୀ ମାନେ ଆଗରୁ ଅଟକି ଗଲେଣି। ସ୍କୁଲ୍‌ର ଅନ୍ୟ ମ୍ୟାଟ୍ରିକ୍ ପରୀକ୍ଷାର୍ଥୀମାନେ ଦୁଇ/ ତିନି କି.ମି. ଦୂର ଗାଁରେ। ପରୀକ୍ଷା ପୂର୍ବରୁ ପ୍ରସ୍ତୁତି ପାଇଁ ଦୁଇ/ ତିନି ମାସ ସମୟ ମିଳେ। ଏକା ମୁଁ ଗାଁରେ; ପ୍ରସ୍ତୁତି କରିବି କେମିତି ? ଏହି ବେଳାରେ ପ୍ରଶ୍ନୋତ୍ତର ମାନ ଲେଖି କାକାଙ୍କୁ ଦେଖାଏଁ ଏବଂ ସେ ଗୋଟାଏ ରାତି ବା ଦିନ ମଧ୍ୟରେ ମୋର ଲେଖାକୁ ତନ୍ନ ତନ୍ନ କରି ଦେଖି ଫେରାଇ ଦିଅନ୍ତି। ଭୁଲ୍ ଉପରେ ନାଲି ଗାର ପଡ଼େ। ସେହି ଗୋଟାଏ କୁଟୁଂବ ଭିତରେ ରହି ବି ପରୀକ୍ଷା ପ୍ରସ୍ତୁତିକୁ ନେଇ ଆମ ଦୁହିଙ୍କ ମଧ୍ୟରେ ବାର୍ତ୍ତାଳାପ ନାହିଁ; ଖାତା ଦିଆ ନିଆରେ ମୁଁ ପାଠ ବୁଝେ। ଏତକ ହୋଇ ନ ଥିଲେ ମୋର ମ୍ୟାଟ୍ରିକ୍‌ରେ ଉତ୍ତୀର୍ଣ୍ଣ ହେବା କାଠିକର ହୋଇ ପଡ଼ିଥାନ୍ତା। ଆଠ-ଦଶ କି.ମି. ପରିଧିର ସେହି ଯେଉଁ ଆମ ଛୋଟିଆ ବିଶ୍ୱ, ସେଠି ମୋର ମ୍ୟାଟ୍ରିକ୍‌ରେ ପ୍ରଥମ ଶ୍ରେଣୀ ପାଇବା ଏକ ବଡ଼ ଖବର। ସେ ବର୍ଷ ଆମ ହାଇସ୍କୁଲ୍‌ରୁ ଚାରି ଜଣଙ୍କୁ ପ୍ରଥମ ଶ୍ରେଣୀ ମିଳିଥାଏ ଏବଂ ଯେହେତୁ ମୁଁ ଅତି ସାଧାରଣ ପିଲା, ପାଠୁଆ ପିଲା ନୁହେଁ, ମୋର କୃତିତ୍ୱ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥାଏ। ଏହି ସଫଳତା ମତେ ପରବର୍ତ୍ତୀ ଜୀବନରେ କେତେ ଯେ ପ୍ରେରଣା ଦେଲା, ତା' କହିହେବ ନାହିଁ। କିନ୍ତୁ ସେହି ପ୍ରେରଣା ପଛରେ କାକାଙ୍କର ଭୂମିକାକୁ ମୁଁ କେବେ ଭୁଲି ପାରିବି ନାହିଁ।

୧୯୮୨ରେ କଲେଜ ପାଠ ପରେ ଉପାଧିତ୍ତୁର ଶିକ୍ଷା ପାଇଁ ଗଲି ଦିଲ୍ଲୀସ୍ଥିତ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ (JNU)। ସେଠି କଟିଲା ପ୍ରାୟ ସାତ ବର୍ଷ। ତେଣିକି ଚିନ୍ତା ଜଗତରେ JNU ଓ ତନ୍ମଧ୍ୟରେ CHS ବା ଇତିହାସ

ଶିକ୍ଷାକେନ୍ଦ୍ର (ସେଣ୍ଟର ଫର୍ ହିଷ୍ଟୋରିକଲ ଷ୍ଟଡ଼ିଜ) ନାଁରେ ଦୁଇଟି ନୂଆଁ ଶବ୍ଦ ସ୍ଥାୟୀ ଭାବେ ଘର କରିଗଲେ। ସେଇଠି ମୋର ଶିକ୍ଷକ ବିପିନ ଚନ୍ଦ୍ର। ଇଂରାଜୀରେ ଲେଖନ୍ତି "ବିପନ ଚଂଦ୍ର"। ଇତିହାସର ନାଁ କରା ପ୍ରଫେସର। ପରିଚ଼ିତି ତାଙ୍କର ଏତେ ଅଧିକ ଯେ ନାଁ ଆଗରୁ 'ପ୍ରଫେସର' ବା ନାଁ ଶେଷରେ 'ଐତିହାସିକ' ଯୋଡ଼ିବାର ଦରକାର ପଡ଼େନି। ତାଙ୍କର ଏକାଧିକ ଛାତ୍ର ବି JNUରେ ଶିକ୍ଷକ; କାହାରି ବିଦବତ୍ତା ଊଣା ନୁହେଁ। ବିପିନ ଚନ୍ଦ୍ରଙ୍କୁ ଜାଣିବା ଅର୍ଥ ତାଙ୍କ ଛାତ୍ର ମହଲରେ ମିଶିବା, ତାଙ୍କ କୃତି ଗୁଡ଼ିକ ସହ ପରିଚ଼ିତ ହେବା, ତାଙ୍କ ପରିବାରକୁ ବି ପାଖରୁ ଦେଖିବା ତଥା ତାଙ୍କ ବିଚ଼ାର ସହ ଓତଃପ୍ରୋତଃ ହେବା, ସେହି ବିଚ଼ାରକୁ ବଳିଷ୍ଠ କରିବା !

ଜଣେ ଶିକ୍ଷକ ରୂପରେ ବିପିନ ଚନ୍ଦ୍ର ଥିଲେ ଅନନ୍ୟ। ଯେମିତି ସୁବକ୍ତା ସେ, ସେମିତି ଭାବ ଥାଏ ତାଙ୍କର କ୍ଲାସ ନେଲାବେଳେ। ତାଙ୍କ ଯୁକ୍ତି ସହ ଅମତ ହୋଇ ହେବ, ହେଲେ ତାକୁ ଅଯୌକ୍ତିକ କହିହେବନି। କ୍ଲିଷ୍ଟ ତ ଆଦୌ ନ ଥିଲେ। ତାଙ୍କର ଉଭୟ ଲେଖା ଓ ଲେକଚ଼ର୍‌ର ବୈଶିଷ୍ଟ୍ୟ ଥିଲା ସରଳ ବାକ୍ୟ। ସାଂପ୍ରଦାୟିକତା ସଂପର୍କିତ ତାଙ୍କ ବକ୍ତବ୍ୟ ଶୁଣିଲା ପରେ, ଲାଗେ, ଶ୍ରୋତା କେହି ସଂପ୍ରଦାୟବାଦ ପ୍ରତି କୋହଳ ହୋଇ ପାରିବ ନାହିଁ। ତାଙ୍କର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା, ଅତି କମ ବୟସର ଛାତ୍ରକୁ ବି ସଂଗୀ ମନେ କରନ୍ତି। ଏମ.ଏ. ପଢ଼ାବେଳେ ହିଁ କହନ୍ତି, ମତେ 'ସାର୍' ବୋଲି ସଂବୋଧନ କରିବ ନାହିଁ। 'ବିପନ୍' ବୋଲି ଡାକିବ। ଆମେ ତାକୁ କାର୍ଯ୍ୟତଃ ମାନନ୍ତି ମଧ୍ୟ। ଏହି ଧରଣର ବଂଧୁଭାବ ଛାତ୍ରର ଆତ୍ମବିଶ୍ୱାସ ସୃଷ୍ଟି କରିବାରେ ତଥା ଶିକ୍ଷକ ସହ ଯୁକ୍ତିତର୍କ କରିବାରେ ସାହାଯ୍ୟ କରେ। ସବୁଠାରୁ ବଡ଼ କଥା, ତାଙ୍କ ପ୍ରଭାମଣ୍ଡଳରେ ଥିବା ଅନ୍ୟ ଶିକ୍ଷକମାନେ ମଧ୍ୟ ଉଦାରବାଦୀ ଆଚ଼ରଣ କରନ୍ତି, ଯାହା ଜେଏନୟୁରେ ବୌଦ୍ଧିକ ପରିବେଶକୁ ସ୍ୱାଭାବିକ ଭାବେ ଅନୌପଚ଼ାରିକ କରିଦିଏ।

ତାଙ୍କଠାରୁ ଏତେ ସବୁ ଅନ୍ତରଂଗତା ପାଇବାର ସାମର୍ଥ୍ୟ ମୋ ଭିତରେ ଥିବା କଥା କେବେ ମୁଁ ଅନୁମାନ କରିନି। JNU ଯିବା ଆଗରୁ କେବେ ମୁଁ ଦିଲ୍ଲୀ ଯାଇନି; ଏପରି କି ରେଳ ବି ବସିନି କହିଲେ ଅତିଶୟୋକ୍ତି ହେବ ନାହିଁ। ଶିକ୍ଷାର ମାଧ୍ୟମ ଇଂରାଜୀ କିଂବା ସଂପର୍କର ଭାଷା ହିନ୍ଦୀ ମୋ ପାଇଁ ସଂପୂର୍ଣ୍ଣ ନୂଆଁ; ପରିଚ଼ିତି ରହିଛି, ହେଲେ ତହିଁରେ ନିଜର ଭାବକୁ ଅଭିବ୍ୟକ୍ତ କରିବାର ଦକ୍ଷତା ନାହିଁ। ଇତିହାସ ଯେ ନାଁ ଓ ତାରିଖର ଗୋଟାଏ ଲମ୍ବା ତାଲିକା ନୁହେଁ, ବରଂ ସମାଜ, ପ୍ରକୃତିର ରହସ୍ୟ ଏବଂ ନିଜକୁ ବୁଝିବା ଲାଗି ବିଜ୍ଞାନ, ଗଣିତ ଭଳି ଏକ ମାଧ୍ୟମ -

ସେତକ ବି ମୁଁ ବୁଝିନି । ଏମିତି ସ୍ଥିତିରେ JNU ପାଠ ଓ ପରିବେଶ ଯେ ମତେ ଆରଂଭରେ ବାଉଳା କରିଥିବ - ତା' କହିବା ବାହୁଲ୍ୟ ମାତ୍ର ! ପାଠ ବୁଝି ନ ପାରିବାର ଅସାମର୍ଥ୍ୟ ଏବଂ ଉପେକ୍ଷିତ ହେବାର ଭୟ ମତେ ହୀନମନ୍ୟ କରିଦିଏ; ଗାଁକୁ ଫେରି ଆସିବାକୁ ମନ କହେ । ଲାଗେ, JNU ଆସି ବଡ଼ ଭୁଲ୍ କରି ଦେଲି !

ଏମିତି ସ୍ଥିତିରେ ମୋ ଜୀବନରେ ଆସନ୍ତି ପ୍ରଫେସର ବିପିନ ଚନ୍ଦ୍ର । JNUରେ ଏମ୍.ଏ. ଛାତ୍ର ଅର୍ଥାତ୍ ପ୍ରଥମ ଶ୍ରେଣୀ । ଜେନେରାଲ କ୍ଲାସ୍‌ରେ ଆମକୁ ତାଙ୍କର ଜାଣିବାର କୌଣସି ଅବକାଶ ନ ଥାଏ । ମାତ୍ର ଟ୍ୟୁଟୋରିଆଲ କ୍ଲାସ୍‌ରେ ତାଙ୍କ ସହ ଦେଖାହୁଏ । ସପ୍ତାହକୁ ଗୋଟାଏ ଟ୍ୟୁଟୋରିଆଲ କ୍ଲାସ୍; ଦୁଇ/ ତିନି ଘଣ୍ଟା ବା କିଛି ବି ହୋଇପାରେ ତା'ର ମୋଟ ଅବଧି । ଛାତ୍ରଙ୍କୁ ଛୋଟ ଛୋଟ ଭାଗରେ ବିଭକ୍ତ କରାଯାଇଥାଏ । ପ୍ରତ୍ୟେକ ଭାଗରେ ୭-୮ ଜଣ କରି ପିଲା । ପ୍ରତି କୋର୍ସର ଶିକ୍ଷକଙ୍କ ସହ ଟ୍ୟୁଟୋରିଆଲରେ ଭେଟିବାକୁ ହୁଏ । ଆମ ଗ୍ରୁପର ପ୍ରଥମ 'ଟ୍ୟୁଟୋରିଆଲ' ଥିଲା ବିପିନ ଚନ୍ଦ୍ରଙ୍କ ସହ । କିଛି ପାଠ ଆଲୋଚନା ଆରଂଭ କରିବା ଆଗରୁ ସେ ପଚାରିଲେ ନାଁ, ଠିକଣା । ଅନ୍ୟମାନେ ଅନାୟାସରେ କହିଗଲେ; ହେଲେ ସେତକ ବି ଇଂରାଜୀରେ କହିବା ଲାଗି ମତେ କଷ୍ଟ ହେଉଥାଏ । ପରିଚୟରେ ଯେତେବେଳେ କହିଲି, "ମୋର ବାପା ଚାଷ କରନ୍ତି", ତା' ଏକ ସଂପୂର୍ଣ୍ଣ ନୂଆଁ ଉତ୍ତର ଆମ ଗ୍ରୁପରେ । ତେଣିକି ସେ ଅନ୍ୟମାନଙ୍କ ଅପେକ୍ଷା ମତେ କେତେ ଯେ ଅଧିକ ମହତ୍ତ୍ୱ ଦେଇ କୃଷି ସଂବଂଧୀୟ ପ୍ରଶ୍ନ ମାନ ପଚାରିଲେ, ତା'ର ହିସାବ ନାହିଁ । "ଜମି କେତେ ?" "ଜଳ ସେଚନର ବ୍ୟବସ୍ଥା ଅଛି ନା ନାହିଁ ? ଅସୁବିଧା କେଉଁଠି ?" "ମୁଖ୍ୟ ଫସଲ କ'ଣ ?" "ଆୟ କେତେ ?" "ଦିଲ୍ଲୀରେ ପଢ଼ିବା ଲାଗି ଆବଶ୍ୟକ ହେଉଥିବା ଖର୍ଚ୍ଚ ପୂରଣ ହେବ କେମିତି ?" ଇତ୍ୟାଦି ଇତ୍ୟାଦି ।

ଉତ୍ତର ଦେବାରେ ମୋ ଆଗରେ ଭାଷା ବାଧକ ହେଉଥାଏ ସିନା, ଜବାବ ଥାଏ ରୋକଠୋକ, ଇଂରାଜୀରେ ଯାହାକୁ କୁହାଯିବ 'ଫୋକସ୍‌ଡ' । ଉତ୍ତରରେ କାହିଁ କେଉଁଠି ଆତ୍ମଦୟା ପ୍ରବୃତ୍ତି ବି ନ ଥାଏ; ପ୍ରତ୍ୟେକ ପ୍ରଶ୍ନକୁ ନେଇ ଯେମିତି ମୋର ସୁଚିନ୍ତିତ ମତାମତ ରହିଛି ! ଶେଷରେ ସେ ମତାମତ ଦେଲେ, "ଦେଶର କୃଷି ଓ ଗ୍ରାମୀଣ ଇତିହାସ ଜାଣିବା ଲାଗି ଏହି ପିଲାଟି ହେବ 'ଆମ ସମସ୍ତଙ୍କ" ଲାଗି ଶିକ୍ଷକ । ଏବେ ତା'ପାଇଁ ଭାଷା ଏକ ସମସ୍ୟା । ମାତ୍ର ପରେ ପରେ ତା' ବି ଆଉ ସମସ୍ୟା ହେବ ନାହିଁ । ଓଡ଼ିଶା-ବିହାର ଭଳି ପଛୁଆ ଅଞ୍ଚଳର ସବୁ ପିଲା

ଆରଂଭରେ ଏହି ସମସ୍ୟା ଦେଇ ଗତି କରନ୍ତି ଏବଂ ମେହନତ କରି ପରେ ଭାଷାକୁ ଠିକ୍ କରନ୍ତି ।" ଶେଷରେ ଆଉ ଥରେ ପଚ଼ାରିଲେ, "କ୍ୟା ନାମ ହୈ ବେଟା ତୁମ୍ହାରା ?" ପ୍ରଥମ ଥର ଶୁଣିଥିବା ନାଁକୁ ଯେମିତି ସେ ସଂରକ୍ଷିତ କରି ରଖିବାକୁ ଚାହୁଁଥିଲେ ନିଜ ପାଖରେ !

ଏହି ଅନୁଭବ ମତେ କେତେ ଯେ ଆତ୍ମବିଶ୍ୱାସ ଦେଲା, ତାହା ଅକଳନୀୟ ! ଇତିହାସ ପାଠ ଜାଣି ନ ଥିବାରୁ କିଂବା ଇଂରାଜୀ କହିପାରୁ ନ ଥିବାର ହୀନମନ୍ୟତା ଯେମିତି, ସାମୟିକ ଭାବେ ହେଉ ପଛେ, ମନରୁ ଅନ୍ତର୍ହିତ ହୋଇଗଲା । ପ୍ରଥମ କରି ଅନୁଭବ ହେଲା, ନିଜ ଗାଁ-ଘର ଚାଷ-ବାସ କଥା ଭଲ କରି ଜାଣିବା ବି ଇତିହାସକୁ ଜାଣିବା ଭଳି ବଡ଼ କଥାଟିଏ ! ସାଧାରଣ ବୁଦ୍ଧି ଯୁକ୍ତ ଜଣେ ବ୍ୟକ୍ତି ମଧ୍ୟ ଇତିହାସ ପାଇଁ କଦାପି ଅଦରକାରୀ ହେବ ନାହିଁ । ଦ୍ୱିତୀୟତଃ, କେବଳ ଇଂରାଜୀରେ କହି ଜାଣିବା ସର୍ବଦା ଜ୍ଞାନ ବିବେଚିତ ହୋଇ ନ ପାରେ !

ପରେ ଇତିହାସ ଗବେଷଣା ବେଳେ ବିପିନ ଚନ୍ଦ୍ର ମୋର 'ଗାଇଡ଼' ହେଲେ; ବ୍ୟକ୍ତିଗତ ସଂପର୍କ ତାଙ୍କସହ ନିବିଡ଼ ହେଲା । ହେଲେ, କେବେ ପଚ଼ାରିନି, ସେଦିନ ଯାହା ସେ ମୋ ସଂବଂଧରେ ମତ ଦେଇଥିଲେ, ତା' ପଛରେ କିଛି ସତ୍ୟତା ଥିଲା, ନା ମତେ ପ୍ରୋତ୍ସାହିତ କରିବା ଲାଗି, ତଥା ନୂଆଁ ପରିବେଶରେ ନିରାଶ ନ ହେବା ଲାଗି କେବଳ ତାହା ଉତ୍ସାହବାଣୀ ଥିଲା ? ଆଜି ପଛକୁ ଚାହେଁ ଯେତେବେଳେ, ଲାଗେ ମତେ ଉତ୍ସାହ ଦେବା ଲାଗି ହିଁ ସେ 'ମିଛ' କହିଥିଲେ । ଯେମିତି ତାଙ୍କ ଖୋଲା ସ୍ୱଭାବ ପଚ଼ାରିଥିଲେ ସ୍ୱୀକାର ବି କରି ଯାଇଥାନ୍ତେ, 'ମିଛ' କହିଥିଲେ ବୋଲି । କିନ୍ତୁ ସେହି 'ମିଛ' ଯେ ମୋତେ ବଞ୍ଚାଇ ଦେଇଗଲା ସେତେବେଳେ ଏହା ଅନସ୍ୱୀକାର୍ଯ୍ୟ । ନିଛକ ସତଠାରୁ ତା'ର ଅଧିକ ଆବଶ୍ୟକତା ଥିଲା ମୋର ବ୍ୟକ୍ତିତ୍ୱ ଗଠନ ପାଇଁ ।

ନିଜେ ଶିକ୍ଷକତା କଲା ପରେ ଅନେକ ଥର ଛାତ୍ରଙ୍କର ପାଠକୁ ନେଇ ହତାଶ ହେବାର ଦେଖିଲେ ମୁଁ ସେହିଭଳି ଉତ୍ସାହ ଦିଏ । ଅନେକ ସମୟରେ ତା'ର ସଫଳତା ବି ଦେଖିଛି । ନିଜ ଶିକ୍ଷକୀୟ ଅନୁଭୂତିରେ ସେତେବେଳେ ମନେ ହୋଇଛି, ମିଛ କହି ମୁଁ ଭୁଲ୍ କରିନି । ତା' ପାଇଁ ବିପିନ ଚନ୍ଦ୍ର ମୋ ଗାଇଡ୍, ଦିଗଦର୍ଶକ !

୧୯୮୬ରେ ମୋର ପ୍ରଥମ ଗଳ୍ପ ସଂକଳନ, ପୌଷ ପାହିଲେ ଯାଇ, ପ୍ରକାଶିତ ହେଲା । ସେହିବର୍ଷ ଗପ ଲେଖାପାଇଁ "ବସନ୍ତ ମିଳନ" ନାମରେ ଏକ

ପୁରସ୍କାର ପାଇବା ଲାଗି ବି ବିବେଚିତ ହେଲି । ଆମର ବଂଧୁ ଜଣେ JNU News ନାମକ ପତ୍ରିକାରେ ଗଳ୍ପ ସଂକଳନ ପ୍ରକାଶ ପାଇବା ଖବର ଦେଇ ଦେଇଥାନ୍ତି । JNU Newsର ଯାହା ସ୍ତର ତାକୁ କେହି ପଢୁଥିବେ ବୋଲି ମୁଁ ଭାବୁ ନ ଥାଏ । ପୁରସ୍କାର ନେବା ଲାଗି ସମ୍ବଲପୁରରେ ଆୟୋଜିତ ସଭାରେ ଯୋଗ ଦେବାକୁ ହେବ । ଯିବା ଆସିବା ଖର୍ଚ୍ଚକୁ ବାଦ ଦେଇ ପୁରସ୍କାର ରାଶି ବାବଦକୁ ମିଳିବ ପାଞ୍ଚଶହ ଟଙ୍କା । ଛୁଟୀ ଆବେଦନ ପତ୍ର ନେଇ ବିପିନ ଚନ୍ଦ୍ରଙ୍କ ପାଖକୁ ଗଲି । ଗାଇଡ୍ ଭାବରେ ତାଙ୍କ ଅନୁମତି ଦରକାର । ସେତେବେଳେ ତାଙ୍କୁ ମୋର ଭାରି ଡର, କାରଣ UGC ପରିଚାଳିତ NET ପରୀକ୍ଷାରେ ମୁଁ କୃତକାର୍ଯ୍ୟ ହୋଇ ନ ଥାଏ, ଏବଂ JNUରେ ଏଭଳି ଅକୃତକାର୍ଯ୍ୟ ଛାତ୍ରଙ୍କ ସଂଖ୍ୟା ଅତି କମ୍ । ମୋର ଭୟ ଯେ ବିପିନ ଚନ୍ଦ୍ର ମୋର ଭର୍ତ୍ସନା କରିବେ । ମାତ୍ର JNU Newsରୁ ଗପ ଲେଖା ଓ ମୋର ଆବେଦନ ପତ୍ରରୁ ପୁରସ୍କାର କଥା ଜାଣି କେବଳ ସେ ମତେ କୁଣ୍ଢାଇ ପକାଇଲେ ନାହିଁ, ସାଙ୍ଗରେ କହିଲେ NET ପରୀକ୍ଷାରେ ସଫଳ ହେବାଠାରୁ ଏହା ଆହୁରି ବଡ଼ ଉପଲବ୍ଧି ! ତା' ଆଗରୁ କେବେ ସେ ଜାଣି ସୁଦ୍ଧା ନ ଥିଲେ ଯେ ମୁଁ ଗପ ଲେଖେ । ଏ ଯାଏଁ ଏକଥା ତାଙ୍କୁ ଜଣାଇ ନ ଥିବାରୁ ଅଭିମାନ ବି କଲେ । ଟ୍ୟୁସନ କରି ମୁଁ ଚଳୁଥାଏ; ବିଷମ ମୋର ଆର୍ଥିକ ଦୁଃସ୍ଥିତି; ଘରୁ ସାହାଯ୍ୟର କୌଣସି ବିକଳ୍ପ ନ ଥାଏ । ଏହି ସବୁ କାରଣରୁ NET ପାସ୍ କରି ଗବେଷଣା ପାଇଁ ବୃତ୍ତି ପାଇବା ଥାଏ  ମୋ ପାଇଁ ସବୁଠାରୁ ବଡ଼ ଆବଶ୍ୟକତା । ତେଣୁ, NETର ଅସଫଳତା ଯୋଗୁଁ ଯେଉଁ ଦୁଃସହ ମନସ୍ତାପ, ତାକୁ ଗିଳିଯିବା ଲାଗି ବିପିନ ଚନ୍ଦ୍ରଙ୍କ ଦୁଇପଦ ଉତ୍ସାହ ବାଣୀ ଯେ ମୋ ଭିତରେ ଅନେକ ଆତ୍ମବିଶ୍ୱାସ ସୃଷ୍ଟି କରିଥିବ ତା' କହିବା ନୋହିବ ।

୨୦୦୦-୨୦୦୧ରେ ମୋର କାର୍ଯ୍ୟ ସଂସ୍ଥା NCERTରେ ଇତିହାସ ପାଠ୍ୟ ପୁସ୍ତକକୁ ନେଇ ବିବାଦ ଆରଂଭ ହେଲା । ସାଂପ୍ରଦାୟିକ ତତ୍ତ୍ୱର ଅନୁପ୍ରବେଶ ବିରୁଦ୍ଧରେ ଆମେ ମାନେ ସ୍ୱର ଉତ୍ତୋଳନ କଲୁ । କର୍ତ୍ତୃପକ୍ଷ ଚାହାନ୍ତି ପୁସ୍ତକରେ ସାଂପ୍ରଦାୟିକ ଅନୁପ୍ରବେଶ । NCERT ନିର୍ଦ୍ଦେଶକ ମତେ ଏକାଧିକଥର ଏପରି ବିରୋଧ ନ କରିବା ଲାଗି ଧମକ ଯାଏଁ ଦେଲେ । ପ୍ରଥମ ଥର ଧମକି ପାଇ ଏତେ ଡରି ଗଲି ଯେ ସାଙ୍ଗେ ସାଙ୍ଗେ ଦେଖା କଲି ବିପିନ ଚନ୍ଦ୍ରଙ୍କୁ । ପୂରା ବିବରଣୀ କହିଲା ବେଳେ ସାନ ପିଲାଙ୍କ ପରି କଇଁ କଇଁ ହୋଇ କାନ୍ଦି ପକାଇଲି । ମତେ ଲାଗିଲା, କାନ୍ଦିବା ମୋର ଦୁର୍ବଳତାର ସୂଚକ; ମୋର ବ୍ୟକ୍ତିତ୍ୱର ଏକ ବଡ଼ ସମସ୍ୟା ! ପୁଣି, ଭାବିଲି, କାନ୍ଦିବା, ଯେତେ ଭୟ ଯୋଗୁଁ ନୁହେଁ, ତା'ଠାରୁ ଅଧିକ

ଆତ୍ମୀୟ ଜଣକ ଆଗରେ ନିଜ କଥା କହି ପାରିଥିବା ଯୋଗୁଁ। ଗୋଟାଏ ପଟେ କର୍ତ୍ତୃପକ୍ଷଙ୍କ ପ୍ରତି ଭୟ, ଅନ୍ୟ ପଟେ ଦାୟିତ୍ୱବୋଧ, ସାଂପ୍ରଦାୟିକତାର ଯେମିତି ହେଲେ ବିରୋଧ ହେବା କଥା ! ସବୁ ଶୁଣି ସେ କହିଲେ, ତୁ ହେଲୁ ଜଣେ ସୃଷ୍ଟିଶୀଳ ବ୍ୟକ୍ତି। ଭୟ ପାଇ ଯଦି ନିଜ ଅନ୍ତରର କଥା (ଏ କ୍ଷେତ୍ରରେ ସାଂପ୍ରଦାୟିକତାର ବିରୋଧ) କରିବା ଛାଡ଼ି ଦେବୁ, ତୁ ନିଜକୁ ଧିକ୍କାର କରିବା ଆରଂଭ କରିବୁ। ତେଣୁ, ତୋତେ କଦାପି ମୁଁ ଭୟ ଆଗରେ ହାର ମାନି ଯିବାକୁ କହିବି ନାହିଁ। ଏ ରାସ୍ତାରେ ଚାଲିବା କଷ୍ଟ; ଆଶାନୁରୂପ ପଦୋନ୍ନତି ମିଳିବ ନାହିଁ। କିନ୍ତୁ ତୋତେ ମୁଁ ଯାହା ଜାଣିଛି, ତୋ ଆଗରେ ଏହା ହିଁ ଏକମାତ୍ର ବିକଳ୍ପ ! ମୋ ତରଫରୁ କେବଳ ଗୋଟାଏ ସାହାଯ୍ୟ ଦେଇ ହେବ। ଯେତେବେଳେ ତୁ ଅନୁଭବ କରିବୁ ଯେ ଜଣକ ଆଗରେ ତୋ ମନକଥା କହିବା ଦରକାର, ସେତେବେଳେ ମୋ ପାଖକୁ ଚାଲି ଆସିବୁ। ମୁଁ ସଦା ପ୍ରସ୍ତୁତ ତୋ କଥା ଶୁଣିବା ପାଇଁ। ସମାଧାନ ନ ପାଇଲେ ବି ମନକଥା କେହି ମନଦେଇ ଶୁଣିଛି ବୋଲି ପ୍ରତୀତ ହେଲେ, ଅନେକ ଦୁଃଖ ଲାଘବ ହୋଇଯାଏ !

ମୋ ପାଇଁ ତାଙ୍କର ଏହି କେତେ ପଦ କଥା ଥିଲା ଅମୃତବାଣୀ ! ତା'ପରେ ମୁଁ ଆଉ ପଛକୁ ହଟିନି। ସାଂପ୍ରଦାୟିକତାର ଯାହା ଯେମିତି NCERT ସଂସ୍ଥାରେ ବିରୋଧ କରିବା କଥା; ତହିଁରେ ତ୍ରୁଟୀ କରିନି; ତା' ପାଇଁ ଦଣ୍ଡ ପାଇଛି, ତୁରନ୍ତ ବଦଳି ଆଦେଶ ପାଇଛି, ହେଲେ ତାହା ଖୁବ୍ କଷ୍ଟଦାୟୀ ମନେ ହୋଇନି। ବରଂ ମନେ ହୋଇଛି, ବିପିନ ଚନ୍ଦ୍ର ମତେ ସୃଷ୍ଟିଶୀଳ ମନେ କରନ୍ତି, ତା'ଠାରୁ ମୋର ବଡ଼ ଉପଲବ୍ଧି ଆଉ କ'ଣ ବା ହୋଇପାରେ ? ଏଣିକି ଯେକୌଣସି ଶାସ୍ତିକୁ ବି ମୁଁ ବରଦାସ୍ତ କରିଯିବି। ସେହି ଆଶ୍ୱାସନାର ବାଣୀ ମୋ ପାଇଁ ବଡ଼ ପୁରସ୍କାର ! ତାଙ୍କ ଆଗରେ କାନ୍ଦି ପକାଇଥିଲି ବୋଲି ମନେ ପଡ଼ିଲେ ପରେ ଆଉ ଅନୁତାପ କରିନି।

୨୦୦୮ରେ ମତେ ପୁନେସ୍ଥିତ ରାଷ୍ଟ୍ରୀୟ ରକ୍ଷା ଏକାଡ଼େମୀରେ (NDA) ପ୍ରଫେସର ପଦ ମିଳିଲା। ୟୁପିଏସ୍ସି ତା'ପାଇଁ ମତେ ଚୟନ କରିଥିଲା। ଖବର ପାଇ ସେ (ବିପନ ଚନ୍ଦ୍ର) କେତେ ଚିହ୍ନା-ପରିଚୟଙ୍କୁ ଏ 'ସୁସଂବାଦ' ଦେଲେ। ଜାଣି, ଏକ ବଡ଼ ଉପଲବ୍ଧି ତାହା ! NCERT ସଂସ୍ଥାରେ ମୋତେ ଯେଉଁ ଉପେକ୍ଷା କରାଯାଉଥିଲା, NDAର ପ୍ରଫେସର ପଦ ଯେମିତି ତା' ପାଇଁ ଏକ ଉଚିତ ଜବାବ ଥିଲା ! କେବଳ ବିପିନ ଚନ୍ଦ୍ର କାହିଁକି, ଅନ୍ୟ ସୁହୃଦ ବି ସେହି ଆଧାରରେ ଖୁସୀ ହେଲେ। NDAରେ ମୁଁ ବିପିନ ଚନ୍ଦ୍ର ତଥା ଅନ୍ୟ ସୁହୃଦଙ୍କ ପରାମର୍ଶ ମାନି ଯୋଗ ମଧ୍ୟ ଦେଲି। ମାତ୍ର ସେଠିକାର ଅଜବ ମିଲିଟାରୀ କାୟଦା ଭଲ ଲାଗିଲାନି।

ଚାହିଁଲି ଯେତେ ଶୀଘ୍ର ସଂଭବ NCERT ସଂସ୍ଥାକୁ ପୂର୍ବର ରିଡ଼ର ପଦରେ ଫେରି ଆସିବି। ସେତେବେଳେ ପୁଣି ବିପିନ ଚନ୍ଦ୍ରଙ୍କ ପରାମର୍ଶ ଲୋଡ଼ିଲି। ସେହି ଅଭୟ ବାଣୀ ତାଙ୍କର, "ମୁଁ ଜାଣେ ସେ ଜାଗା ତତେ ଭଲ ଲାଗିବନି। ପ୍ରମୁଖତଃ ତୁ ଜଣେ ଲେଖକ। ତୋ ଭିତରର ସୃଷ୍ଟିଶୀଳତା ସେଠି ବଳ ପାଇବନି। ତଳ ପଦବୀରେ ହେଉ ପଛେ, ଫେରି ଆସ ସେଇଠୁ। ତୋର ପଦୋନ୍ନତି ଅପେକ୍ଷା ତୋର ସାହିତ୍ୟରୁଚି ରହିବା ଅନ୍ତତଃ ତୋ' ପାଇଁ ଅଧିକ ମଙ୍ଗଳକର।"

ମୋର ଦୀର୍ଘ ଦିନର ଛାତ୍ରତ୍ୱ ମଧ୍ୟରେ କେବେ ଦେଖିଲିନି, କିଛି ଯୋର କରିବେ ଛାତ୍ରଙ୍କ ଉପରେ। ପ୍ରତ୍ୟେକ ଛାତ୍ର ମଧ୍ୟରେ ଯେଉଁ ସ୍ୱାତନ୍ତ୍ୟ ରହିଛି, ତା'ର ବିକାଶ ହେଉ ବୋଲି ହିଁ ସେ କାମନା କରୁଥିଲେ ! ତେଣୁ, ମୋର NDA ଯିବାରେ ଯେମିତି ସେ ଖୁସୀ, ସେଇଠୁ ମୋର ଫେରିବାରେ ବି ସେମିତି ଖୁସୀ। ଛାତ୍ରର ଖୁସୀରେ ତାଙ୍କର ଖୁସୀ। ଏମିତି ଜଣେ ଶିକ୍ଷକଙ୍କୁ ପାଇ ବା କିଏ କାହିଁକି ନିଜକୁ ଧନ୍ୟ ନ ମଣିବ ଯେ ?

୨୦୦୯ ମେ' ମାସରେ ତାଙ୍କର ପତ୍ନୀ ଉଷା ଚନ୍ଦ୍ର ଦେହ ତ୍ୟାଗ କଲେ। ଆମ ଛାତ୍ରଙ୍କ ପାଇଁ ଉଷା ଥିଲେ ମାତୃବତ। ଏକାଧିକ ଥର ବିପିନ ଚନ୍ଦ୍ର ମୋ ଉପରେ ଲେଖାରେ ଅଶୁଦ୍ଧି ଯୋଗୁଁ ଭିଷଣ ବିରକ୍ତ ହୁଅନ୍ତି। ସେତେବେଳେ ସୁରକ୍ଷା କବଚ୍ ହୁଅନ୍ତି ଉଷା ଚନ୍ଦ୍ର। ପରୋକ୍ଷରେ ନାନା ଆଳ କରି ମୋ ପକ୍ଷ ନିଅନ୍ତି। ତେଣୁ ବିପିନ ଚନ୍ଦ୍ରଙ୍କ ପାଖରୁ ଗାଳି ଖାଇବା ସତ୍ତ୍ୱେ ବିଶେଷ ମନକଷ୍ଟ ହୁଏ ନାହିଁ। ଉଷା ପୁଣି ବିପିନ ଚନ୍ଦ୍ରଙ୍କ ପ୍ରତ୍ୟେକ ଲେଖାର ପ୍ରଥମ ପାଠିକା; ଭାଷା ସଂପାଦନା ବି ତାଙ୍କ ଦ୍ୱାରା ହୁଏ। ଏମିତି ଜଣେ ମହିୟସୀ ମହିଳା ଉଷା ଯେମିତି ବିପିନ ଚନ୍ଦ୍ରଙ୍କ ସବୁ ପ୍ରସିଦ୍ଧି ପଛରେ ଅଦୃଶ୍ୟ ଭାବରେ ଛିଡ଼ା ହୋଇଥାନ୍ତି। ତାଙ୍କ ମୃତ୍ୟୁ ଯୋଗୁଁ ବିପିନଙ୍କ ପ୍ରତ୍ୟେକ ଛାତ୍ର କଷ୍ଟ ପାଇଥିବେ - ଏହା କହିବା ବାହୁଲ୍ୟ ମାତ୍ର।

ମୁଁ ମୋ ତରଫରୁ ବି ଚାହୁଁଥିଲି ଶୀଘ୍ରାତିଶୀଘ୍ର ବିପିନ ଚନ୍ଦ୍ରଙ୍କୁ ଏହି ଦୁଃଖଦ ଖବର ପାଇବା ପରେ ଭେଟିବାକୁ ଯିବି ହେଲେ, ସେହି ସମୟରେ ମୋ ବାପା (କବି ହେମଚନ୍ଦ୍ର ଆଚାର୍ଯ୍ୟ)ଙ୍କ ଦେହାନ୍ତ ହେଲା। ତାଙ୍କ ଶୁଦ୍ଧକ୍ରିୟା ପରେ ଭେଟିଲି ବିପିନ ଚନ୍ଦ୍ରଙ୍କୁ ଦିଲ୍ଲୀରେ। ଏକଲା ପଡ଼ି ଯାଇଛନ୍ତି ସେ। ଅନ୍ୟ ପକ୍ଷରେ ସବୁ ରୋଗ ଦେହରେ। ବୟସ ଅଶୀତିପର। ଆଖି ଦିଶୁନି। ଶ୍ଲଥ ଚର୍ମ। ଦେଖିବାକୁ ଖୁବ୍ ଅସୁସ୍ଥ ଜଣା ପଡୁଥାନ୍ତି। ପତ୍ନୀ ବିୟୋଗରେ ତାଙ୍କ ବୟସ ଯେମିତି ଦିନକୁ ବର୍ଷଟିଏ କରି ବଢ଼ି ଯାଉଛି ! ଖୁବ୍ ଅସହାୟ ହୋଇପଡ଼ିଛନ୍ତି ସେ !

ଆଜି ଯାଏଁ ପ୍ରତ୍ୟେକ ଥର ମୋ ନିଜ ଦୁଃଖରେ ମୁଁ ତାଙ୍କ ଆଗରେ ଛୋ
ଛୁଆଙ୍କ ଭଳି କାନ୍ଦି ପକାଏଁ। ଏଥର କିନ୍ତୁ ତାଙ୍କ ଅବସ୍ଥା ଦେଖି ଆଖିରୁ ଲୁ
ଝରିଲା। ପଚାରିଲି, "ମୁଁ କ'ଣ କରିପାରେଁ ଆପଣଙ୍କ ପାଇଁ ? ଆପଣ ଖା
ଆଦେଶ ଦିଅନ୍ତୁ।" ତାଙ୍କର ଅତି ସଂକ୍ଷେପରେ ଦିଆ ଉତ୍ତରଟିଏ, "ନା, କିଛି
ନାହିଁ। ଯେବେ ଦିଲ୍ଲୀ ଆସିବୁ, ଦେଖା କରିବୁ ଯଦି, ସେ ମୋ ପାଇଁ ବ
ସାହାଯ୍ୟ !" ମନେ ହେଲା, ଏ ଭଳିଆ ଜଣେ ସେ ଶିକ୍ଷକ, ଯିଏ ନିଜର ବିଦ୍ୟା
ବୁଦ୍ଧି, ଭଲ ପାଇବା, ସଂବେଦନଶୀଳତା, କର୍ତ୍ତବ୍ୟନିଷ୍ଠା ତଥା ସର୍ବୋପରି
ଇତିହାସ ପାଇଁ ପ୍ରତିବଦ୍ଧତାକୁ କେବଳ ଅକୁଣ୍ଠ ଚିତ୍ତରେ ଛାତ୍ରଙ୍କୁ ଦେଇ ପାରନ୍ତି
ନେବେ ନାହିଁ କିଛି। ଛାତ୍ରକୁ ପ୍ରାଣ ଖୋଲି ଦେବାରେ ତାଙ୍କ ଖୁସୀ ! ଏଭଳି ମହା
ଶିକ୍ଷକଙ୍କ ଯିଏ ଛାତ୍ର, ସେ କି କେବେ ନିଜକୁ କମ୍ ଧନବାନ ମନେ କରିବ .
ଏହି ଆତ୍ମତୁଷ୍ଟୀ ହିଁ ମୋର ଯେମିତି ବଡ଼ ବଳ !

ଶିକ୍ଷକତା କଲା ପରେ କେବେ କେବେ ସହକର୍ମୀଙ୍କ ଅଭିଯୋଗ, ଶୁଣିବାକୁ ମିଳେ, "କ'ଣ ମିଳିଲା ଶିକ୍ଷକତାରୁ ଆମକୁ ?" ଏ ଯେଉଁ ନୈରାଶ୍ୟ, ତା' କି ମୋର ଏହି ସ୍ମୃତିର ଶିକ୍ଷକମାନଙ୍କୁ ବି ଘାରୁଥିବ ? ପୁଣି ଲାଗେ, ଶିକ୍ଷା ଏକ ବ୍ୟବସାୟରେ ପରିଣତ ହେଲାଣି ଆଜି। ତହିଁରେ ଘରୋଇ ଶିକ୍ଷା ସଂସ୍ଥାମାନେ ସର୍କସର ରିଂ ମାଷ୍ଟର ପରି ଶିକ୍ଷକଙ୍କୁ ଚାବୁକ ଧରି ନଚାନ୍ତି। ପୁଂଜିପତି ହାତରେ ମକୁରିଆଟିଏ ପରି ସେ ନିରନ୍ତର ଖଟେ ଓ ଶୋଷିତ ହୁଏ, ତା'ଛଡ଼ା ତାର ବିକଳ୍ପ ନାହିଁ। ଏଭଳି ପରିସ୍ଥିତିର ଯଦି ମୋର ଆଦର୍ଶ ଶିକ୍ଷକ ମାନେ ଶିକାର ହୋଇଥାନ୍ତେ, ସେମାନଙ୍କ ମନରେ ପାଠ ପଢ଼େଇବା ଲାଗି (ଶ୍ରମ କରି
ଲାଗି !) କି ସ୍ପୃହା ଜିଇଁ ପାରିଥାନ୍ତା ? ଭୟ, ବିଦ୍ରୁପ, ତିତିକ୍ଷା, ଆର୍ଥିକ ଶୋଷଣ ଏବଂ ସର୍ବୋପରି ନିଜ ଛାତ୍ର ଆଗରେ 'ବିକ୍ରେତା' ହେବାର ଅପରାଧ ବୋଧ ଯଦି ସେମାନଙ୍କ ମନରେ ରହିଥାନ୍ତା, ସେମାନେ କି ଶିକ୍ଷକତାକୁ ଉପଭୋଗ କରିପାରିଥାନ୍ତେ ? ଖୁସୀରେ ଖୁସୀରେ ନିଜ ଯୁଗଧର୍ମ ପାଳନ କରିବାରେ ସମର୍ଥ ହୋଇଥାନ୍ତେ ? ଏ ପ୍ରଶ୍ନଟି ଜଣେ ଶିକ୍ଷକର ଠାଣିରେ ପଚାରୁଛି ସିନା ସମସ୍ତଙ୍କୁ, ହେଲେ ତା'ର ଉତ୍ତର ମୋ ପାଖରେ ବି ନାହିଁ। ଏଭଳି ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ଶିକ୍ଷକତାକୁ ଭଲ ପାଇ, ଯୁଗଧର୍ମ ନିର୍ବାହ କରୁଥିବା ଶିକ୍ଷକମାନେ ବେ ମୋର "ସ୍ମୃତିର ଶିକ୍ଷକ"ମାନଙ୍କ ତୁଳନାରେ କମ୍ ସାମାଜିକ ଦାୟିତ୍ୱ ନିଭାଉ ନାହାନ୍ତି - ଏଥିରେ ଦ୍ୱିରୁକ୍ତି ନାହିଁ।



# ଲେଖକ ପରିଚୟ

୧. **ଗୋଷ୍ଠ ବିହାରୀ କାନୁନ୍‌ଗୋ** - ଦର୍ଶନ ଅଧ୍ୟାପକ। NCERT ର ଭୋପାଳ ଓ ଭୁବନେଶ୍ୱରସ୍ଥିତ ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନରେ ବହୁବର୍ଷ ଧରି ପ୍ରଫେସର ଓ ଅଧ୍ୟକ୍ଷ ପଦାସୀନ ଥିଲେ।

୨. **ସର୍ବେଶ୍ୱର ଦାଶ** - ଇଂରାଜୀ ଅଧ୍ୟାପକ। ଗାନ୍ଧିବାଦୀ ଚିନ୍ତକ।

୩. **ଚିତ୍ତରଂଜନ ଦାସ** - ମନସ୍ତତ୍ତ୍ୱ ଓ ସମାଜତତ୍ତ୍ୱର ଅଧ୍ୟାପକ। ବିଶିଷ୍ଟ ଲେଖକ। ଲେଖା ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ, ଶାରଳା ପୁରସ୍କାର ଆଦି ବିଭିନ୍ନ ପୁରସ୍କାରରେ ସମ୍ମାନିତ।

୪. **ନରେନ୍ଦ୍ର ନାଥ ମିଶ୍ର** - ଓଡ଼ିଆ ଲେଖକ ଓ ଅଧ୍ୟାପକ। ବହୁବର୍ଷ ଧରି 'ବିଶ୍ୱଭାରତୀ' ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା-ସାହିତ୍ୟର ପ୍ରଫେସର ପଦରେ ଥିଲେ। ଠିକଣା: ୮୪୦, ମହାନଦୀ ବିହାର, କଟକ-୭୫୩୦୦୪।

୫. **ହେମଚନ୍ଦ୍ର ଆଚାର୍ଯ୍ୟ** - ଓଡ଼ିଆ ଓ ସମ୍ବଲପୁରୀରେ ଅନେକ କାବ୍ୟ, କବିତା, ଗଳ୍ପର ଲେଖକ। ସମ୍ବଲପୁରୀ ରାମାୟଣ 'ରାମରାହା'ର ରଚୟିତା।

୬. **ମଂଗଲୁ ଚରଣ ବିଶ୍ୱାଳ** - ଓଡ଼ିଆ ଓ ସମ୍ବଲପୁରୀରେ ଅନେକ ନାଟକ, କାବ୍ୟ, କବିତାର ରଚୟିତା। ଦୀର୍ଘ ବର୍ଷ ଧରି ହାଇସ୍କୁଲ୍‌ରେ ଶିକ୍ଷକତା କରିଛନ୍ତି। ଠିକଣା : ବାରଡୁମୁରି, ପରମାଣପୁର, ଭାୟା-ଶାସନ, ଜି: ସମ୍ବଲପୁର - ୭୬୮୨୦୦।

୭. **ବ୍ରଜନାଥ ରଥ** - ଜଣେ ଦରଦି, ସାମ୍ୟବାଦୀ ଓ ମାନବବାଦୀ ଓଡ଼ିଆ କବି।

୮. **ଶରତ ପୂଜାରୀ** - ଶିକ୍ଷାବିତ୍, ଚଳଚିତ୍ର ଅଭିନେତା ଓ ନିର୍ଦ୍ଦେଶକ।

୯. **ରବୀନ୍ଦ୍ରପ୍ରସାଦ ପଣ୍ଡା** - ଭାରତୀୟ ପ୍ରଶାସନିକ ସେବାରୁ ଅବସରପ୍ରାପ୍ତ ଅଧିକାରୀ। ଜଣେ ବୁଦ୍ଧିଜୀବୀ ଓ ଲେଖକ। ଠିକଣା : ଏସି-୮୨, ସଲ୍‌ଟଲେକ୍ ସିଟି, କଲିକତା-୭୦୦୦୬୪।

୧୦. **ପ୍ରତିଭା ରାୟ** - ଅଧ୍ୟାପିକା ଓ ବହୁ ପରିଚିତ ଓଡ଼ିଆ ଔପନ୍ୟାସିକା। ଯାଜ୍ଞସେନୀର ଲେଖିକା ଭାବରେ ମୂର୍ତ୍ତିଦେବୀ ପୁରସ୍କାର ପ୍ରାପ୍ତ। ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ। ଠିକଣା: ୨୭, ଆଖ୍ୟାୟିକା, ଗଜପତି ନଗର, ଭୁବନେଶ୍ୱର।

୧୧. **ପ୍ରଫୁଲ୍ଲ କୁମାର ତ୍ରିପାଠୀ** - ଇଂରାଜୀ ଅଧ୍ୟାପକ, ଭାଷାବିତ୍ ଓ ପରିଚିତ ଓଡ଼ିଆ ଲେଖକ। ଠିକଣା : ୦୦୪, ସୂର୍ଯ୍ୟ ଆପାର୍ଟମେଣ୍ଟସ୍, ବିଜେବି ନଗର ପାଖ, ଭୁବନେଶ୍ୱର- ୭୫୧୦୧୪।

୧୨. **ନିରଞ୍ଜନ ବାରିକ** - ପଦାର୍ଥ ବିଜ୍ଞାନ ଅଧ୍ୟାପକ। ବହୁବର୍ଷ ଧରି ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦରେ ଅଧିଷ୍ଠିତ ଥିଲେ। ଠିକଣାଃ ବେରିୟନ୍, ଏଚ୍.ଆଇ.ଜି -୧୯୩, କଳିଙ୍ଗ ବିହାର, ପାତ୍ରପଡ଼ା, ଭୁବନେଶ୍ୱର।

୧୩. **ହରିହର ତ୍ରିପାଠୀ** - ରସାୟନତତ୍ତ୍ୱ ଅଧ୍ୟାପକ- ବହୁବର୍ଷ ଧରି ପ୍ରାଧ୍ୟାପକ ପଦରେ ଭୁବନେଶ୍ୱର ସ୍ଥିତ ଆଂଚଳିକ ଶିକ୍ଷା ପ୍ରତିଷ୍ଠାନରେ ଅଧ୍ୟାପନା କାର୍ଯ୍ୟରେ ନିୟୋଜିତ ଥିଲେ। ଠିକଣାଃ ପ୍ଲଟ୍ ନଂ-୩୯୮, ଆଚାର୍ଯ୍ୟ ବିହାର, ଭୁବନେଶ୍ୱର।

୧୪. **ଗଜାଧର ମାଝୀ** - ଆରମ୍ଭରେ ହାଇସ୍କୁଲ ଶିକ୍ଷକ। ପରେ ତଳସରା ନିର୍ବାଚନ ମଣ୍ଡଳୀରୁ ବିଧାନସଭା ସଭ୍ୟ, ଓଡ଼ିଶା ମନ୍ତ୍ରୀମଣ୍ଡଳର ପ୍ରାକ୍ତନ ମନ୍ତ୍ରୀ।

୧୫. **ଯତୀନ୍ଦ୍ର କୁମାର ନାୟକ** - ଇଂରାଜୀ ଅଧ୍ୟାପକ। ସଂପ୍ରତି ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦରେ କାର୍ଯ୍ୟରତ। ଠିକଣାଃ ପ୍ରଫେସର, ଇଂରାଜୀ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର।

୧୬. **ସଂଗ୍ରାମ ଜେନା** - 'ନିଶାନ୍ତ' ପତ୍ରିକାର ସଂପାଦକ। ପରିଚିତ ଲେଖକ। ଠିକଣାଃ ଶ୍ରୀରାମ ନଗର, ଅରୁଣୋଦୟ ମାର୍କେଟ, କଟକ-୧୨।

୧୭. **ପ୍ରତିଭା ଶତପଥୀ** - ପରିଚିତ ଓଡ଼ିଆ କବି। ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ। ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ପ୍ରଫେସର ପଦରୁ ସେବାନିବୃତ୍ତି । ଠିକଣାଃ ମାର୍ଫତ୍- ଦେବାଶୀଷ ପଟ୍ଟନାୟକ, ୧/ଶ୍ରୀରାମ ପାର୍କ, ପଟିଆ ଷ୍ଟେସନ, କଳାରାହାଙ୍ଗ, ପୋ-କିଟ୍, ଭୁବନେଶ୍ୱର-୨୪ ।

୧୮. **ବିକ୍ରମ କେଶରୀ ଦାସ** - ଇଂରାଜୀ ଅଧ୍ୟାପକ। ଗୋପୀନାଥ ମହାନ୍ତିଙ୍କ ପ୍ରସିଦ୍ଧ ଉପନ୍ୟାସ 'ପରଜା'ର ଇଂରାଜୀରେ ଅନୁବାଦ କରିଛନ୍ତି।

୧୯. **ପ୍ରୀତୀଶ୍ ଆଚାର୍ଯ୍ୟ** - ଇତିହାସ ପ୍ରଫେସର । ସଂପ୍ରତି ଭୁବନେଶ୍ୱରସ୍ଥିତ ଆଂଚଳିକ ଶିକ୍ଷା ପ୍ରତିଷ୍ଠାନରେ କାର୍ଯ୍ୟରତ। ଓଡ଼ିଆ ଲେଖକ। ଠିକଣାଃଆଂଚଳିକ ଶିକ୍ଷା ସଂସ୍ଥାନ, ଭୁବନେଶ୍ୱର-୭୫୧୦୨୨।



ସବୁ ଶିକ୍ଷକ ସ୍ମୃତିରେ ରହିପାରନ୍ତିନି। କାହାକୁ କାହାକୁ ମନେ ପକାଇବାକୁ ଚିନ୍ତା କରିବାକୁ ପଡ଼େ। ଆଉକିଏ ସ୍ୱତ ଆସନ୍ତି ମନକୁ। ଛାତ୍ରକୁ ଲାଗେ, ତା' ବ୍ୟକ୍ତିତ୍ୱକୁ ସେ ଦୋହଲାଇ ଦେଇଛନ୍ତି। ଜୀବନର ସେହି ଘଡ଼ିସନ୍ଧି ମୁହୂର୍ତ୍ତରେ ତାଙ୍କର ଦର୍ଶନ ମିଳି ନଥିଲେ, ହୁଏତ ଛାତ୍ରର ଜୀବନ ଭିନ୍ନ ମୋଡ଼ ନେଇଥାନ୍ତା! ତାଙ୍କର ବ୍ୟକ୍ତିତ୍ୱ, ପାଠପଢ଼ାଶୈଳୀ, ଛାତ୍ରପ୍ରୀତି, ତ୍ୟାଗ ଓ କର୍ମନିଷ୍ଠାକୁ ଛାତ୍ର ବଡ଼ ହେଲାପରେ ବି ଝୁରି ହେଉଥାଏ। ନିଜ ଛାତ୍ରର ମନରେ ଗଭୀର ଛାପ ଛାଡ଼ି ଯାଇଥିବା ଏଇ ଭଳି କେତେଜଣ ଶିକ୍ଷକଙ୍କୁ ସ୍ମୃତିରେ ରଖିବାକୁ ପୁସ୍ତକଟି ପ୍ରୟାସ କରିଛି। ଯେଉଁ ତ୍ୟାଗପୂତ ଭାବନା ନେଇ ଦିନେ ସେହି ଶିକ୍ଷକ, ମୂର୍ତ୍ତି ଗଢ଼ିଲା ଭଳି ବା ଚିତ୍ର ଆଙ୍କିଲା ଭଳି, ଗୋଟି ଗୋଟି କରି ଛାତ୍ର ଗଢ଼ିବାର ବୃତ୍ତି ବାଛିଥିଲେ, ସେହି ନିଷ୍ଠାରେ ତାଙ୍କର ଛାତ୍ରମାନେ ଆଙ୍କିଛନ୍ତି ଶିକ୍ଷକଙ୍କ ଚିହ୍ନାଜଣା ମୁହଁର ଚିତ୍ର, ବର୍ଣ୍ଣନା କରିଛନ୍ତି ଶିକ୍ଷକଙ୍କ ଠାରୁ ମିଳିଥିବା ବାଟଦେଖା ପାଖ ସମ୍ପର୍କରେ। ପ୍ରତିଟି ଲେଖା କେବଳ ଶିକ୍ଷକର ସ୍ମୃତିକୁ ବଖାଣେ ନାହିଁ, ସାଙ୍ଗରେ ଷାଠିଏ-ସତୁରି ବର୍ଷ ତଳର ଓଡ଼ିଶାର ସାମାଜିକ ଇତିହାସକୁ ମଧ୍ୟ କହିବାକୁ ଚେଷ୍ଟା କରେ। ନିଜ ଶିକ୍ଷକଙ୍କର ସେହି ଅଭୁଲା ସ୍ମୃତି ଓ ଅପାଶୋରା ପାଠକୁ ପରିଷିବାକୁ ଯାଇ ସୃଷ୍ଟିଶୀଳ 'ଛାତ୍ରମାନେ' ଅତୀତର କାଳଖଣ୍ଡିକୁ ମଧ୍ୟ ଗୋଟାପଣେ ସାଉଁଟି ଆଣିବାକୁ ପ୍ରୟାସ କରିଛନ୍ତି। କେବଳ ଛାତ୍ର ଓ ଶିକ୍ଷକ କାହିଁକି, ଆଦର୍ଶ ଏବଂ ମୂଲ୍ୟବୋଧର ସାକ୍ଷାତକାର ଚାହୁଁଥିବା ପ୍ରତ୍ୟେକ ପାଠକ ନିମିତ୍ତ **'ସ୍ମୃତିରେ ଶିକ୍ଷକ'** ଖୋରାକ ଯୋଗାଇବ - ଏଥିରେ ସନ୍ଦେହ ନାହିଁ।

I.S.B.N. : 81-87982-29-2